# ହିରଣ୍ମୟଗଡ଼ର ବଧୂ

ମୂଳ ବଙ୍ଗଳା : ଶ୍ରୀ ଚତ୍ତରଞ୍ଜନ ମାଇତି

ଅନୁବାଦ : ପଣ୍ଡିତ ନୀଳମଣି ମିଶ୍ର

ଗ୍ରନ୍ଥମନ୍ଦିର

# ଭୂମିକା

ଊନବିଂଶ ଶତାବ୍ଦୀର ପ୍ରଥମ ପାଦ । ସମଗ୍ର ଦେଶରେ ବ୍ୟାପିଯାଇଛି ନୀଳକର ସାହେବଙ୍କ ନିର୍ମମ ଅତ୍ୟାଚାର । ଠକ, ଲୁଣ୍ଠନକାରୀଙ୍କ ଅତ୍ୟାଚାରରେ ସନ୍ତ୍ରସ୍ତ ହୋଇଉଠିଥିଲେ ଜନସମୁଦାୟ । ସେ ସନ୍ତ୍ରାସବାଦୀ ଯୁଗରେ ବିବାହର ବାସରଶେଯରୁ ଅପହୃତା ଗୋଟିଏ କିଶୋରୀକନ୍ୟା ଭାଗ୍ୟଚକ୍ରର ଗର୍ଭରେ ଟାଣିହୋଇ ଆସିଲା ଜନୈକା ନୀଳକୋଠିର ମାଲିକାଣୀ ଆଡ଼କୁ । ଏହାପରେ ସେହି ଦୁଇଟି କିଶୋରୀଙ୍କୁ କେନ୍ଦ୍ରକରି ଜୀବନରଙ୍ଗମଞ୍ଚରେ ଗଢ଼ିଉଠିଲା ଏକ ହର୍ଷ ଓ ବିଷାଦପୂର୍ଣ୍ଣ କରୁଣ ନାଟକ ।

ଇଂରେଜ ଶାସନର ଅତ୍ୟାଚାର ଓ ଅନ୍ଧକାର ମଧ୍ୟରେ ଅଷ୍ଟାଦଶୀ ତରୁଣୀ ଆନା ଥିଲା ଏକ ଉଜ୍ଜ୍ୱଳ ଆଲୋକବର୍ତ୍ତିକା । ଯେଉଁଠାରେ ଅନ୍ୟାୟ ସେଠାରେ ସେ ମୂର୍ତ୍ତିମନ୍ତ ପ୍ରତିବାଦ । ଯେଉଁଠାରେ ପ୍ରେମ ସେଠାରେ ସେ ତରଙ୍ଗିଣୀ । ଯେଉଁଠି ଜୀବନର ସର୍ବୋତ୍ତମ ତ୍ୟାଗ, ସେଠାରେ ସେ ପରମ ତାପସୀ ।

ଏହି ଭାବଧାରାରେ ସମ୍ପୂର୍ଣ୍ଣ ହୋଇଛି ଚିତ୍ତରଞ୍ଜନ ମାଇତିଙ୍କର 'ହିରଣ୍ୟଗଡ଼ର ବଧୂ' ଉପନ୍ୟାସଟି । ଲେଖକଙ୍କର ଆଉ ଖଣ୍ଡିଏ ଉପନ୍ୟାସର ମଧୁର କଥାବସ୍ତୁର ସ୍ୱାଦ ପାଇଛନ୍ତି ଓଡ଼ିଆ ପାଠକପାଠିକା । 'ମରୁମୃଗୟା' ଉପନ୍ୟାସରେ ଲେଖକ ଯେପରି ବୌଦ୍ଧଯୁଗର ଏକ ଆଲେଖ୍ୟ ଅଙ୍କନ କରିଛନ୍ତି, 'ହିରଣ୍ୟଗଡ଼ର ବଧୂ' ଉପନ୍ୟାସରେ ସେହିପରି ଉଦ୍ଦୀପ୍ତ ଇଂରେଜ ଶାସନ ଅମଳର ଏକ ଦୁର୍ବିସହ ଚିତ୍ର ଅଙ୍କିତ ହୋଇଛି ।

ନୀଳଚାଷ ଓ ନୀଳକୋଠି ମାଲିକଙ୍କ ଅତ୍ୟାଚାର ଊନବିଂଶ ଶତାବ୍ଦୀର ଏକ ହୃତ୍‌କମ୍ପ ସୃଷ୍ଟିକାରୀ ଘଟଣା । ବିଂଶ ଶତାବ୍ଦୀର ଶେଷ ଦଶକରେ ତା'ର ଆଭିମୁଖ୍ୟ ସମ୍ପୂର୍ଣ୍ଣ ଧୂମାୟିତ । ତଥାପି ଏପରି ଖଣ୍ଡିଏ ଉପନ୍ୟାସର ସ୍ୱାଦ ଓଡ଼ିଆ ପାଠକପାଠିକାଙ୍କ ପାଖରେ ସମ୍ପୂର୍ଣ୍ଣ ନୂତନ । ଭାରତବର୍ଷର ବିଭିନ୍ନ ଘଟଣା ଓ ସମସ୍ୟା ଉପରେ ଅନ୍ୟାନ୍ୟ ଭାରତୀୟ ଭାଷାରେ ବହୁ ଉପନ୍ୟାସ ଥିଲେ ହେଁ, ଓଡ଼ିଆ ଉପନ୍ୟାସ ଜଗତରେ ଏହାର ଅଭାବ ସର୍ବଥା ଅନୁଭୂତ ହୁଏ । ସମସ୍ୟାବହୁଳ ଘଟଣାବଳୀକୁ ନେଇ ଓଡ଼ିଆ ଔପନ୍ୟାସିକମାନେ ସେତେ ବେଶି ଉପନ୍ୟାସ ଲେଖିନାହାନ୍ତି । ସେହିପରି ଊନବିଂଶ ଶତାବ୍ଦୀର ଶୃଙ୍ଖଳିତ ଓଡ଼ିଶାର ଘଟଣାବଳୀକୁ ନେଇ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ବ୍ୟତୀତ ଆଉ କେହି ସେପରି ବଳିଷ୍ଠ ଲେଖନୀ ଚାଳନା କରିନାହାନ୍ତି ।

ପ୍ରାଚୀନ ଓଡ଼ିଶାର ବହୁ ଘଟଣାବଳୀ ରହିଥିଲେ ହେଁ ଆମ ଔପନ୍ୟାସିକଙ୍କ ଦୃଷ୍ଟି ସେ ଆଡ଼କୁ ଆକର୍ଷିତ ହୋଇନାହିଁ । ଖୁବ୍ ସମ୍ଭବତଃ ଆମ ଲେଖକମାନଙ୍କ ମନନଶକ୍ତି ସେମାନଙ୍କୁ ଆଗେଇ ନେଇପାରୁନି, ସେପରି ଆୟାସସାଧ୍ୟ ତଥା ମନନଶୀଳ କଥାବସ୍ତୁକୁ ରୂପାୟିତ କରିବା ଦିଗରେ । ସାର୍ଦ୍ଧଶତର ଅଧ୍ୟୟନ ବିନା ଖଣ୍ଡିଏ ସଫଳ ଉପନ୍ୟାସର ସୃଷ୍ଟି ଆକାଶ

କ୍ରମ ପର ହୋଇଥାଏ । ଝଟ୍‌କର ଲେଖକ ବନିଯିବାର ମୋହ ଯୋଗୁଁ ସେମାନେ ଅଧ୍ୟାପକସୁଲଭ ଅଧ୍ୟୟନରୁ ଦୂରରେ ରହି ଆଶୁ ଔପନ୍ୟାସିକ ବନିଯିବା କଳ୍ପନା କରନ୍ତି ।

ଯାହାହେଉ, 'ହିରଣ୍ୟଗଡ଼ର ବଧୂ' ପରି ଖଣ୍ଡିଏ ସଫଳ ଉପନ୍ୟାସର ଆବଶ୍ୟକତା ଓଡ଼ିଆ ପାଠିକା ଓ ପାଠକମାନଙ୍କର ରହିଛି ବୋଲି ଅନୁଭବ କରି, ଏହି ଉପନ୍ୟାସର ଅନୁବାଦ ଆରମ୍ଭ କରିବାକୁ ମୋତେ ପ୍ରେରଣା ଯୋଗାଇଥିଲେ ଡକ୍ଟର କୃଷ୍ଣପ୍ରସାଦ ପଣ୍ଡା । ନିଜେ ଲେଖକ ଶ୍ରୀ ମାଇତିଙ୍କ ଭୁବନେଶ୍ୱର ରହଣି କାଳରେ ମୋତେ ତାଙ୍କର ଏ ଉପନ୍ୟାସ ରଚନା ପୂର୍ବର ଅନୁଭୂତି ଶୁଣାଇ ଚମତ୍କୃତ କରିଥିଲେ । ଉପନ୍ୟାସରେ ବର୍ଣ୍ଣିତ ଅଧିକାଂଶ ସ୍ଥାନ ଲେଖକ ଚିତ୍ତରଞ୍ଜନ ମାଇତି ପରିଭ୍ରମଣ କରି ତଥ୍ୟ ସଂଗ୍ରହ କରିଥିଲେ । ପ୍ରସ୍ତୁତ ଉପନ୍ୟାସଟିକୁ ଲେଖିବା ଆଗରୁ, ତାଙ୍କୁ ଦୀର୍ଘସମୟଧରି ତଥ୍ୟ ସଂଗ୍ରହ କରିବାରେ ପଡ଼ିଛି । ତାହାହିଁ ତାଙ୍କୁ ଏକ ସଫଳ ଉପନ୍ୟାସ ରଚନାରେ ସାହାଯ୍ୟ କରିଛି । ଆମ ଓଡ଼ିଆ ଔପନ୍ୟାସିକ କିନ୍ତୁ ବାହାସ୍ଫୋଟ ମାରି କହନ୍ତି—ମୁଁ ଲେଖୁଥାଏ ଏବଂ ପ୍ରେସ୍‌କୁ ପାଣ୍ଡୁଲିପି ପଠାଉଥାଏ ।

ଯା'ହେଉ, ମୋର ବନ୍ଧୁ ଗ୍ରନ୍ଥମନ୍ଦିରର ପ୍ରକାଶକ ଶ୍ରୀଯୁକ୍ତ ଅଭିରାମ ମହାପାତ୍ର ଓଡ଼ିଆ ଉପନ୍ୟାସ ଜଗତକୁ ଅନୁବାଦ ମାଧ୍ୟମରେ କେତେଖଣ୍ଡି ସଫଳ ଉପନ୍ୟାସ ଆଣିବାରେ ଆଗ୍ରହ ଦେଖାଇ ଓଡ଼ିଆ ପାଠକପାଠିକାଙ୍କର ଧନ୍ୟବାଦାର୍ହ ହୋଇଛନ୍ତି । ତାଙ୍କର ଆଗ୍ରହ ଓ ପ୍ରେରଣାଯୋଗୁଁ ମୁଁ 'ଯଯାତି' ପ୍ରଭୃତି କେତେଖଣ୍ଡି ପ୍ରଖ୍ୟାତ ଉପନ୍ୟାସ ଅନୁବାଦ କରିବାରେ ସଫଳ ହୋଇଛି । ତେଣୁ ମୁଁ ଶ୍ରୀଯୁକ୍ତ ଅଭିରାମ ବାବୁଙ୍କୁ ସର୍ବପ୍ରଥମେ ଧନ୍ୟବାଦ ଅର୍ପଣ କରୁଛି । ମୋ' ଦ୍ୱାରା ଅନୁବାଦିତ ପୁସ୍ତକଗୁଡ଼ିକୁ ମୋର କନ୍ୟା ଅଧ୍ୟାପିକା ଜୟଶ୍ରୀ ଓ କନିଷ୍ଠପୁତ୍ର ଶିବକୁମାର ଅତି ଆଗ୍ରହରେ ପାଣ୍ଡୁଲିପି ଅବସ୍ଥାରୁ ପାଠକରି, ପାଠକପାଠିକାଙ୍କ ଅଭିରୁଚି ସମ୍ପର୍କରେ ମତ ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ଭ୍ରମ ପ୍ରମାଦ ପ୍ରତି ମୋ' ଦୃଷ୍ଟି ଆକର୍ଷଣ କରନ୍ତି । ପ୍ରସ୍ତୁତ ଅନୁବାଦ କ୍ଷେତ୍ରରେ ମଧ୍ୟ ତାହାହିଁ ହୋଇଛି । ତା' ବ୍ୟତୀତ ମୋ ସ୍ନେହର ଦୌହିତ୍ର ଆୟୁଷ୍ମାନ୍ ଅନନ୍ୟାଜସ୍ୱିନ୍ ପ୍ରସ୍ତୁତ ଅନୁବାଦଟି ପାଠକରି ଅତ୍ୟନ୍ତ ଆନନ୍ଦିତ ହୋଇଛି । ତେଣୁ ଏହି ପୁସ୍ତକର ଆତ୍ମପ୍ରକାଶ ଅବସରରେ ମୁଁ ସେମାନଙ୍କୁ ସ୍ନେହପୂତ ଶୁଭାଶିଷ ପ୍ରଦାନ କରୁଛି ।

ମୋ' ଅନୁବାଦଗୁଡ଼ିକ ଓଡ଼ିଶାର ପାଠକପାଠିକାଙ୍କ ମହଲରେ ଆଦୃତ ହେଉଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ—ସେଇମାନେ ହିଁ ମୋ' ଲେଖାର ପ୍ରକୃତ ଚହ୍ଲାଚ ଗ୍ରାହକ । ପ୍ରସ୍ତୁତ ଅନୁବାଦଟି ସେମାନଙ୍କ ଦ୍ୱାରା ଆଦୃତ ହେଲେ ମୋ' ଶ୍ରମ ସାର୍ଥକ ହେବ ।

ବିନୀତ

ନୀଳମଣି ମିଶ୍ର

## ( ଏକ )

"ଆସ, ଆସ !"

ଆନା ହେପବାର୍ନର ହାତ ଧରି ଅନ୍ଧକାରାଚ୍ଛନ୍ନ ସୋପାନଶ୍ରେଣୀ ମଧ୍ୟଦେଇ ଉପରକୁ ଉଠିଗଲେ ରାଜାରାସ୍ତ ।

ଆଜି ସେସବୁ ଘରଗୁଡ଼ିକର ଆଲୁଅ ଲିଭାଇଦେଇଥିବାରୁ କହିଲେ —ଏଇ ଘନଘୋର ଅନ୍ଧକାର ରାତିରେ ତୁମ ହୃଦୟ-ମନ୍ଦିରରେ କ'ଣ ରୋଶଣି ଜଳିଉଠୁନି ରାଜା ?

ରାଜା ଧୀରେ ଧୀରେ ଉଠିଚାଲିଥାନ୍ତି ଉପରକୁ ସେଇ ତମିସ୍ରାବରଣ ଭେଦ କରି । ମଝିରେ ମଝିରେ ତାଙ୍କର ପାଦଦୁଇଟି ମୃଦୁକମ୍ପନ ସୃଷ୍ଟି କରି ଚଳମାନ ପାଦଦୁଇଟିକୁ କାବୁଡ଼ିଧରୁଛି । ହିରଣ୍ୟଗଡ଼ର କନିଷ୍ଠ ରାଜକୁମାର ଆଜି ସାଜିଛି ଏକ ବନ୍ଦୀ-ବିହଙ୍ଗ । ସେ ମଝିରେ ମଝିରେ ବିକଳବିକଳ ହୋଇ କହୁଛି—"ଆନା, ମନେହୁଏ ମୁଁ ଗୋଟିଏ ଜ୍ୱଳନ୍ତ ଅଗ୍ନିଶିଖାକୁ ସ୍ପର୍ଶ କରି ପଞ୍ଜରାହେଉଛି—ଯେଉଁ ଅଗ୍ନିଶିଖା ନିଜ ଦୀପ୍ତିରେ ଆଲୋକିତ କରେ, ସେ ପଥହରା ପଥିକକୁ ଅନ୍ଧାର ରାତିରେ ବାଟ ଦେଖାଏ, ଆଉ ମଧ୍ୟ ଯେଉଁ ପ୍ରଜ୍ୱଳିତ ଶିଖା ସମଗ୍ର ଦେହଟାକୁ ଦାହର ଜ୍ୱାଳାରେ ଉତ୍ତପ୍ତ କରିଦଏ ।"

ରାଜାରାସ୍ତଙ୍କ କଥା ଶୁଣି ହସର ଫୁଆରା ଛୁଟାଇଦେଲା ତା'ର ତନ୍ୱୀ ମୁଖମଣ୍ଡଳରେ ଆନା ହେପବାର୍ନ । ସେ ଧ୍ୱନି ଅନୁରଣିତ ହେଲା ଦୁର୍ଗ ପରି ଗୋଲ ଗମ୍ବୁଜର ପ୍ରସ୍ତର ରାଜିରେ । ସେଇ ପ୍ରତିଧ୍ୱନି ବାରମ୍ବାର ଆଘାତ କଲା ରାଜାରାସ୍ତଙ୍କ ହୃଦୟତନ୍ତ୍ରୀରେ । ଯେତେ ଅବା ମୃଦୁମନ୍ଦ ତାନରେ ସେ ଆଘାତ ଛୁଇଁ ଛୁଇଁଯାଉଛି ତାଙ୍କର ହୃଦୟବୀଣାକୁ ।

ରାଜାରାସ୍ତଙ୍କ କାନ ପାଖରେ ଫିସ୍ ଫିସ୍ କରି କହିଲା ଆନା—"ଆଜି ମୁଁ ତୁମକୁ ମୋର ଶ୍ରେଷ୍ଠ ରତ୍ନଟିକୁ ଅର୍ପଣ କରିବି ରାଜା···! ଅତି ଦୁଃଖ ଓ ଯନ୍ତ୍ରଣାରେ ଆହରିପାରିଛି ହେଉଥିବା ସେଇ ରତ୍ନଟି ମୋ' ଜୀବନର ସର୍ବଶ୍ରେଷ୍ଠ ସଞ୍ଚୟ ।"

ଏ କଥା ଶୁଣିବା ମାତ୍ରେ ମନେହେଲା—ଯେତେ ଯେପରି ରାଜାରାସ୍ତର ପାଦତଳୁ ଶେଷ ସିଡ଼ିଟା ଧୀ···ରେ ଅତି ଧୀରେ ଅପସରି ଯାଉଛି । ଅଙ୍କାବଙ୍କା ପ୍ରଶସ୍ତ ବାରଣ୍ଡାଟି ପାରି ହୋଇ ସେ ଦୁହେଁ ଆସି ପହଞ୍ଚିଗଲେ ଅନ୍ଦରମହଲର ଶୟନ-କକ୍ଷରେ । ଅତ୍ୟନ୍ତ ସନ୍ତର୍ପଣ ଢଙ୍ଗରେ ଆନା ରାଜାରାସ୍ତଙ୍କ ହାତଧରି ପ୍ରବେଶକଲା ସେଇ କକ୍ଷରେ । ରହସ୍ୟମୟୀ ଆନାର ମନମନ୍ଦିରର ରହସ୍ୟ ତଥାପି ରହସ୍ୟମୟ ହୋଇ ରହିଥିଲା । ସେ ଇସାରାରେ କୌଣସି ପ୍ରକାର ଶବ୍ଦ ନକରିବା ପାଇଁ ଅଟକ କରିଦେଲା ରାଜାରାସ୍ତଙ୍କୁ । ଆନା ସେହି ସାନ୍ଦ୍ର

ଅନ୍ଧକାର ମଧ୍ୟରେ ଓଠ ଥରିଥରି କହନ୍ତି—"କାହୁଁ ଦେଖିବାକୁ ପାଉଛ ? ଭଲଭାବରେ ଦେଖ ତ ରାଜା···"

ରାଜାରାଓ ଅମୂର୍ତ୍ତ ଅମୃତ ପରି ଚାହିଁରହିଲେ ସେଇ ସୂଚୀଭେଦ୍ୟ ବହଳ ଅନ୍ଧକାର ଆଡ଼କୁ । ଏ ମଧ୍ୟରେ ତା'ର ହାତ ଖସିଦେଇ ଦୂରେଇଯାଇଛି ଆନା । "ଦେଖ, ଦେଖ ତ— କେଉଁ ହଜିଯାଇଥିବା ନେତ୍ରର ସନ୍ଧାନ ପାଇପାରୁଛ କି ନା···?" ସେଇ ଘନ ଅନ୍ଧକାର ମଧ୍ୟରେ ଦପ୍ ଦପ୍ ହୋଇ ଝଲସିଉଠୁଛି ରାଜାରାଓ ବଂଶର ସର୍ବଶ୍ରେଷ୍ଠ ଉତ୍ତରାଧିକାର, ଚରମ ସମ୍ମାନ ସେଇ ଜ୍ୱଳନ୍ତ ସ୍ୱଚ୍ଛ ଅଙ୍ଗସ୍ୱସ୍ତି···। ଧୀରେ ଧୀରେ ଅନ୍ଧକାର ଦୂରେଇ ଯାଉଛି । ଅତଃପର ଆଉ ଗୋଟିଏ ପ୍ରକୋଷ୍ଠରେ ପ୍ରବେଶ କଲେ ହରଣୀଗଡ଼ର କୁମାର ବାହାଦୁର ।

ଆନା ଏକ ନୀରବ ଦର୍ଶକ । ତା' ମାନସ-ପଟଳରେ ରୂପେଲି ପରଦାରେ ଝଲସି-ଉଠିଲା ହୃଦ-କାନ୍ଦର ଏକ ଉତ୍ସର୍ଗୀକୃତ ନାଟକ । ରଙ୍ଗମଞ୍ଚର ପରଦାଟା ଧୀରେ ଧୀରେ ଅପସରିଗଲା ।

( ଦୁଇ )

ସନ ୧୮୭୮ ସାଲର ଏକ ଜ୍ୟେଷ୍ଠ ମଧ୍ୟାହ୍ନ । ଶେଷ ହେମନ୍ତର ଗୋଟିଏ ଧୂସର ଅସ୍ପଷ୍ଟ ଉଦରର ମଧ୍ୟସ୍ଥ ଦୂରାଗତ ବାଦ୍ୟତାନରେ ଉଦ୍‌ବେଳିତ ହୋଇଉଠିଲା । ଧୀରେ ଧୀରେ ସେ ଝଙ୍କାର ନିକଟକୁ ନିକଟତର ହୋଇଆସିଲା । ଶାଳ ପିଆଶାଳ ଶିମୁଳିବୃକ୍ଷପୂର୍ଣ୍ଣ ସେହି ନିବିଡ଼ ଜଙ୍ଗଲ ପାରହୋଇ ବାହାରିଆସିଲା ଗୋଟିଏ ଦଳ । ବରଯାତ୍ରୀ ଦଳ ପରି ବୋଧ-ହେଉଥିବା ଶୋଭାଯାତ୍ରାଟି ବନଭୂମି ପାରହୋଇ ସୁବର୍ଣ୍ଣରେଖା ନଦୀ କୂଳରେ ଆସି ପହଞ୍ଚି-ଗଲା । ନଦୀର ସେପଟେ ରାୟବଂଶର ପ୍ରସିଦ୍ଧ ଗ୍ରାମ ଏବଂ ରାଜବଂଶର ପ୍ରଖ୍ୟାତ ଅଟ୍ଟାଳିକା ହରଣୀଗଡ଼ । ସୁବର୍ଣ୍ଣରେଖାର ଅପରପାର୍ଶ୍ୱରେ ଇଂରେଜ ଓଡ଼େନ୍ ସାହେବଙ୍କ ନୀଳକୋଠି ।

ନୀଳ ବ୍ୟବସାୟୀ ଓଡ଼େନ୍ ସାହେବ ରାଜଦୁର୍ଗ ପରି ଗମ୍ବୁଜପୂର୍ଣ୍ଣ ଅଟ୍ଟାଳିକା ନିର୍ମାଣ କରିଥିଲେ ନୀଳର ଅଭ୍ୟୁଦୟ କାଳରେ । ବର୍ତ୍ତମାନ କେତେକ ଅନିବାର୍ଯ୍ୟ କାରଣବଶତଃ ସପତ୍ନୀକ ଓଡ଼େନ୍ ସାହେବ ଏ ନୀଳକୋଠି ପରିତ୍ୟାଗ କରି ସ୍ୱଦେଶକୁ ଫେରିଯାଇଛନ୍ତି । ଏକମାତ୍ର ଅଳିଅଳୀ କନ୍ୟା ଆନା ପିତା ଓଡ଼େନ୍‌ଙ୍କ ସମ୍ପତ୍ତିର ଅଧିକାରିଣୀ ହୋଇ ଜମିଦାରୀ ପରିଚାଳନା କରୁଛି ।

ବୟସ ତୁଳନାରେ କିଶୋରୀ ଆନା ଅତ୍ୟନ୍ତ ବୁଦ୍ଧିମତୀ ଓ ଚତୁରୀ । ସ୍ଥିର ଧୀର ବୁଦ୍ଧି,

କଠୋର ଦୃଢ଼ତା ଓ ସୂକ୍ଷ୍ମ ବିବେଚନା ଫଳରେ ଆନା ବହୁ ଜଟିଳ ସମସ୍ୟାର ସମାଧାନ ଆଶ୍ଚର୍ଯ୍ୟ ଭାବରେ କରିପାରେ । କିନ୍ତୁ ନନ୍ଦୀ ରମଣୀଟିର ଗୋଟିଏ ସହଜାତ କୌତୂହଳ ରହିଛି । ସେ କିଶୋରୀ ରମଣୀର ଧର୍ମସ୍ତ ସ୍ୱଭାବସୁଲଭ ଗୁଣରେ ପରିପୂର୍ଣ୍ଣ, ତେଣୁ ତା'ର ଆଚରଣ କୁତୁକୁତୁ ଝରଣାଟି ପରି ଚଞ୍ଚଳ । ଆଖପାଖ ଅଞ୍ଚଳରେ କୌଣସି ଉତ୍ସବ ଅନୁଷ୍ଠାନ ବା ଆଡ଼ମ୍ବରପୂର୍ଣ୍ଣ ଜାକଜମକ ହେଲେ ସେ ନିଜକୁ ଆୟତ୍ତ କରିପାରେନା ।

ଦୂରରୁ ମନ୍ଦ୍ରତାନରେ ଭାସିଆସୁଥିବା ବାଦ୍ୟଧ୍ୱନିରେ କୌତୂହଳୀ ହୋଇ ଆନା ପ୍ରଫୁଲ୍ଲ ମନରେ ଧାଇଁଗଲା ନୀଳକୋଠିର ଶିଖରଦେଶକୁ । ସୁବର୍ଣ୍ଣରେଖା ଆଡ଼କୁ ନିର୍ମିତ ଗୋଟିଏ ଗୋଲ ଗମ୍ବୁଜର ବାତାୟନ ଖୋଲି ନିର୍ନିମେଷ ନେତ୍ରରେ ଆନା ଚାହିଁରହିଲା ବାଦ୍ୟଧ୍ୱନି ଭାସିଆସୁଥିବା ନଦୀର ଆରପାରିକୁ । ସେ ଲକ୍ଷ୍ୟକରି ଦେଖିଲା, ନଦୀର ଅପରପାର୍ଶ୍ୱ ନଦୀଶଯ୍ୟାର ସିକତାମୟ ଶେଯରେ ଆସି ଉପସ୍ଥିତ ହୋଇଛି ଗୋଟିଏ ଆଡ଼ମ୍ବରପୂର୍ଣ୍ଣ ବରଯାତ୍ରୀଦଳ । ସମ୍ମୁଖ ଭାଗରେ ଚାଲିଛନ୍ତି ନାଲିକନା ଗୁଡ଼ାଯାଇଥିବା ବଡ଼ ବଡ଼ ଲାଠି ଧରି ଶକ୍ତିଶାଳୀ ଜୁଆନ୍ । ନାନାରଙ୍ଗର ବିଚିତ୍ର ଆଭରଣରେ ଭୂଷିତ ପଦ୍ସବାଦାର୍ଗଣ । ସେମାନଙ୍କ ପଛେ ପଛେ ଚାଲିଛନ୍ତି ଦଳେ ବାଦ୍ୟକାର । ବାଜାବାଲାଙ୍କ ପଛରେ ଧଳାଘୋଡ଼ା ଉପରେ ଜମିଦାରୀ କୁର୍ତ୍ତା ଓ ଚପା ଅଚକନ୍ ପିନ୍ଧି ବସିଛି ଜଣେ ବପୁଷ୍ମାନ୍ ପୁରୁଷ । ମୁଣ୍ଡରେ ତାଙ୍କର ଏକ ସୁଦୃଶ୍ୟ ପଗଡ଼ି । ହାତରେ ମଧ୍ୟାହ୍ନ ସୂର୍ଯ୍ୟାଲୋକରେ ଝଲ୍‌ମଲ୍ କରୁଥିବା ଏକ ଉନ୍ମୁକ୍ତ ତରବାରି ।

ଠିକ୍ ତା'ରି ପଛେ ପଛେ ଏକ ସୁସଜ୍ଜିତ ହାତୀ ମଦମତ୍ତ ଚାଲିରେ ଆଗେଇଚାଲିଛି । ହାତୀ ପିଠିରେ ବନ୍ଧାଯାଇଥିବା ଚକଚକ ବର୍ଣ୍ଣାଢ୍ୟ ହାଉଦା ଉପରେ ତାରକସିର ସୂକ୍ଷ୍ମ କାରୁକାର୍ଯ୍ୟ ନିର୍ମିତ ଶ୍ୱେତଛତ୍ର ତଳେ ବିରାଜମାନ ବରମହାଶୟ । ହାତୀର ପଛେ ପଛେ ଚାଲିଛନ୍ତି କୋଡ଼ିଏ ତିରିଶ ଜଣ ଅଶ୍ୱାରୋହୀ । ତାଙ୍କୁ ଅନୁସରଣ କରି ଅଗ୍ରସର ହେଉଛି ପଦବ୍ରଜୀଦଳ । ସେମାନଙ୍କ ସଂଖ୍ୟା ମଧ୍ୟ ନିତାନ୍ତ ଊଣା ନୁହେଁ । ଆନା ଅନୁମାନ କରିନେଲା —ହିରଣ୍ୟଗଡ଼ର କୌଣସି ରାଜକୁମାରର ବିବାହ ଶୋଭାଯାତ୍ରା ନିଶ୍ଚୟ ।

ଧୀରେ ଧୀରେ ନଦୀ ପାରହୋଇ ଆଗେଇଚାଲିଲେ ବରଯାତ୍ରୀ ଦଳ । ତା'ପରେ ସେମାନେ ନଦୀ ପରପାରିରେ ଥିବା ତଟଙ୍ଗାସ୍ଥିତ ଶାଳବନ ଭିତରେ ପଶି ଘଡ଼ିକ ମଧ୍ୟରେ ସର୍ପିଳ ଗତିରେ ବାହାରିପଡ଼ିଲେ । ବାଦ୍ୟ ଝମକର କ୍ଷୀଣ ଝଙ୍କାର ଭାସିଆସୁଥିଲା ନଈପାଣିଛୁଆଁ ପବନର ତାଳେ ତାଳେ । ଆନା କିଛିକ୍ଷଣ ସେହି ଆଡ଼କୁ ଅନାଇରହିଲା ନିର୍ନିମେଷ ନୟନରେ । ତା' କୁମାରୀ ମନରେ ଖେଳିଗଲା ବିଦ୍ୟୁତ୍‌ର କ୍ଷଣିକ ପରଶ । ସେ ଲକ୍ଷ୍ୟକରି ଦେଖିଲା—ବରଯାତ୍ରୀଦଳ ଦୂର ପାହାଡ଼ର ପାଦଦେଶରେ ଥିବା କେଉଁ ଗୋଟିଏ ଗ୍ରାମ ଅଭିମୁଖେ ଆଗେଇଚାଲିଛନ୍ତି ।

ଧୀରେ ଧୀରେ ବରଯାତ୍ରୀ ଦଳ ଆଖି ଆଗରୁ ଅଦୃଶ୍ୟ ହୋଇଗଲେ । କିନ୍ତୁ ଆନା ଏକ-ଲୟରେ ସେହି ଆଡ଼କୁ ତାଙ୍କର ଚାଲିପଥରେ ଆଖି ବିଛାଇ କେତେ ସମୟ ଧ୍ୟାନସ୍ଥ ହେଲା

ପରି ଛିଡ଼ା ହୋଇ ରହିଲା । ମନଟା ତା'ର 'ଉଦାସିଆ ହୋଇଉଠିଲା ଏବଂ ମନଗହନର ରୂପେଲି ପରଦାରେ ଭାସିଉଠିଲା ସୁଦୂର ସ୍କଟ୍‌ଲଣ୍ଡର ଏକ କଙ୍କରିଲ ପ୍ରଦେଶ । ଅସ୍ପଷ୍ଟ ସ୍ମୃତିର ଝରକା ଖୋଲି ବାହାରିଆସିଲା ଫୁଲ୍‌ଫୁଲିଆ ବାଆ । ପିଲାଦିନେ ଦେଖିଥିବା ନାନା ଭିଟାମାଟିର ସେଇ ଅସ୍ପଷ୍ଟ ଛବି ଧୂମିଳ ହୋଇ ପ୍ରତିଭାତ ହେଲା ତା'ର ଆଖି ଆଗରେ । ସେ ଆନମନା ହୋଇ ଭାବିବାରେ ଲାଗିଲା—କାହିଁ କେଉଁ ଦୂରଦେଶର ଅଶ୍ୱାରୋହୀ ସୁପୁରୁଷ ଦସ୍ୟୁ ଆଜି ତା'ର ଉତଳା ମନଟାକୁ ଲୁଣ୍ଠନ କରି ନେବାପାଇଁ ଆସୁନାହିଁ ତ ? ଯଦି ସେମିତି କେହି ମନର ମଣିଷ ତାକୁ ଏହି ଉତ୍ତୁଙ୍ଗ ପ୍ରାସାଦର ଶିଖର ଦେଶରୁ ବଳପୂର୍ବକ ଉଠାଇନେଇ ଯାଆନ୍ତା କି ଦୂର ବନ ପାହାଡ଼ଘେରା ନଦୀକୂଳର ସାନ୍ଦ୍ର ବନାନୀ ଭିତରକୁ—ସେ ସେଇଠି ଗଢ଼ିହୁଅନ୍ତା ତା'ର ପ୍ରେମର ହର୍ମ୍ୟ । ସେଇ ସ୍ୱପ୍ନିଳ ପ୍ରାସାଦରେ ଆନା ମେଲାଇଦିଅନ୍ତା ତା'ର ପ୍ରେମର ପସରା । ଆଉ ସାତ ସମୁଦ୍ର ତେର ନଈ ପାରିର ସେ ବଣିକପୁଅ ନେଇ-ଯାଆନ୍ତା ତା' ପସରାରୁ ପ୍ରେମର ଅସରନ୍ତି ମଣିମାଣିକ୍ୟ ବିନା ମୂଲ୍ୟରେ । କେବଳ ଖିଲ୍ ଖିଲ୍ ହସର ସୁନ୍ଦର ରେଖାଟିଏ ତା'ର ଗୋଲାପୀ ମୁଖମଣ୍ଡଳରେ ଆଙ୍କିଦେଇ ସାଧବପୁଅ ପାଖରେ ସେ ଲୋଟାଇଦିଅନ୍ତା ତା'ର ହୃଦୟ-ପସରା···।

( ତିନି )

ଅତି ପିଲାଦିନରୁ ବଙ୍ଗଦେଶକୁ ଆସିଥିଲା ଆନା, ସାତସମୁଦ୍ର ସେପାରି ସ୍କଟ୍‌ଲଣ୍ଡ ଦେଶରୁ ତା' ବାପାଙ୍କ ସାଥିରେ । ଓଡ଼େନ୍ ହେପବାର୍ନ କମ୍ପାନୀ ଅମଳରେ ଭାଗ୍ୟର ଅନ୍ୱେଷଣରେ ଆସିଥିଲେ ଭାରତବର୍ଷ । ଏଇ ଭାରତଭୂଇଁରେ ମାଆ ତା'ର ମାଟିକାମୁଡ଼ି କବର ନେଇଛି । ତା'ପରେ ଆନା ତା' ବାପାଙ୍କ ସାଥିରେ ଘୂରିବୁଲିଛି ଚକାଭଉଁରି ଖେଳିଲା ପରି, ଭାରତର ଅନେକ ସ୍ଥାନ । ବହୁ ଘାତ ପ୍ରତିଘାତ ମଧ୍ୟଦେଇ ଓଡ଼େନ ସାହେବ ଶେଷରେ ବଙ୍ଗ-ଦେଶର ଏଇ ଉପାନ୍ତ ଅଞ୍ଚଳ ସୁବର୍ଣ୍ଣରେଖା ନଈକୂଳରେ ଆସି ବସା ବାନ୍ଧିଲେ । ଭାଗ୍ୟ-ଦେବୀ ସୁପ୍ରସନ୍ନା ହୋଇଉଠିଲେ ଓଡ଼େନଙ୍କ ପରିବାର ପ୍ରତି । ଏଇଠି ଆସି ସାହେବ ଆରମ୍ଭ କଲେ ନୀଳର ବେପାର । ଧୀରେ ଧୀରେ ବୃଦ୍ଧି ପାଇବାରେ ଲାଗିଲା ତାଙ୍କର ବଣିଜ ।

ସନ ୧୮୩୩ ସାଲରେ କମ୍ପାନୀ ସରକାର ୟୁରୋପୀୟମାନଙ୍କୁ ଭାରତରେ ସ୍ଥାୟୀ ଭାବରେ ବସବାସ କରିବାକୁ ଆଇନ୍ ପ୍ରଣୟନ କଲେ । ସେଇ ସୁଯୋଗରେ ଅନେକ ସାହେବ ଭାରତର ବିଭିନ୍ନ ସ୍ଥାନରେ ଜମି କିଣି କୋଠି ତିଆରି କରିବାର ସୁଯୋଗ ପାଇଲେ । ସେଇ ସୁବର୍ଣ୍ଣ ସୁଯୋଗକୁ ହାତଛଡ଼ା କରିନଥିଲେ ଓଡ଼େନ ହେପ୍‌ବାର୍ନ । ସେ କାଳବିଳମ୍ବ ନକରି ନଈ କୂଳିଆ ଉର୍ବର ଜମିରୁ ଗୋଟିଏ ବଡ଼ ଚକ କିଣିବା ପାଇଁ ବିଶେଷ ବ୍ୟାକୁଳ ହୋଇଉଠିଲେ । ଶେଷକୁ ବିରାଡ଼ି କପାଳକୁ ମାଛଭଜା ଥୁଆ ହୋଇଥିବା ଶିକାଟି ଛିଡ଼ିପଡ଼ିଥିଲା ।

ସୁବର୍ଣ୍ଣରେଖା ନଦୀର ପରପାରରେ ସୁବର୍ଣ୍ଣଗଡ଼ । ସେହି ଗଡ଼ରେ ପୁରୁଷାନୁକ୍ରମେ ଶାସନ କରିଆସୁଥିଲେ ରାୟବଂଶର ରାଜା ଉପାଧିଧାରୀ ଜମିଦାର । ସେ ସମୟରେ ରାୟବଂଶର ଜ୍ୟେଷ୍ଠପୁତ୍ର ଦୁର୍ଲଭରାୟ ପିତୃପିତାମହଙ୍କ ସମ୍ପତ୍ତିର ଦେଖାଦଖଲ କରି ପ୍ରଜାପାଳନ କରୁଥିବା ସମୟରେ ହଠାତ୍ ଏକ ଅକାଳ ଚଡ଼କ ମାଡ଼ିପଡ଼ିଲା ରାୟବଂଶ ଉପରେ । ଦୁର୍ଲଭରାୟ ଏକ ସଙ୍ଗିନ୍ ମାମଲାରେ ଜଡ଼ିତ ହୋଇପଡ଼ିଲେ । ଅଜସ୍ର ଟଙ୍କା ବହିଗଲା ସେଇ ଶପଦର ସୁଅମୁହଁରେ । ରାଜବାଟୀରେ ସଞ୍ଚିତ ସମସ୍ତ ଟଙ୍କା ସୁନା ଶେଷ ହେବାପରେ, ବଂଶମର୍ଯ୍ୟାଦାର ଖାତିରରେ ଦୁର୍ଲଭରାୟ ନଈକୂଳିଆ ତାଙ୍କର ଦୁଇଶହ ଏକର ଜମିକୁ ଟେକିଦେଲେ ଓଡ଼େନ ହେପବାର୍ନ ହାତରେ । ଅବଶ୍ୟ ଓଡ଼େନ ଉଚିତ୍ ମୂଲ୍ୟ ଦେଇ ଜମିଖଣ୍ଡିକ କିଣି ରାୟବଂଶକୁ ଦୁର୍ଦ୍ଦିନରେ ସାହାଯ୍ୟ କରିନଥିଲେ ହୁଏତ ତାଙ୍କ ସ୍ୱର୍ଗର ଗତି କଅଣ ହୋଇଥାʼନ୍ତା କିଏ କହିପାରିବ ? ଦୁର୍ଲଭ ରାୟ ନିଜର ଅନିଚ୍ଛା ସତ୍ତ୍ୱେ ମୂଲ୍ୟବାନ୍ ଉର୍ବର ଜମିଖଣ୍ଡିକ ଓଡ଼େନ ସାହେବଙ୍କ ହାତରେ ଟେକିଦେଲେ ବାଧ୍ୟହୋଇ । ନଈ କୂଳେ କୂଳେ ଦୁଇଶହ ଏକରର ଗୋଟିଏ ଚକ ସାହେବର ଭାଗ୍ୟଚକ୍ରକୁ ଅଚିରକ ଘୁରେଇଦେଲା । ସେଇଦିନଠାରୁ ହେପବାର୍ନ ପରିବାର ରହିଗଲେ ସେହି ନଈକୂଳିଆ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ନୀଳଚାଷ ଓ ନୀଳକୋଠି ତିଆରିକରି । ଧୀରେ ଧୀରେ ଚତୁର ବଣିକ ଓଡ଼େନ ସାହେବ ସେ ଅଞ୍ଚଳର ଜମିଦାର ଭାବରେ ବେଶ୍ ଖ୍ୟାତି ଅର୍ଜନ କଲେ । ଆଖପାଖ ଅଞ୍ଚଳରେ ସେ ନିଜର ପ୍ରତିପତ୍ତି ଜମେଇଦେଲେ ଜଣେ ଖ୍ୟାତନାମା ଧନୀ, ଜମିଦାର ଓ ନୀଳ-ବ୍ୟବସାୟୀ ଭାବରେ ।

ନୀଳବେପାରୀ ଓଡ଼େନ୍ ସାହେବଙ୍କ ଖ୍ୟାତି ଯେତିକି ବୃଦ୍ଧି ପାଉଥାଏ, ହିରଣ୍ୟଗଡ଼ର ରାଜା ଦୁର୍ଲଭରାୟଙ୍କର ମାନସିକ ଅଶାନ୍ତି ସେତିକି ବୃଦ୍ଧି ପାଉଥାଏ । ସେ କୌଣସିମତେ ନିଜର ଦୁର୍ଭାଗ୍ୟଘେରା ଦିନଗୁଡ଼ିକୁ ଭୁଲିପାରିଲେ ନାହିଁ । ଓଡ଼େନ ସାହେବ ତାଙ୍କୁ ସାହାଯ୍ୟ କରିବାକୁ ଯାଇ ତାଙ୍କଠାରୁ ଦୁଇଶହ ଏକରର ଉର୍ବର ଚକଟିକୁ ଏକପ୍ରକାର କାଉଁରୀକାଠିରେ ଭୁଲେଇ ନେଇଗଲା ପରି ମନେକଲେ । ଆଜି ସେ ଜମି ଚକଟି ଥିଲେ ହୁଏତ ରାୟବଂଶର ଭାଗ୍ୟଶ୍ରୀ ଝଲସିଉଠିଥାʼନ୍ତା ହୀରା, ନୀଳା, ମୋତି ଓ ମାଣିକ୍ୟରେ । ରାଜା ଦୁର୍ଲଭରାୟ ଇଂରେଜ ସରକାରଙ୍କ ସହିତ ଚୁକ୍ତିପତ୍ର କରି ନୀଳ ବ୍ୟବସାୟ ଆରମ୍ଭ କଲେ ସତ; କିନ୍ତୁ ଓଡ଼େନ ସାହେବଙ୍କୁ ବିକିଦେଇଥିବା ଦୁଇଶହ ଏକର ଚକଜମି ଖଣ୍ଡିକୁ ସେ କୌଣସିମତେ ଭୁଲିପାରିଲେ ନାହିଁ । ସେତେବେଳେ ଅବଶ୍ୟ ସ୍ଥାନୀୟ ଲୋକମାନଙ୍କୁ ନୀଳଚାଷ କରିବାପାଇଁ କମ୍ପାନୀ ସରକାର ସୁଯୋଗ ଦେଇଥିଲେ । ତେଣୁ ରାଜା ଦୁର୍ଲଭରାୟ ଅବସ୍ଥାଚକ୍ରରେ ପଡ଼ି ନୀଳଚାଷ ପରି ଏକ ଘୃଣ୍ୟ ବ୍ୟବସାୟକୁ ଆଦରିନେଲେ । ନୋହିଲେ ପୂର୍ବରୁ ଯେଉଁ ଛିଦ୍ର ସହି ରାୟବଂଶର ସମ୍ମାନରେ ସେ ଫାଟ ସୃଷ୍ଟି କରିଥିଲେ, ତାʼ ଉପରେ କେବେହେଲେ ତାଳି ପଡ଼ିପାରିନଥାʼନ୍ତା । ଅବଶ୍ୟ ଜମିଦାର ସାହେବଙ୍କ ସାନଭାଇ ରାଜା-ରାୟ ଭାଇଙ୍କ ନିଷ୍ପତ୍ତିର କ୍ଷୀଣ ପ୍ରତିବାଦ କରିଥିଲେ; କିନ୍ତୁ ଜମିଦାର ସାହେବ ଖୁସ୍‌ମିଜାଜିଆ

ଭାଇର ପ୍ରତିବାଦକୁ ଅପରିଣାମଦର୍ଶିତା ବୋଲି ମନେକରି ମୃଦୁ ହସରେ ଉଡ଼ାଇ ଦେଇଥିଲେ ।

ବୈଷୟିକ ଭାବନାରେ ଅଗ୍ରଜ ଦୁର୍ଲଭରାୟ ସମ୍ପୂର୍ଣ୍ଣ ଦକ୍ଷ ଓ ହୁସିଆର ବୋଲି ଭାବିନେଇ ଅନୁଜ ରାଜାରାୟ ଆଉ ପ୍ରତିବାଦ କଲେନାହିଁ, କାରଣ ସେ ଥିଲେ ଜଣେ ସୌଖୀନ କଳାପ୍ରେମୀ । ଜମିଦାରୀ ବ୍ୟାପାରରେ ଜଡ଼ିତହୋଇ ସେ ଗୋଲକଧନ୍ଦାରେ ପଡ଼ିବା ପରିବର୍ତ୍ତେ, ସଙ୍ଗୀତ-ସାଧନାକୁ ଜୀବନର ପ୍ରଧାନ ଧ୍ୟେୟ ରୂପେ ସେ ବାଛିନେଇଥିଲେ । ତେଣୁ ଜମିଦାରୀ ପରିଚାଳନାର ଦାୟିତ୍ୱ ସମ୍ପୂର୍ଣ୍ଣ ଭାବରେ ନ୍ୟସ୍ତ ଥିଲା ଦୁର୍ଲଭରାୟଙ୍କ ଉପରେ । କେବଳ ଉତ୍ତରାଧିକାରୀ ସୂତ୍ରରେ ରାଜାରାୟ ପାଇଥିଲେ ବଂଶ-ଗୌରବର ପ୍ରତୀକ ହୀରକଖଣ୍ଡଟି । ରାୟବଂଶର ବଡ଼ପୁଅ 'ରାଜା' ପଦବୀରେ ଭୂଷିତ ହେବାର କୌଳିକ ପ୍ରଥା ଚାଲିଆସୁଥିଲା ଏବଂ ସାନଭାଇ ପାଉଥିଲେ ଅମୂଲ୍ୟ 'ହୀରକଖଣ୍ଡଟି । ରାଜାରାୟ ସେହି ଅମୂଲ୍ୟବାନ୍ ବଂଶଗୌରବଟିକୁ ନିଜ ସ୍ତ୍ରୀଙ୍କୁ ଦେଇ ବଂଶର ଗୃହଲକ୍ଷ୍ମୀଙ୍କୁ ସ୍ୱାଗତ ଜଣାଇବାକୁ ମନସ୍ଥ କରିଥିଲେ । ଏହା ଯେ କେବଳ ରାଜାରାୟଙ୍କର ମତ ଥିଲା ତା' ନୁହେଁ, ଏହି ପରମ୍ପରା ରାୟବଂଶରେ ଆବହମାନକାଳରୁ ଚାଲିଆସୁଥିଲା । ରାୟବଂଶର ରକ୍ତ ସହିତ ଏହାର ସମ୍ପର୍କ ନିରବଚ୍ଛିନ୍ନ ଭାବରେ ଜଡ଼ିତ ଥିଲା । ସେ ଦିନଟି ଥିଲା ରାୟବଂଶର ସାନକୁମାର ରାଜାରାୟଙ୍କ ବିବାହ ଉତ୍ସବ । ସେହି ବିବାହର ଶୋଭାଯାତ୍ରା ସେଦିନ ଆନା ନୀଳକୋଠି ଗୋଲ୍‌ଗମ୍ବୁଜର ଝରକା ପାଖରେ ଛିଡ଼ାହୋଇ ଦେଖିଥିଲା ।

ନୀଳକୋଠିର ଓଡ଼େନ୍ ସ୍ୱାପବାର୍ନଙ୍କ ଅଲିଅଲି କନ୍ୟା ଆନା ଥିଲା ଏକ ଆଶ୍ଚର୍ଯ୍ୟ ଧରଣର ଝିଅ । ଦେହରେ ପ୍ରବାହିତ ହେଉଥିଲା ତା'ର ସ୍କଟ୍ ରକ୍ତର ଧାର; କିନ୍ତୁ ସ୍ୱଭାବ ତଥା ଆଚାର ବ୍ୟବହାରରେ ସେ ଥିଲା ପୁରାପୁରି ଭାରତୀୟ । କାରଣ ପିଲାଟି ଦିନରୁ ସେ ଭାରତର ବିଭିନ୍ନ ଅଞ୍ଚଳରେ ତା' ବାପାଙ୍କ ସହିତ ବୁଲାବୁଲି କରିଥିବାରୁ ଭାରତୀୟ ପିଲା-ମାନଙ୍କ ସହିତ ମିଳାମିଶା କରିବାର ସୁଯୋଗ ପାଇଥିଲା । ତା' ବାପା ମଧ୍ୟ ଏ ପ୍ରକାର ମିଳାମିଶାରେ ଆଦୌ ବାଧା ଦେଉନଥିଲେ । ପିଲାଟି ଦିନରୁ ଆନା ମାତୃହୀନା ହୋଇ-ଥିବାରୁ ତା'ର ସ୍ୱାଧୀନତାରେ ଓଡ଼େନ୍ ସାହେବ ଆଦୌ କଟକଣା ଜାରିକରିନଥିଲେ ; ବରଂ ସେ ଏ ପ୍ରକାର ସୁବିଧା ଦେଇ ତାକୁ ଅଧିକ ଉତ୍ସାହିତ କରିଥିଲେ ।

ଓଡ଼େନ୍ ସାହେବ ବଙ୍ଗଦେଶରେ ସ୍ଥାୟୀ ଭାବରେ ନୀଳକୋଠି ତିଆରି କରି ବେପାର ବଣିଜ ଓ ମାମଲତରେ ମାତିଥିବାରୁ ଆନା ବଙ୍ଗାଳୀ ପିଲାମାନଙ୍କ ସହିତ ମିଶିବାର ବେଶ୍ ସୁଯୋଗ ପାଇଥିଲା । ତା' ଫଳରେ ସେ ପିଲାଟି ଦିନରୁ ବେଶ୍ ଭଲଭାବରେ ବଙ୍ଗଳାଭାଷା କହିପାରୁଥିଲା ।

କିଛିଦିନ ପୂର୍ବରୁ ଓଡ଼େନ୍ ସାହେବ ଭାରତରେ ବସବାସ କରୁଥିବା ଜଣେ ସ୍ୱାମୀ-ପରିତ୍ୟକ୍ତା ଇଂରେଜ ମହିଳାଙ୍କୁ ପ୍ରଣୟିନୀ ରୂପେ ପାଇ ଭାରତବର୍ଷ ଛାଡ଼ି ନିଜ ଦେଶକୁ

ସ୍କଲଯିବାପାଇଁ ନିଷ୍ପତ୍ତି ନେଇଥିଲେ ଏବଂ ଭାରତବର୍ଷର ସମସ୍ତ ମୋହ ତୁଟାଇଦେଇ ସେ ନିଜ କନ୍ୟା ଆନାକୁ ମଧ୍ୟ ସଙ୍ଗରେ ନେଇଯିବା ପାଇଁ ପ୍ରସ୍ତୁତ ଥିଲେ ।

କିନ୍ତୁ ନୀଲକୋଠି, ସୁବର୍ଣ୍ଣରେଖା ନଦୀ ଓ ଆଖପାଖ ପରିବେଶ ପ୍ରତି ଆନାର ଥିଲା ଏକ ଗଭୀର ଆକର୍ଷଣ । ପିଲାଟି ଦିନରୁ ଭାରତବର୍ଷେ ବିଶେଷତଃ ତାଙ୍କ ନୀଲକୋଠି ଥିବା ବଙ୍ଗ-ଦେଶକୁ ଆନା ନିଜର ଦେଶ ବୋଲି ଆଦରନେଇଥିଲା । ତେଣୁ ତା' ମନରେ ନଥିଲା ସ୍କଟ୍‌ଲଣ୍ଡର ମୋହ କିମ୍ବା ସେ ଦେଶର ପରିବେଶ ପ୍ରତି ଆକର୍ଷଣ । ସେଇଥିପାଇଁ ଆନା ବଙ୍ଗ-ଦେଶକୁ ନିଜର ମାତୃଭୂମି ରୂପେ ଆଦର ନେଇଥିଲା । ତେଣୁ ତା' ବାପା ପ୍ରସ୍ପିନାର ଅନୁରୋଧରେ ସ୍ୱଦେଶକୁ ଫେରିଯାଇଥିଲେହେଁ, ଆନା ଏକାକିନୀ ନିଜ ଜମିବାଡ଼ିର ଦେଖାରଖା କରି ଏ ଦେଶରେ ରହିଯାଇଥିଲା ।

( ଦୁଇ )

ସନ୍ଧ୍ୟା ସାନ୍ଦ୍ର ହୋଇଆସିଲା । ଘନ ନିବିଡ଼ ଅନ୍ଧକାରରେ ଚରାଚର ଆଚ୍ଛନ୍ନ ହୋଇ-ଯାଆନ୍ତେ ଚନ୍ଦ୍ର ନିର୍ମଳ ଆକାଶରେ ଉଦିତ ହୋଇ ନିଜର ସିତରଶ୍ମିରେ ଜଗତକୁ ଉଦ୍ଭାସିତ କରିଦେଲେ । ମନେହେଉଥିଲା—ଯତେ ଯେପରି ଚନ୍ଦ୍ର ରହସ୍ୟମୟ ପ୍ରକୃତିର ତମିସ୍ରାବରଣ ଭେଦକରି ସ୍ୱଚ୍ଛ ଆଲୋକରେ ଜଗତକୁ ଉଦ୍ଭାସିତ କରିଦେଇଛନ୍ତି ।

ଓଡ଼େନ୍ ସାହେବଙ୍କ ଉଦ୍ୟାନର ଚାରିପଟେ ସୁଦୃଢ଼ ପ୍ରାଚୀର । ବଗିଚା ମଧ୍ୟରେ ନାନା ଜାତିର ଦେଶୀ ଓ ବିଦେଶୀ ଫୁଲଗଛ ଆନନ୍ଦର ଉତ୍ସ ଖେଳାଇ ମହକ ବିତରଣ କରୁଛନ୍ତି । ଫୁଲର ପସରା ମେଲିଦେଇ ଗଛଗୁଡ଼ିକ କୁସୁମିତ ଲତାଗୁଡ଼ିକୁ ବାହୁ ପାଶରେ ଆଲିଙ୍ଗନ କରି, ପ୍ରସ୍ଫୁଟିତ ଫୁଲ ଛଳରେ ସ୍ୱଚ୍ଛ ହାସ୍ୟ ବିତରଣ କରିବାରେ ଲାଗିଛନ୍ତି । ବଗିଚା ମଧ୍ୟରେ ଗଛଲତାର ଉହାଡ଼ରେ ଚନ୍ଦ୍ର ଲୁଚକାଳି ଖେଳି ଏ ପାଖ ସେପାଖ ଉଙ୍କି ମାରୁଛି । ବଗିଚାର ସେହି ରମଣୀୟ ଧୂପଛାଇ ଖେଳ ମଧ୍ୟରେ ଅନମନା ହୋଇ ଆନା ଘୂରିବୁଲୁଛି । ଆଜି ତା' ମନରେ କେତେ ରକମର ଅସରନ୍ତ ଭାବନା ଉବେଇଟୁବେଇ ହେଉଛି । ଭାବନାର ସେଇ ପ୍ରଖର ସ୍ରୋତରେ ସୁନ୍ଦରୀ ଆନା ଆପଣାକୁ ଭସେଇଦେଇ ଧୀରେ ଧୀରେ ପଦଚାରଣ କରି ଘୂରିବୁଲୁଛି । ସୁଗନ୍ଧ ପସରାରୁ ମନଭରି ଗନ୍ଧ ଆଘ୍ରାଣ କରି ସେ ଆଲୁଅ ଓ ଅନ୍ଧାର ମଧ୍ୟରେ ପ୍ରକମ୍ପିତ ହୋଇଉଠୁଛି କେଉଁ ଅଜଣା ଶିହରଣର ପ୍ରକୋପରେ ଉତଲା ହୋଇ । ଯତେ ଅବା ଫୁଲର ସୁଗନ୍ଧ କେଉଁ ଅଜଣା ରାଇଜରୁ ବହିଆଣିଛି ବୃକୁଅରା ସୁନେଲୀ ଖବର । ସେ ଏକାକିନୀ ପଦଚାରଣ କରି ଘୂରିବୁଲିଲା ବଗିଚାର ବୃକ୍ଷଲତା ଗହଳ ମଧ୍ୟରେ । ବଗିଚାର ପୋଷା ହରିଣଗୁଡ଼ାକ ଅନ୍ଧାର ମାଡ଼ିଆସିବାରୁ, ନିଜନିଜର ବସାରେ

ଯାଇ ଆଶ୍ରୟ ଗ୍ରହଣ କଲେ । ମାତ୍ର ଗୋଟିଏ ଦୁଇଟି ଶଶା ଏଣେତେଣେ ଧାଁଦଉଡ଼ କରି ଚମକ ସୃଷ୍ଟି କରୁଥିଲେ ।

ଆନା ଫୁଲର ସୁଗନ୍ଧରେ ମସଗୁଲ ହୋଇ ଫେରିଆସିଲାବେଳେ ଦେଖିଲା ଗୋଟିଏ ନାଗେଶ୍ୱର ଗଛ ବେଶ୍ ଗହଳ ଛାୟା ମେଲିଦେଇଛି । ସାଥିରେ ତା'ର ଛାୟାସଙ୍ଗିନୀ । ସେଇ ଗଛ ଛାଇରେ ଛିଡ଼ାହୋଇ ନିଜକୁ ନିତାନ୍ତ ଅସହାୟ ବୋଧକଲା ଅଠରବର୍ଷୀ ବିଦେଶିନୀ ଆନା । ମନେ ମନେ ସେ ଦାରୁଣ ଯନ୍ତ୍ରଣା ଅନୁଭବ କରି ଛଟପଟ ହେବାକୁ ଲାଗିଲା ।

ଅଳ୍ପ କେଇକ୍ଷଣ ଛିଡ଼ାହୋଇ ଆନା ଏକା ଏକା ଫେରିଆସିଲା ଘରକୁ । ସେ ବଗିଚାରୁ ଫେରି ଅନ୍ୟମନସ୍କ ଭାବରେ ଗୁମାସ୍ତାମାନଙ୍କ ସହିତ କିଛି ସମୟ ବସିଲା ହିସାବ-କିତାବ ତନଖି ପାଇଁ । ତା' ବାପା ସ୍ୱଦେଶକୁ ଫେରିଯିବା ପରେ ଆନାର ଏମିତି ଥିଲା ନିତିଦିନିଆ ଅଭ୍ୟାସ । କିନ୍ତୁ ସେଦିନ ତନ୍ୱୀ ଆନାର ମନ ଲାଗିଲା ନାହିଁ ଖାତାପତ୍ରର ମିଶାଣ ଫେଡ଼ାଣ ହରଣ ଗୁଣନ ମଧ୍ୟରେ । ସଭିଙ୍କୁ ଛୁଟିକରିଦେଇ ଆନା ଉଠିଆସିଲା ଉପର ମହଲାର ଖାଇବାଘରକୁ । ଖାଇବାରେ ଆଜି ତା'ର ବିଶେଷ ରୁଚି ନଥିଲା । ଯା'ହେଉ, ଏଣୁତେଣୁ ଅଳ୍ପକିଛି ଖାଇଦେଇ ଆନା ପଶିଗଲା ତା'ର ଶୋଇବା ଘରକୁ । ନୀଳକୋଠିର ଗ୍ୱରଥଡ଼ୁ ଆଲୁଅ ଲିଭାଇ ଦେବାକୁ ନିର୍ଦ୍ଦେଶ ଦେଇ ସେ ଦେହଟାକୁ ଲମ୍ବାଇ ଦେଲା ଦୁଗ୍ଧଫେନନିଭ ମୁଲାୟମ୍ ଶେଯରେ । କିନ୍ତୁ କାହିଁକି କେଜାଣି ଆଜି ତାକୁ ସେଇ ତା'ର ନିତିଦିନର ବିଛଣାଟା ଆନନ୍ଦ ଦେଇପାରିଲା ନାହିଁ । ମ୍ଳାନ ଜ୍ୟୋତ୍ସ୍ନାର ଫାଳିକିଆ ଆଲୁଅ ବିଚ୍ଛୁରି ପଡ଼ୁଥିଲା ତା' ଶୋଇବା ଘରର ଝରକା ଫାଙ୍କରେ । ଆନା କିଛି ସମୟ କୋଇଲିନାରୀଣୀର ମୁରୁକି ହସ ଆଡ଼କୁ ଏକଲୟରେ ଚାହିଁବା ପରେ, ଧୀରେ ଧୀରେ ଉଠିଆସିଲା ପିଆନୋର ଷ୍ଟୁଲ ଉପରକୁ । ତା'ର କୋମଳ ଅଙ୍ଗୁଳିଗୁଡ଼ିକ ସଞ୍ଚରିତ ହେବାକୁ ଲାଗିଲା—ପିଆନୋର ମୃଦୁଗୁଞ୍ଜରଣଶୀଳ କଳେବରରେ । ସଙ୍ଗେ ସଙ୍ଗେ ବାଜିଉଠିଲା କରୁଣ ମୂର୍ଚ୍ଛନା ତୋଳି ମୃଦୁଗୁଞ୍ଜନ । ହେମନ୍ତର ଶୀତୁଆ ରାତିରେ ଗୋଟିପଣେ ଝାଳରେ ଜୁଡ଼ୁବୁଡ଼ୁ ହୋଇଗଲା ତନ୍ୱୀ ଆନା । ପୁଣି ପରମୁହୂର୍ତ୍ତରେ ବିରହ ଉଷ୍ମରେ କମ୍ପି ଉଠିଲା ତନ୍ୱୀ ରୂପସୀ । ଆଜିର ଶୀତୁଆ ରାତିରେ ତାର ନିଃସଙ୍ଗ ବୁକୁଟା ଦୁଲ୍‌ଦୁଲ୍ ହୋଇ କମ୍ପି ଉଠିଲା । ଭାବନାର ପ୍ରଖର ସ୍ରୋତରେ ଉଠିବେଇ ବୁଡ଼ିବେଇ ହୋଇ କେତେବେଳେ କେଜାଣି ତା' ଆଖିପତାଗୁଡ଼ିକ ମୁଦିହୋଇଗଲା । କେତେବେଳଯାଏଁ ସେ ଶୋଇପଡ଼ିଥିଲା ତା'ର ଖିଆଲ ନଥିଲା—ହଠାତ୍ କୌଣସି ଏକ ଆତଙ୍କିତ ଶବ୍ଦରେ ଆନାର ନିଦ ଭାଙ୍ଗିଗଲା । ସେ ସହସା ଉଠି ଅବାକାବା ହୋଇ ପଳେଏକାଳ ଅନାଇରହିଲା ଦୁଆର ଓ ଝରକା ଆଡ଼କୁ । କିଛିକ୍ଷଣ ପରେ ଆନା ଆଶ୍ୱସ୍ତ ହୋଇ ଦେଖିଲା, ଜ୍ୟୋତ୍ସ୍ନାର ଧୋବ ଫରଫର୍ ଆଲୁଅ ଟିକିଏ ମ୍ଳାନ ହୋଇଆସିଲଣି । ସେ ହଠାତ୍ କିଛି ଠଉରେଇ ପାରିଲା ନାହିଁ ।

ଆନାର ଶୋଇବା ଘରଟି ଥିଲା ନୀଳକୋଠିର ସବା ଉପର ମହଲାର ଗୋଟିଏ ପ୍ରାନ୍ତ

ଭାବରେ । ଯେଉଁଠି ସୁବର୍ଣ୍ଣରେଖାର ଅଙ୍କାବଙ୍କା ତଟଦେଶଟି ଠିକ୍ ଧନୁର ଦଣ୍ଡ ପରି ବକ୍ର ହୋଇ ହଳ୍ଦିଆ ପରି ଆଗେଇଯାଇଛି କେତେଦୂରଯାଏଁ । ସେଇଠାରୁ ଦେଖାଯାଏ ଦୂର ପାହାଡ଼ର ସବୁଜ ବନାନୀ ବେଶ୍ ସୁସ୍ପଷ୍ଟ ହୋଇ । ଶାଳ ଓ ମହୁଲର ଘନଜଙ୍ଗଲଟି ଧୀରେ ଧୀରେ ଉପରକୁ ମୁଣ୍ଡଟେକି ପାହାଡ଼ ଶିଖରକୁ ଲମ୍ବିଯାଇଥିଲା । ଯେଉଁଠି ଆକାଶର ଉଚ୍ଚତାକୁ ଛୁଇଁବା ପାଇଁ ପାହାଡ଼ର ସୁଉଚ୍ଚ ଶିଖର ମୁଣ୍ଡ ଟେକି ଉଦ୍ଧତ ସାଥିରେ ମିଶିଯାଇଥିଲା ସାବ୍ଲୀଳ ଭାବରେ ।

ଅସ୍ପଷ୍ଟ ଆଲୋକରେ କିଛି ଦେଖାଯାଉନଥିଲେ ମଧ୍ୟ ଆନା ବେଶ୍ ଶୁଣିପାରିଲା—ଦୁଇ ଗୁରଖଣ୍ଡି ନଉକା ପାଣିର ସୁଅ କାଟି ମାଡ଼ିଆସୁଛି ତଟଦେଶ ଆଡ଼କୁ । ହଠାତ୍ ସେ ଶୁଣିବାକୁ ପାଇଲା—କିଏ ଜଣେ ଫକ୍କର ଡେଇଁପଡ଼ିଲା ନଦୀର ସୁଅରେ ଏବଂ ସଙ୍ଗେ ସଙ୍ଗେ ଫକ୍ଫାକ୍ କରି ଆହୁରି ଦୁଇଚାରି ଜଣ ଡେଇଁପଡ଼ିଲେ ନଦୀଗର୍ଭକୁ । ବେଶ୍ କିଛିକ୍ଷଣ ଯାଏ ଛପଛପଙ୍କର ସନ୍ତରଣ ଶବ୍ଦ ଶୁଣି ପାରିଲା ଆନା । ଅବଶ୍ୟ ଆନା କିଛି ଦେଖିବାକୁ ପାଇଲା ନାହିଁ ସତ; କିନ୍ତୁ ତା'ର ମନେହେଲା—ଗୋଟାଏ କିଛି ନିଶ୍ଚୟ ଅଘଟଣ ଘଟିଯାଇଛି—ସେଇ ଅସ୍ପଷ୍ଟ ଆଲୋକ ମଧ୍ୟରେ । ଏପରି ଗଭୀର ନିଶିଥିନୀରେ ନଦୀଗର୍ଭରେ ନୌକା ଚଳାଇବାର ସେ କେବେହେଲେ ଦେଖିନଥିଲା କିମ୍ବା ଏପରି ଗୋଟିଏ ଅଘଟଣ ଘଟିବାର ଶୁଣି ନଥିଲା । ତେଣୁ ଅଜଣା ଆତଙ୍କରେ ଶିହରିଉଠି ଗୁଳିଭର୍ତ୍ତି ପିସ୍ତଲଟି ଉଠାଇନେଇ ସେଥିରୁ ଦୁଇଚାରିଟା ଗୁଳି ଫୁଟାଇଦେଲା ନିରୁଦ୍ଦିଷ୍ଟ ଭାବରେ ଆନା ।

ତା'ପରେ ଆନା କାନଡେରି ଶୁଣିବାକୁ ପାଇଲା—କୂଳଆଡ଼କୁ ଆଗେଇଆସୁଥିବା ନୌକାଗୁଡ଼ିକ ଆହୁଲମାରି ପଳାଇ ଯାଉଛନ୍ତି । କେତେଜଣ ବରକନ୍ଦାଜ ବନ୍ଧୁକର ଶବ୍ଦ ଶୁଣି ହୋହଲ୍ଲା କରି ଆଗେଇଆସିଲେ । ଉପର ମହଲା ଆଡ଼ରୁ ନାଏବ୍‌ବାବୁ ଧଇଁସଇଁ ହୋଇ ଧାଇଁଆସିଲେ । ଆନା ସମସ୍ତଙ୍କୁ ବୁଝାଇଦେଇ କହିଲା—"ନା, କିଛି ନୁହେଁ । ତୁମେମାନେ ଭୟ କରନାହିଁ । ହଠାତ୍ ନଈ ଭିତରେ ଦୁଇ ଗୁରଖଣ୍ଡି ନାଆ ଆମ ବଗିଚା ଆଡ଼କୁ ଆଗେଇ ଆସୁଥିବାର ଶୁଣି ମୁଁ ବନ୍ଧୁକ ଫୁଟାଇଥିଲି । କିନ୍ତୁ ମୋ' ବନ୍ଧୁକର ଆଓ୍ୱାଜ୍ ଶୁଣି ନୌକାଗୁଡ଼ିକ ଯେଉଁ ଆଡ଼ୁ ଆସିଥିଲେ ପୁଣି ସେ ଦିଗରେ ପଳାଇଗଲେ ।"

ପୁଣି କିଛିସମୟ ପରେ ସବୁ ଶୁନ୍‌ଶାନ୍ ହୋଇଗଲା । ଆଉ କୌଣସି ଦିଗରୁ କିଛି ହେଲେ ଶବ୍ଦ ଶୁଣାଗଲା ନାହିଁ । ରାତିଅଧିଆ ଶୀତ ବେଶ୍ ଜମିଉଠି କାଲୁକା ଥରେଇ ଦେଉଥିଲା । ଅବଶ୍ୟ ପାହାଡ଼ିଆ ଇଲାକାରେ ଏ ପ୍ରକାର ଅନୁଭୂତି ଆଦୌ ଆକସ୍ମିକ ନଥିଲା ।

ଆନା ପୁଣି ଆଲୁଅ ଲିଭାଇ ଦେଇ ଶୋଇବାକୁ ଚେଷ୍ଟା କଲା ସତ—କିନ୍ତୁ ସେ ଆଉ ଶୋଇପାରିଲା ନାହିଁ । ସେ ଝରକା ଖୋଲି ଏକଧ୍ୟାନରେ ନଦୀ ଆଡ଼କୁ ଚାହିଁ ରହିଲା । ନଦୀ ଓ ନୀଳକୋଠିର ମଝିରେ ପ୍ରାଚୀର ଆରପଟେ ମାତ୍ର କେତୋଟି ବଡ଼ବଡ଼ ଗଛ ଥିଲା । ଆନା ସୁସ୍ପଷ୍ଟ ଭାବରେ ଦେଖିପାରିଲା—କେହି ଜଣେ ଛିଡ଼ାହୋଇଛି ଗୋଟିଏ ବିଶାଳ ବୃକ୍ଷର

ଜନ୍ମ ଭୂମିରେ । ଅନା ଖୁବ୍ ଲକ୍ଷ୍ୟ କରି ସେଇ ଆଡ଼କୁ ଗ୍ଳାହିଁରହିଲା । କିଛିକ୍ଷଣ ପରେ ସେ ଦେଖିବାକୁ ପାଇଲା—ଗଛ ତଳେ ଛିଡ଼ା ହୋଇଥିବା ଗ୍ରମ୍ୟାମୂର୍ତ୍ତିଟି ଗୋଟିଏ ନାରୀ···। ମୁଣ୍ଡରେ ତା'ର ରହିଛି ଓଢ଼ଣା । ଅନା ନଜର କୌତୂହଳ ଦମନକରିନପାରି, ପିଢ଼ି ଦେଇ ଓହ୍ଲାଇଆସିଲା ତଳକୁ । ହାତରେ ତା'ର ସେଇ ଗୁଳଭରା ପିସ୍ତଲ୍‌ଟି । ତା'ପରେ ଫେନ୍ସ୍‌ର ଦରଜା ଖୋଲି ଆଗେଇଗଲା ଗ୍ରମ୍ୟାମୂର୍ତ୍ତିଟି ଛିଡ଼ାହୋଇଥିବା ଗଛଆଡ଼କୁ ।

ନା, ତା'ର ଧାରଣା ଥିଲା ଅଭ୍ରାନ୍ତ । ସତକୁସତ ଗଛଟିକୁ ଆଉଜି ଛିଡ଼ା ହୋଇଥିଲା ନାରୀଟିଏ । ପାଣିରେ ସବୁଙ୍କ ତା'ର ସୁଡ଼୍‌ବୁଡ଼୍ ଏବଂ ଦେହରେ ତା'ର ମଇଳା ଅଥଚ ଦାମିକା ଶାଢ଼ିଟାଏ ଓଦା ସରସର ହୋଇ ଜଡ଼େଇ ହୋଇଯାଇଛି । ଅନା ଆହୁରି କେଇ ପାହୁଣ୍ଡ ଅଗେଇଯାଇ ଦେଖିଲା ନାରୀଟି ଶୀତରେ ଥରଥର ହୋଇ କମ୍ପୁଛି । ତା'ର ମ୍ଳାନ ମୁଖମଣ୍ଡଳରେ ଭୟର କାତରତା ଫୁଟିଉଠିଛି ଝାପ୍‌ସା ଜହ୍ନର ଗ୍ରମ୍ୟାମିଶ୍ରିତ ଆଲୋକରେ । ଅନା ବିସ୍ମିତ ହୋଇ ଟିକିଏ ରୁକ୍ଷ ସ୍ୱରରେ ପଚାରିଲା—"କିଏ···? କିଏ ତୁମେ ? ଏଠି ଏମିତ ଛିଡ଼ାହୋଇଛ କାହିଁକି ?"

ନାରୀମୂର୍ତ୍ତି ପ୍ରଚଣ୍ଡ ବର୍ଷାପରେ ବରଡ଼ାପତ୍ର ଥରିଲା ପରି ଥରଥର ହୋଇ କମ୍ପୁଥିଲା । ବୋଧହୁଏ କଥା କହିବାକୁ ତା'ର ଶକ୍ତି ନଥିଲା । ଅନାର କଣ୍ଠସ୍ୱର କର୍କଶ ହୋଇଆସିଲା । ସେ ପୁଣି କହିଉଠିଲା—'ଭୟ କରନାହିଁ, ଆସ···! ଆସ !! ଆଗେଇଆସ···!! କଅଣ ହୋଇଛି ତୁମର···?"

ତଥାପି ମୂର୍ତ୍ତିଟି ନୀରବ ଓ ନିଷ୍ପନ୍ଦ···। ଅନା ଆଗେଇଯାଇ ନାରୀଟିର ହାତଟିକୁ ଧରିପକାଇବା ମାତ୍ରେ ନାରୀଟି ପ୍ରାୟ ମୂର୍ଚ୍ଛିତ ଅବସ୍ଥାରେ ଢଳିପଡ଼ିଲା ଅନା ଉପରକୁ । ବହୁ କଷ୍ଟରେ, ଏକପ୍ରକାର ଘୋଷାରିଲା ପରି, ଅନା ନାରୀଟିକୁ ଉଠାଇ ଆଣିଲା ଧର୍ମେଇ ହୋଇ ନିଜ ଶୋଇବାଘରକୁ । ସେ ସ୍ପଷ୍ଟ ଭାବରେ ଲକ୍ଷ୍ୟ କଲା—ନାରୀଟି ଥରଥର ହୋଇ କମ୍ପିବା ସଙ୍ଗେ ସଙ୍ଗେ ମଝିରେ ମଝିରେ ଟିକିଏ ଆଖିଖୋଲି କାତର ଦୃଷ୍ଟିରେ ଘରଆଡ଼େ ଆଖି ବୁଲାଇ ନେଉଛି ।

ଅନା ଥିଲା ବୁଦ୍ଧିମତୀ ଓ ପ୍ରତ୍ୟୁତ୍ପନ୍ନମତି ଯୁବତୀ । କେଉଁ ସମୟରେ କ'ଣ କରିବାକୁ ହୁଏ ସେ ଜାଣିଥିଲା । ତେଣୁ ସେ ନାରୀଟିକୁ ତଳେ ଖଣ୍ଡିଏ ବିଛଣା ପାରିଦେଇ ଶୁଆଇ-ଦେଇ ଧାଇଁଗଲା ରୋଷେଇଘରକୁ । ନିଜ ହାତରେ ଗିଲାସେ କ୍ଷୀର ଗରମ କରି ଆଣି ତାକୁ ପିଆଇ ଦେବାପରେ ଖଣ୍ଡିଏ ବିଛଣା ଚଦର ଟାଣିଆଣି ତା'ର ଲୁଗା ବଦଳାଇ-ଦେଲା । ସେତିକବେଳେ ସେ ବେଶ୍ ଦେଖିପାରିଲା—ତା'ର ବଳିଲା ବଳିଲା ପରି ଗୋଟିଏ ଗ୍ଳାଞ୍ଚରେ ଗଢ଼ା ଅନନ୍ୟସୁନ୍ଦର ଶରୀରର ସୌନ୍ଦର୍ଯ୍ୟ ଏବଂ ତା' ସାଥିରେ ତା' ଦେହରେ ଥିବା ସ୍ୱର୍ଣ୍ଣ ଅଳଙ୍କାର । ଗୋଟିଏ ନିଷ୍ପାଳ ଫୁଲ ପରି ସୁନ୍ଦର ଚେହେରାରେ ଫୁଟିଉଠୁଛି ଯୌବନର ଉଦ୍ଦାମ ଦୀପ୍ତି । ଅପରିଚିତା ଝିଅଟିକୁ ଆଣି ଅନା ଶୁଆଇଦେଲା ତା' ନିଜ ଧୋବ ଫରଫର୍ କୋମଳ ଶେଯରେ । ଭୟରେ ଅଚ୍ଛନ୍ନ ହୋଇପଡ଼ିଥିଲା ତା'ର ମୁଖ-

ମଣ୍ଡଳଟି । ତା' ମୁହଁ ପାଖକୁ ଆଲୁଅ ନେଇ ଆନା ଦେଖି ଅନୁମାନ କଲା—ଝିଅଟି ନିଶ୍ଚୟ କୌଣସି ସମ୍ଭ୍ରାନ୍ତ ଘରର ଝିଅ । ମଥାରେ ତା'ର ଦାଉ ଦାଉ ହୋଇ ଜଳଉଠୁଛି ସୁନ୍ଦର ସିନ୍ଦୂର ଗାର । ସେହି ସିନ୍ଦୂର ଗାରରୁ ଆନା ଅନୁମାନ କରିନେଲା ଯେ ଝିଅଟି ନିଶ୍ଚିତ ଭାବରେ ବିବାହିତା । ଆଲୁଅଟିକୁ ତଳେ ଥୋଇଦେଇ କିଛି ସମୟ ଗମ୍ଭୀର ଭାବରେ ଚିନ୍ତା-ମଗ୍ନ ହୋଇପଡ଼ିଲା ଆନା । ମନରେ ତା'ର ଅସଂଖ୍ୟ ପ୍ରଶ୍ନବାଚୀ ଗୋଟିକ ପରେ ଗୋଟିଏ ଉଙ୍କିଉଠିଲା—"କିଏ ଏ' ଝିଅଟି ? କାହାର ଅଲିଅଳି କନ୍ୟା ? କେଉଁ ଧନାଢ଼୍ୟ ଘରର ବୋହୂ ଏ···? କେଉଁଠୁ ଆସିଲା ? କିପରି ବା' ଆସିଲା···?"

ତା'ପରେ ଆନା କିଛି ସମୟ ଚିନ୍ତା କରିବା ପରେ ଅନୁମାନ କଲା—ନଦୀଗର୍ଭରେ ଯେଉଁ ଅଘଟଣଅ ବତାସ ବହିଗଲା—ଏ' ଝିଅଟି ନିଶ୍ଚୟ ତାହାର ଶିକାର ହୋଇଥିଲା···! ନୋହିଲେ ଏଇ ଘଟଣାର ଠିକ୍ ପରେ ପରେ ସେ ଏଠାକୁ ଆସିନଥା'ନ୍ତା । ନିଶ୍ଚିତ ଭାବରେ ସେ ଘଟଣା ସହିତ ଝିଅଟିର କିଛି ଗୋଟାଏ ଯୋଗାଯୋଗ ରହିଛି···।

ନିଃଶବ୍ଦରେ କଟିଗଲା ସେଦିନର କୌତୂହଳପୂର୍ଣ୍ଣ ଗୁଡ଼ିଏ ଘଡ଼ି । ଏତେ ବଡ଼ ଜାଲକୋଠିରେ କେହି କିଛି ଜାଣି ପାରିଲେ ନାହିଁ । କିଏ ସେଇ ନବାଗତା ତରୁଣୀ, କେଉଁଠୁ କିପରି ଆସିଲା ସେ ଜାଲକୋଠିକୁ କେହି କିଛି ତା'ର ସୁରାକ ପାଇପାରିଲେନାହିଁ ।

ଏହା ମଧ୍ୟରେ ଗୁଡ଼ିଏ ଗୁଡ଼ିଏ ସପ୍ତାହଟିଏ ବିତିଯାଇଛି । ଏବେ ଝିଅଟି ପ୍ରାୟ ସମ୍ପୂର୍ଣ୍ଣ ସୁସ୍ଥ ହୋଇଉଠିଛି । ପ୍ରଥମେ ପ୍ରଥମେ ସେ ସବୁବେଳେ ତା'ର ଆଖିରୁ ଲୁହର ବନ୍ୟା ଛୁଟାଇ ନିର୍ବାକ୍ ହୋଇ ବସିରହୁଥିଲା । ତା'ପରେ ପରେ ସେ ଦୂର ଦିଗ୍‌ବଳୟରେ ଆଖି ଖୋସିଦେଇ ଆକାଶ ପାତାଳ କେତେ କ'ଣ ଭାବୁଥାଏ କେଜାଣି ? ଆନା ଝିଅଟିର ବିପର୍ଯ୍ୟସ୍ତ ଭାବ ଲକ୍ଷ୍ୟ କରି ଧୀରେ ଧୀରେ ଆସି ତା'ପାଖରେ ଛିଡ଼ାହୋଇଗଲେ । ସେ କୃତଜ୍ଞତାପୂର୍ଣ୍ଣ ଗୁହାଣିରେ ତା' ଆଡ଼କୁ ଥରଟିଏ ଚାହିଁଦେଇ ପୁଣି ଆଖିରୁ ଝରାଇଦିଏ ଧାରା ଶ୍ରାବଣର ଅମାନିଆ ଧାର । ଆନା ଅତ୍ୟନ୍ତ ସ୍ନେହ ଓ ଆଦରରେ ଝିଅଟିର ମୁଣ୍ଡରେ ହାତ ବୁଲାଇ ଆଣେ । ସେତେବେଳେ ଝିଅଟି ବିଦେଶିନୀ ଯୁବତୀ ଆନାକୁ ଭାବନ୍ତି ତା'ର ଅତି ଆପଣାର ବୋଲି ଏବଂ ଠିକ୍ ସେହି ଭଙ୍ଗିମା ଉଙ୍କିମାରେ ତା'ର ସଜଳ ମୁଖମଣ୍ଡଳ ଉପରେ ।

ସେଦିନର ଅସ୍ତଗାମୀ ସୂର୍ଯ୍ୟର ଅରୁଣିମ ଆଭାରେ ଦିଗଦିଗନ୍ତ ଉଦ୍‌ଭାସିତ ହୋଇଉଠି-ଥିଲା । ଠିକ୍ ସେତିକିବେଳେ ଆନା ନବାଗତା ଝିଅଟିକୁ ପାଖରେ ବସାଇ ଝଣ୍ଟିଏ ଚୌକିରେ ବସିଥିଲା—ଗୋଲ୍ ଗମ୍ବୁଜର ଠିକ୍ ତଳ ମହଲାର ଗୋଟିଏ ସୁସଜ୍ଜିତ କୋଠରୀରେ । ସେ ଘରର ପ୍ରଶସ୍ତ ଝରକା ଦେଇ ଦିଶୁଥିଲା ଦୂରଦୂରାନ୍ତର ଜାଲାଭ ଜନପଦ । ଦିନଶେଷର ଆଲୋକମାଳା ଅତ୍ୟନ୍ତ କରୁଣ ତଥା କୋମଳ ଭାବର ଏକ ପ୍ରଲେପ ଲେପିଦେଇଥିଲା ଦୁ' ଜଣଙ୍କ ମୁଖମଣ୍ଡଳରେ ।

ଆନା ନିତାନ୍ତ ସହଜ ଓ ସରଳ ଭାବରେ ପଚାରିଲା—"ତୁମ ନାଆଁ କ'ଣ ମୋତେ କହିବ ନାହିଁ ?"

ବାଳକଟି ଅତ୍ୟନ୍ତ ବ୍ୟଥିତ ସ୍ୱରରେ କହିଲା—"ମୋ' ନାଆଁ ଜାଣି କ'ଣ ପାଇବ ଭଉଣୀ ? ଯେଉଁ ଲୋକଟି ମନେପାଏ ତା' ସାଥିରେ ହିଁ ଚାଲିଯାଏ ତା'ର ନାଆଁଟି ।"

ହସି ହସି କହିଲା ଅନା—"କି ପାଗଳାମି ଏ ! ତୁମେ ତ ମୋ'ର ଆଗରେ ବସିଛ, ପୁଣି ଏ' କି କଥା ?"

"ପାଖରେ ବସିଥିଲେ କଣ କ'ଣ ବଞ୍ଚିଛୁ ବୋଲି ବୁଝାଯାଏ ?"—ଅଖି ଛଳଛଳ କରି କହିଲା ଝିଅଟି । ଆନା ସଙ୍ଗେ ସଙ୍ଗେ କଥାର ଧାରା ବଦଳାଇଦେଇ କହିଲା—"ଆଚ୍ଛା, ଯଦି ମୁଁ ତୁମକୁ ଗୋଟିଏ ନୂଆ ନାଆଁରେ ଡାକେ ତେବେ ତୁମର କ'ଣ ଆପତ୍ତି ଅଛି ?"

"ଯେମିତି ଏକ ନାଆଁ ଦେଇ ଡାକିଲେ ତୁମେ ଖୁସି ହେବ ସେମିତି ନାଆଁରେ ମୋତେ ଡାକପାର ।" ଆନା କହିଲା—"ଜାଣିଛ, ମୁଁ ଯେତେବେଳେ ଆମ ଦେଶରେ ଥିଲି, ସେତେ-ବେଳେ ଥିଲି ନିତାନ୍ତ ଛୋଟ ପିଲାଟିଏ । ମୁଁ ଯା' ସାଥିରେ ପିଲାଦିନେ ଖେଳକୁଦରେ ମାତି-ଥିଲି, ସେ ଥିଲା ଆମର ଘର ପାଖର ଛୋଟ ଝିଅଟିଏ । ଆମ ଦୁହିଁଙ୍କ ମଧ୍ୟରେ ବନ୍ଧୁତା ଖୁବ୍ ଜମିବାବେଳେ, ମୁଁ ମୋ ବାପାଙ୍କ ସାଥିରେ ଏ' ଦେଶକୁ ଚାଲିଆସିଲି । ଦୁ'ଜଣ ପରସ୍ପରକୁ କୁଣ୍ଢାଇ କେତେ କାନ୍ଦିଥିଲୁ ସେଦିନ । ଆମକୁ ନେଇ ଗାଡ଼ିଟି ଆଗେଇଗଲା; କିନ୍ତୁ ସେ ଝିଅଟି ଅତି କରୁଣ ଚାହାଣିରେ ଆମର ଚଲାପଥକୁ ଏକଲୟରେ ଚାହିଁରହିଥିଲା ନିତାନ୍ତ ସହୃଦୟତାପୂର୍ଣ୍ଣ ଚାହାଣିର ପସରା ମେଲାଇଦେଇ । ଆଜି ଆଉ ଏତେ ଦିନ ପରେ ଆମ ଦେଶ କଥା ମୋର ଆଦୌ ମନେ ନାହିଁ; କିନ୍ତୁ ମଝିରେ ମଝିରେ ମୋ ଅଖି ଆଗରେ ସେଇ କରୁଣ ଚାହାଣିଟି ଭାସିଉଠେ ଅତ୍ୟନ୍ତ ସ୍ୱାଭାବିକ ଭାବରେ ।"

ଝିଅଟି କଥା ମଝିରେ ବାଧାଦେଇ କହିଲା—"ସେ ଝିଅଟିର ନାଆଁ କଅଣ ?"

ଅନା ତା'ର ସୁନ୍ଦର ମୁଖମଣ୍ଡଳରେ ସବୁ ହସକୁ ଠେଳାଏ ବଞ୍ଚିଦେଇ କହିଲା—"ତା' ନାଆଁ ଥିଲା ମେରି । ଆଚ୍ଛା, ମୁଁ ଯଦି ତୁମକୁ ସେଇ ନାଆଁ ଦେଇ ଡାକେ···?"

ଝିଅଟି ତଳକୁ ମୁହଁ ପୋତି ତା'ର ମୁଣ୍ଡ ହଲାଇ ସମ୍ମତି ଜଣାଇଦେଲା ।

ଅନା ଝିଅଟିର ମୁହଁଟିକୁ ଦୁଇ ହାତରେ ଟେକିଧରି ବାରମ୍ବାର ଭାବବିହ୍ୱଳ କଣ୍ଠରେ ଡାକିଉଠିଲା—"ମେରି···! ମେରି···! ମୋ' ମେରି !"

ଅନାର ଭାବବିହ୍ୱଳତାରେ ମୃଦୁହାସ୍ୟର କ୍ଷୀଣ ରେଖାଟିଏ ଉକୁଟି ଉଠିଲା ଝିଅଟିର ସୁକୋମଳ ତଥା କରୁଣ ମୁଖମଣ୍ଡଳରେ । ସାରାଦିନର ମୂଷଳଧାର ବର୍ଷାପରେ, ଦିନ ଶେଷର ସୂର୍ଯ୍ୟଙ୍କ ଅରୁଣରଶ୍ମି ଯେମିତି ଆକାଶମଣ୍ଡଳରେ ଭାସିଉଠେ, ଠିକ୍ ସେମିତି ଆଜି ଖେଳିଗଲା ଝିଅଟିର ଅଧରେ ଓଠ ଫାଙ୍କରେ ।

ହଠାତ୍ କଥାର ଧାରା ବଦଳାଇଦେଇ କହିଲା ଆନା—"ଆଚ୍ଛା, କୁହ ତ··· ଏତେଦିନ ହେଲା ତୁମେ ମୋ ହାତରୁ ଖିଆପିଆ କଲଣି, ଏଥିରେ ତୁମର ଜାତି ଗଲା ନାହିଁ ତ ?"

ଝିଅଟିର ମୁଖମଣ୍ଡଳ ହଠାତ୍ ଗମ୍ଭୀର ହୋଇଉଠିଲା । ସେ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ କହିଲା—"ଯେଉଁଦିନରୁ ଘରୁ ଗୋଡ଼ କାଢ଼ି ଚାଲିଆସିଲିଣି, ସେଇ ଦିନରୁ ଆଉ

ସମାଜରେ ସ୍ଥାନ ନାହିଁ । ଏଣିକି ତୁମେ ତୁମର ଇଚ୍ଛାମତେ ଯେକୌଣସି ନାଆଁରେ ମୋତେ ଡାକିପାର ଏବଂ ଯେମିତି ଭଲ ଭାବୁଛ ସେମିତି ଖୁଆଇପାର; ଯେଥିରେ କିଛି ଯାଏ ଆସେନାହିଁ...”

ଆନା ଟିକିଏ ଦୃଢ଼ କଣ୍ଠରେ କହିଲା—“ଏ କି ବିଚାର ? ତୁମେ ତ ନିଜ ଇଚ୍ଛାରେ ଘରୁ ଗୋଡ଼ କାଢ଼ି ପଳାଇଆସିନ... ତୁମକୁ ଯଦି କେହି ବଦ୍‌ମାସ ଜୋର୍‌କରି ଘରୁ ଚୋରି କରି ଘେନିଆସେ ସେଥିରେ ତୁମର ଦୋଷ ରହିଲା କେଉଁଠି ?”

ମେଘାର ମୁଖମଣ୍ଡଳରେ ଲଜ୍ଜା ଓ ଅପମାନର ଅରୁଣିମା ଛାଇଗଲା । ସେ ପୁଣି ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ କହିଲା—“ଦିଦି, ଆମ ସମାଜ ଅତି କଠୋର । ନିଜ ଇଚ୍ଛାରେ ହେଉ ବା ବଳାତ୍କାରରେ ହେଉ, କେହି ଯଦି ଘରୁ ଥରଟିଏ ଗୋଡ଼ କାଢ଼ି ପଦାକୁ ବାହାରିପଡ଼େ, ସେ ପୁଣି ଥରେ ଦୁଆରର ଏରୁଣ୍ଡି ବନ୍ଧ ଡେଇଁ ଘର ଭିତରକୁ ଯିବାର ଅଧିକାର ହରାଇ ବସେ—ଏଇ ହେଲା ଆମ ସମାଜ ।”

ଆନା ଗମ୍ଭୀର ହୋଇଯାଇ କହିଲା—“ଧିକ୍...ଶତଧିକ୍ ତୁମ ସମାଜକୁ । ଠିକ୍ ଅଛି, ଏବେଠାରୁ ତୁମେ ମୋର ସାନଭଉଣୀ, ଆଉ ମୁଁ ତୁମର ବଡ଼ଭଉଣୀ । ଏହାହିଁ ହେଉଛି ତୁମର ପରିଚୟ ।”

ଏତିକି କହି ଆନା ମେଘାର ମୁଣ୍ଡଟିକୁ ଧରି ଜୋର୍‌ରେ ହଲାଇଦେଇ, ଖୁବ୍ ଗମ୍ଭୀର ହୋଇ କିଛିକ୍ଷଣ ବସିରହିଲା ଗାଲରେ ହାତଦେଇ । ଆନାକୁ ଅନ୍ୟମନସ୍କ ଭାବରେ ବସିଥିବାର ଲକ୍ଷ୍ୟ କରି କହିଲା ମେଘା—“ଦିଦି, ପୁଣି କ'ଣ ଭାବୁଛ ?”

ମେଘାର ସନ୍ଦେହବୋଳା କଥା ଶୁଣି ଆନା ମୁହଁ ଟେକି ତା' ଆଡ଼କୁ ଥରଟିଏ ଚାହିଁ-ଦେଇ, ପୁଣି ଭାବନାର ସୁଅରେ ନିଜକୁ ମେଲିଦେଲା । ଆନାର ଭାବଗମ୍ଭୀର ମୁହଁଟିକୁ କିଛି ସମୟ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁରହି, ଛାଏଁ ଛାଏଁ ଶିହରି ଉଠିଲା ମେଘା । ସେ ମନେ ମନେ ଖୁବ୍ ସଙ୍କୁଚିତ ହୋଇଉଠିଲା । ଅଯାଚିତ ଭାବରେ ସେ ଏତେଦୂର ଉପକାର ଆଶା କରି-ନଥିଲା । ଗାଁ-ଗହଳର ସାମାନ୍ୟ ଦରିଦ୍ର ବ୍ରାହ୍ମଣ ଘରର ଝିଅଟିଏ ସେ; କେବଳ ନିଜର ଅସାମାନ୍ୟ ରୂପସମ୍ଭାର ଯୋଗୁଁ ସେ ହିରଣ୍ୟଗଡ଼ର ରାଜରାଣୀ ହେବାକୁ ଯାଉଥିଲା । ସୁଖ ଓ ସୌଭାଗ୍ୟ ଲାଭ କରିବା ଭାଗ୍ୟରେ ନଥିବାରୁ ସବୁକିଛି ହାତପାହାନ୍ତାରେ ପାଇଥିଲେ ବି ଦୁର୍ଭାଗ୍ୟବଶରୁ ଘଡ଼ିକ ଭିତରେ ଦପ୍ କରି ଲିଭିଯାଇ ଉଭେଇଗଲା ସେ ସୌଭାଗ୍ୟ ରେଖାଟି । କିଏ ଜାଣିଥିଲା ନିୟତି ତାକୁ ଜୋର୍ କରି କେଉଁଠୁ ଆଣି କେଉଁଠି ବସାଇ ଦେବ ?

ଏମିତି ଆହୁରି କେତେ କ'ଣ ଭାବନା ଜମିଯାଇ ଅଡ଼ୁଆ ସୂତା ଖିଅ ପରି ତାକୁ ବିବ୍ରତ କରିପକାଇଲା । ହଠାତ୍ ଆନାର ଉଚ୍ଛ୍ୱସିତ ହସରେ ତା' ଭାବନାର ଅଡ଼ୁଆ ସୂତା ଖିଅଟି ଯେପରି ମଝିରୁ ଛିଡ଼ିଗଲା । ଆନା ଗୋଟିଏ ନୂତନ ଭାବନାର ଆବିଷ୍କାରରେ ଉଲ୍ଲସିଉଠି

କହିଲ—"ମେଘ, ଜାଣିଚୁ—ମୁଁ ଗୋଟିଏ ନୂଆ କଥା ଆବିଷ୍କାର କରି ସମାଧାନରେ ପହଞ୍ଚିଯାଇଛି ।"

ମେଘ ଆନାର କଥାଗୁଡ଼ାକ କିଛି ବୁଝି ନପାରି ଜଳଜଳ କରି ତା' ଆଡ଼କୁ ଅନାଇ ରହିଲା । ତା' ପରେ କହିଲା—"ଜାଣିଛୁ·· ମୁଁ ଏଠି କେତେଦିନ ହେବ ତୋ'ର ବିଷୟରେ ଅନେକ ଭାବିଲିଣି । ମୁଁ ତୋତେ କପରି ଭାବରେ ରଖିବି ? ଏପରି ଭାବରେ ତୋତେ ଆଉ ବେଶି ଦିନ ଏଠାରେ ଲୁଚାଇ ରଖିହେବନି । ତୁ ଯଦି ତୋ' ବାପାଙ୍କ ପାଖକୁ ଫେରିଯାଉ ତେବେ ମୋର କିଛି ଚିନ୍ତା ରହନ୍ତା ନାହିଁ । କିନ୍ତୁ ତୁ ତ କହୁଛୁ ଯେ ତୁମ ସମାଜ ତୋ' ଫେରିଯିବାର ବାଟ ଚିରଦିନ ଲାଗି ବନ୍ଦକରିଦେଇଛି । ସେ ଯାହା ହେଉନା କାହିଁକି, ଏଇଲେ ତୁ ମୋର ସଂପୂର୍ଣ୍ଣ ଆପଣାର । ତେଣୁ ମୁଁ ତୋ'ର ବିଷୟରେ ଖୁବ୍ ବେଶି ଭାବୁଛି···।"

ଏଥର ଝିଅଟି ଆନା ଆଡ଼କୁ ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁରହିଲା । ଆନା ପ୍ରତି କୃତଜ୍ଞତାରେ ତା' ଆଖି ଦୁଇଟି ଲୁହ ଛଳଛଳ ହୋଇଉଠିଲା ।

ପୁଣି ହସି ହସି ଆନା କହିଉଠିଲା—"ଶୁଣ, ମୁଁ କଅଣ ଭାବିଛି—ଅସଲ କଥାଟା ତୋ' ଆଗରେ ଖୋଲି କରି କହିଦିଏଁ । ଆଜିଠାରୁ ତୁ ହେବୁ ମୋର ଗୋଟିଏ ନିକଟସମ୍ପର୍କୀୟା ଭଉଣୀ ।"

"ଏବେ ମୁଁ କ'ଣ ଭଉଣୀ ହୋଇନାହିଁ କି ?"

"ନା···ନା, ତୁ କିଛି ବୁଝିନୁ···। ଏବେଠାରୁ ତୁ ଆଉ ଏ ଦେଶର ଝିଅ ନୋହୁଁ—ତୁ ହେଉଚୁ ସ୍କଟ୍‌ଲଣ୍ଡ ଦେଶର ଗୋଟିଏ ଝିଅ—ମେଘ ।"

"ହେଲା ଏବେ ତୁମ କଥା; କିନ୍ତୁ ତୁମର କଥା ବିଶ୍ୱାସ କରିବ କିଏ କପରି ? ମୋ' ପୋଷାକ ଆଉ ମୋ' ଚେହେରା ଦେଖିଲେ କିଏ ମୋତେ ବିଦେଶିନୀ ଝିଅଟେ ବୋଲି କହିବ ଭଲା ?"

"ସେଇ କଥା ତ ମୁଁ ଏତେବେଳଯାଏଁ ଭାବୁଛି । ତୋ' ଗୋରାତକତକ ଚେହେରାଟିକୁ ଟିକିଏ ବାଗେଇବୁଗେଇ ଦେଲେ ତୋତେ କେହି ଏ ଦେଶର ଝିଅଟିଏ ବୋଲି ଚିହ୍ନି ପାରିବେନି ।"

ମେଘ ହସି ହସି କହିଲା—"ତୁମେ କ'ଣ କେବେହେଲେ ଶାଢ଼ି ପିନ୍ଧନାହିଁ ?"

"ଛାଡ଼ ସେ କଥା । ତୁ ଜଲ୍‌ଦି ମୋ' ସାଥିରେ ଆସିଲୁ । ମୁଁ ତୋତେ ମୋ' ପୋଷାକ-ପତ୍ର ପିନ୍ଧାଇଦେଇ ଦେଖେ ତୋତେ କେମିତିକା ମାନୁଛି···।"—ଏହା କହି ଆନା ମେଘର ହାତ ଧରି ଭିଡ଼ି ଭିଡ଼ି ନେଇଗଲେ ଆଉ ଗୋଟିଏ ଘରକୁ ।

ଘର ଭିତରକୁ ପଶିଯାଇ ଅନା ଆଲମିରାରୁ ତା'ର ପୋଷାକଗୁଡ଼ିକ ବାହାରକରି ଗଦା କରିଦେଲା ତଳେ । ଗୋଟିକ ପରେ ଗୋଟିଏ ପୋଷାକ ଆଣି ମେଘ ଦେହରେ କଚ୍ଛାକଚ୍ଛି କରିବା ପରେ, ତା'ର ପସନ୍ଦ ହୁଏନା । ତେଣୁ ସେଇଟିକୁ ଫିଙ୍ଗିଦେଇ ପୁଣି ଗୋଟେ ବାହାରକରି ମେଘ ଦେହରେ ପିନ୍ଧାଏ ଅନା । ସେଥିରୁ ଗୋଟିଏ ଦୁଇଟି ତା'ର ଟିକିଏ

ପସନ୍ଦ ହେଲା ସତ; କିନ୍ତୁ ପରମୁହୂର୍ତ୍ତରେ ସେଇ ପୋଷାକଗୁଡ଼ାକୁ ଥରେ ଚାହିଁ ମେଘା ଆଡ଼କୁ ନିରୀକ୍ଷଣ କରି ଚାହିଁବା ପରେ, ସେଗୁଡ଼ାକ ଫିଙ୍ଗିଦେଇ ଅନ୍ୟ ଦାମିକା ଦାମିକା ପୋଷାକ ଗୁଡ଼ିଏ ବାହାରକଲା ଆନା । ନା, ସେଇ ଗଦା ଗଦା ପୋଷାକ ମଧ୍ୟରୁ କୌଣସିଟି ତା'ର ପସନ୍ଦ ହେଲାନି । ଶେଷକୁ ସେ ବ୍ୟଗ୍ର ହୋଇ ବାହାର କରି ଆଣିଲା ଆଉ ଗୋଟିଏ ବାକ୍ସରେ ସାଇତା ହୋଇ ଥୁଆହୋଇଥିବା ପୋଷାକଟିଏ । ସେଇ ପୋଷାକଟି ତା' ବାପାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ତାକୁ ଉପହାର ଦେଇଥିଲେ ତା' ଜନ୍ମଦିନ ଉପଲକ୍ଷେ ଦିଲ୍ଲୀରେ । ସେଇ ପୋଷାକଟି ବେଶ୍ ମାନିଲା ମେଘାକୁ । ଆନା ଆନନ୍ଦରେ ବିଭୋର ହୋଇ-ଯାଇ ପୋଷାକଟିକୁ ବେଶ୍ ଭଲଭାବରେ ସଜେଇ ସଜେଇ ପିନ୍ଧାଇଦେଲା ମେଘାକୁ । ନାନାରକମର ବିଦେଶୀ ପ୍ରସାଧନରେ ସଜେଇଦେଇ ସାରି ବାରମ୍ବାର ମେଘାର ମୁହଁକୁ ଚାହିଁଲା ଆନା । ତା' ପରେ ପଛପଟେ ଥିବା ଗୋଟିଏ ବିରାଟ ଦର୍ପଣ ଆଡ଼କୁ ତା' ମୁହଁ ବୁଲାଇଦେଇ ପଚାରିଲା—"ଦେଖିଲୁ, ଏଥର ନିଜକୁ ନିଜେ ଭଲଭାବରେ ଚିହ୍ନି ପାରୁଛୁକି ନାହିଁ ?"

ଦର୍ପଣ ଆଗରେ ନିର୍ବାକ୍ ଓ ନିସ୍ପନ୍ଦ ଭାବରେ ଛିଡ଼ାହୋଇ ରହିଲା ମେଘା । ବିସ୍ମୟରେ ବିସ୍ଫାରିତ ହୋଇଗଲା ତା'ର ହରିଣୀର ଚକ୍ଷୁ ସଦୃଶ ଚକ୍ଷୁ ଦୁଇଟି । ସେ ମନେ ମନେ ଭାବିଲା —'ସତେ··· ମୁଁ କାହାକୁ ଦେଖୁଛି ମୋ' ଆଗରେ ? କିଏ ଏଇ ବିଦେଶିନୀ ମହିଳାଟି ? ଏ ତ କେବେହେଲେ ମୈତ୍ରେୟୀ ନୁହେଁ ? ତା'ହେଲେ··· ମୋର କ'ଣ ନବଜନ୍ମ ହେଲା ? କିଏ ମୋତେ ବାହାରେ ଦେଖିଲେ ସାହସ କରି କହିବ ଯେ ମୁଁ ପଣ୍ଡିତ ରମାକାନ୍ତ ଭଟ୍ଟାଚାର୍ଯ୍ୟଙ୍କର ଅଲିଅଳି କନ୍ୟା ? ହଁ, ନିଶ୍ଚୟ ମୈତ୍ରେୟୀ ସେଇ ଗୁଣ୍ଡାମାନଙ୍କ ହାତରେ ମୃତ୍ୟୁ ବରଣ କରିଛି । ମୁଁ ମେଘା ! ମେଘା !! ମୈତ୍ରେୟୀର ମୃତ୍ୟୁ ପରେ ତା'ରି ଆତ୍ମା ଜନ୍ମନେଇଛି ମେଘା ରୂପରେ, ଏଇ ବିଦେଶିନୀ ସହାନୁଭୂତିଶୀଳା ଆନାର ଆଦର, ଯତ୍ନ ଓ ସ୍ନେହରେ ।

ପଛପଟେ ଛିଡ଼ାହୋଇ ମୁରୁକି ହସରେ ଫାଟିପଡ଼ୁଛି ଆନା । ଏ' ତା'ର ସାଧାରଣ ହସ ନୁହେଁ, ତା'ର ସଫଳତାର ଆନନ୍ଦାତିରେକ ସ୍ଫୁରଣ । ମନରେ ତା'ର ଆନନ୍ଦର ଜୁଆର କୂଳ ଲଙ୍ଘି ଯାଉଛି । ହଁ ପ୍ରକୃତରେ ସେ ଯାହା ଭାବିଥିଲା ତାହାହିଁ ଘଟିଲା ।

ପଛକୁ ଫେରି ଚାହିଁଲା ମେଘା ଆନା ଆଡ଼କୁ । ଦୁହିଙ୍କର ଚାରିଚକ୍ଷୁର ମିଳନ ହେବାମାତ୍ରେ ମେଘା ଆଉ ନିଜ ମନର ଆନନ୍ଦର ଢେଉକୁ କୌଣସିମତେ ବାଲିବନ୍ଧ ଦେଇ ରୋକି ପାରିଲାନି । ଦୁହେଁ ଦୁହିଙ୍କି ଭାବାବେଗରେ ଆଲିଙ୍ଗନ କରିବା ପରେ କହିଲା ଆନା—"ତୋ'ର ଏଇ ସୁନ୍ଦର କଳା ଆଖି ଦୁଇଟିକୁ ଆଉ କୌଣସିମତେ ଢାଙ୍କିଦେଇ ପାରିଲିନି ମେଘା ! ଆଉ, ସେଇତକ ସେମିତି ରହୁ—ନହେଲେ ମୁଁ ତୋତେ ଚିହ୍ନି ପାରିବ ନାହିଁ ଯେ !"

ଚଉଠୀ ରାତିର ବାସର ଶେଯ ପାଇଁ ପିନ୍ଧିଥିବା ତା'ର ସେଇ ଦାମିକା ଶାଢ଼ିଟିକୁ ସେ ଭଲଭାବରେ ଚଉତାଚଉତି କରି ଆଲମିରାର ଗୋଟିଏ କୋଣରେ ସାଇତିଦେଲା ।

# ପାଞ୍ଚ

ପରଦିନ ସିନ୍ଦୂର ଫାଟିବା ଆଗରୁ ଆନାର ଘୋଡ଼ାଗାଡ଼ିଟା ବାହାରିଗଲା ସହରକୁ । ସମସ୍ତେ ଜାଣିଥିଲେ ଯେ ମେମ୍‌ସାହେବଙ୍କର କେହି ଜଣେ ଆତ୍ମୀୟଙ୍କୁ କୋଠିକୁ ଆଣିବାକୁ ସେ ଏତେ ସକାଳୁ ତରବର ହୋଇ ବାହାରିଯାଇଛନ୍ତି ସହରକୁ ।

ଦିନ ଗଡ଼ଗଡ଼, ଝାପ୍‌ସା ଆଲୁଅରେ ଘୋଡ଼ାଗାଡ଼ିଟି ଆସି କୋଠିର ପ୍ରଧାନ ଫାଟକ ପାଖରେ ପହଞ୍ଚିଲା । ଗାଡ଼ି ଆସିବାର ଶବ୍ଦ ଦୂରରୁ ଶୁଣିପାରି ସିପାହି, ନାଏବ, ଗୁମାସ୍ତା ଧାଡ଼ି ଧରି ଦୁଆର ସାମନାରେ ଛିଡ଼ାହୋଇ ଅଭିବାଦନ ଜଣାଇଲେ ସଲାମ୍ କରି । ମେରିର ହାତ ଧରି ହସି ହସି ଆନା ଓହ୍ଲାଇଆସିଲା ଗାଡ଼ିରୁ । ଦ'ଭଉଣୀ ମନ ମଉଜରେ ମୁଖମଣ୍ଡଳରେ ଆନନ୍ଦର ଅଫୁରନ୍ତ ହସର ଢେଉ ଖେଳେଇ ଆଗେଇଗଲେ କୋଠିର ଅନ୍ଦର ମହଲକୁ ସଭିଙ୍କ ସଲାମ୍‌ର ପ୍ରତିସଲାମ୍ ଜଣାଇ ।

ନୀଳକୋଠିର ଜୀବନରେ ଏହା ଏକ ଅଭିନବ ଘଟଣା । ଆନାର ନିଃସଙ୍ଗ ଜୀବନରେ ଦେଖାଦେଲା ଗୋଟିଏ ଚିରହାସ୍ୟମୟୀ ସଙ୍ଗିନୀ । ଗଭୀର ଦୁଃଖମୟ ଏକାକିନୀ ଆନାର ଜୀବନରେ ଆନନ୍ଦର ଏକ ପରମ ସୌଭାଗ୍ୟ ଆସି ଆପଣାଛାଏଁ ପହଞ୍ଚିଗଲା ଆକସ୍ମିକ ଅତିଥି ପରି ଏବଂ ଆନା ମଧ୍ୟ ତାକୁ ସାଦରେ କୋଳେଇନେଲା ନିଜର ପରମ ସୌଭାଗ୍ୟ ମନେକରି ।

ହସ, ଖେଳ କଉତୁକ ଓ ସରସତାରେ ବିତିଗଲା ଦୁଇଟି ବର୍ଷ ଆଖି ପିଛୁଳାକେ । ମୈତ୍ରେୟୀର ଜୀବନରୁ ଧୀରେ ଧୀରେ ସମସ୍ତ ଗ୍ଲାନି ଅପସରିଗଲା ଏବଂ ତା'ର ସାଥିରେ ଆନା ମେରିର ଜୀବନରେ ଭରିଦେଲା ନୂତନ ଐଶ୍ୱର୍ଯ୍ୟର ଅପୂର୍ବ ଝଲକ । ସେ ତା'ର ଦୁଇବର୍ଷ ତଳର ଦୁଃଖଦ ଅତୀତକୁ ସମ୍ପୂର୍ଣ୍ଣ ପାସୋରି ଦେଲାପରି ମନେହେଲା ।

କିନ୍ତୁ ଦିନେ ଦିନେ ଠିକ୍ ଗୋଧୂଳି ସମୟରେ ସେ ଉଠିଯାଏ ଛାତ ଉପରକୁ । ମ୍ଳାନ ମୁଖରେ ସେ ଚାହିଁରହେ ପ୍ରଶାନ୍ତ ନୀଳ ଗଗନ ଆଡ଼କୁ—ଯେଉଁଠି ଅସଂଖ୍ୟ ତାରକା-କୁସୁମ ଫୁଟି ଝିଲ୍‌ମିଲ୍ କରୁଛି, ସେ ସେଇଠିକି ପଠାଇଦିଏ ତା'ର ଆଖିର ତାରକା ଦୁଇଟିକୁ । ତା'ର ମନେପଡ଼ିଯାଏ—ତା' ବାବାଙ୍କର ଆଦର । ଏଇମିତି ତାରା ଝିଲମିଲ ଆକାଶ ତଳେ ବସି ତା' ଅନ୍ଧ ବାପା ତାକୁ ତାରାମାନଙ୍କର ଉପସ୍ଥିତି ବିଷୟରେ ବୃତ୍ତାନ୍ତ ଏବଂ ବଶିଷ୍ଠ ଅରୁନ୍ଧତୀଙ୍କ କାହାଣୀ କହି ତା'ର ସାରମର୍ମ ବୁଝାଇ ଦିଅନ୍ତି । ସେଇ ସ୍ମୃତିକୁ ରୋମନ୍ଥନ କରି ମୈତ୍ରେୟୀ ମନେ ମନେ ଭାବେ —'ହାୟ, କେତେ ଆନନ୍ଦ ଓ ଉଲ୍ଲାସରେ କଟି-ଯାଉଥିଲା ମୋର ଏଇ ସନ୍ଧ୍ୟାବେଳଟା···'

ମୈତ୍ରେୟୀ ମଧ୍ୟ ଆନାପରି ପିଲାଟି ଦିନରୁ ତା' ମାଆଙ୍କୁ ହରାଇ ମା'ଛେଉଣ୍ଡ ହୋଇଥିଲା । ଅନ୍ଧବାପାଙ୍କର ସେବା କରି ତା'ର ଦିନଗୁଡ଼ିକ କଟିଯାଉଥିଲା ବେଶ୍ ସୁରୁଖୁରୁରେ । ଘରର ଅନ୍ୟ କାମଧନ୍ଦା ତୁଲାଇବା ପାଇଁ ତାଙ୍କ ଘରେ ବିଧବା ପିଉସୀ ଜଣେ ରହୁଥିଲା । ସବମୋଟ ତିନିଜଣ ରହୁଥିଲେ ସେ ଦରିଦ୍ର କୁଟୀରରେ ।

ଗ୍ରାମର ସେହି ଅନ୍ଧ ବ୍ରାହ୍ମଣ ପରିବାରଟି ଦାରିଦ୍ର୍ୟର କଷାଘାତରେ ନିଷ୍ପେଷିତ ହେଉଥିଲେ। କିନ୍ତୁ ଦାରିଦ୍ର୍ୟର ଶତ ତାଡ଼ନା ମଧ୍ୟରେ ପଦ୍ମିନୀ କନ୍ୟାର ରୂପ ନେଇ ଜନ୍ମ ହୋଇଥିଲା ମୈତ୍ରେୟୀ। ଯେପରି ରୂପ, ସେପରି ଗୁଣ ଆଉ ଠିକ୍ ସେଇପରି ବୁଦ୍ଧିମତୀ। ମୈତ୍ରେୟୀର ରୂପଗୁଣର ସୁନାମ ଆଖପାଖ ଅଞ୍ଚଳରେ ପରିବ୍ୟାପ୍ତ ହୋଇଯାଇଥିଲା। ତେଣୁ ଅନେକ ସମ୍ଭ୍ରାନ୍ତବଂଶଜ ମୈତ୍ରେୟୀକୁ ନିଜ ଘରକୁ ବୋହୂ କରି ନେବାପାଇଁ ଆଗ୍ରହ ପ୍ରକାଶ କରୁଥିଲେ। ଯେଉଁଦିନ ତାକୁ ଦେଖିବା ପାଇଁ ହିରଣ୍ୟଗଡ଼ର ଶ୍ରେଷ୍ଠକୁମାର ବାହାଦୁର ଆସିଥିଲେ, ସେ ଦିନଟି ଥିଲା ମୈତ୍ରେୟୀ ଜୀବନରେ ଏକ ସ୍ମରଣୀୟ ଦିବସ।

ସେଦିନ ତା'ର ବାପା ବାଡ଼ି ଠକ ଠକ କରି ଶିଷ୍ୟଙ୍କ ଘରୁ ଫେରିଆସିଲେ ସଅଳ ସଅଳ। ପ୍ରତିଦିନ ପରି ସେ ଚଉକ ପକାଇଦେଲା ଦାଣ୍ଡ ମେଲାରେ ଏବଂ ପାଣି ଗିଲାସଟିଏ ନେଇ ବାପାଙ୍କ ପାଦଦୁଇଟି ଧୋଇଦେଇ ନିଜ ଲୁଗା କାନିରେ ପୋଛିଦେଲା। ବାପା ଯାଇ ଚନ୍ଦନରେ ନବସି ତଳେ ପଡ଼ିଥିବା ସପ ଉପରେ ବସିପଡ଼ିଲେ। ତା'ପରେ ଭଟ୍ଟାଚାର୍ଯ୍ୟ ମହାଶୟ ସଙ୍ଗରେ ଆଣିଥିବା ପୋଟଳିଟିକୁ ନିଜ ହାତରେ ଖୋଲି ଖୋଲି ଡାକ ପକାଇଲେ—"ମାଆ, ମାଆରେ ! ଦେଖିଲୁ ତୋ' ପାଇଁ କ'ଣ ଆଣିଛି !"

ମୈତ୍ରେୟୀ ଯାଇ ବାପାଙ୍କ ହାତରେ ବାସନ୍ତୀ ରଙ୍ଗର ଶାଢ଼ିଟି ଦେଖି ଆନନ୍ଦରେ କୁଳୁରି ଉଠିଲା। ବାସନ୍ତୀ ରଙ୍ଗର ଶାଢ଼ିଟିର ଟକ୍ ଟକ୍ ନାଲି ରଙ୍ଗର ଧଡ଼ି ବେଶ୍ ଚମତ୍କାର ଦେଖାଯାଉଥିଲା। ବାପା ତା' ଆଡ଼କୁ ଶାଢ଼ିଟି ବଢ଼େଇଦେଇ କହିଲେ—"ନେଲୁ ମା' ! ଶାଢ଼ିଟି ପିନ୍ଧି ମୋ ପାଖକୁ ଆସିଲୁ।"

ମୈତ୍ରେୟୀ ପୁଲକଭରା ମନରେ ବାସନ୍ତୀ ଶାଢ଼ିଟି ପିନ୍ଧିସାରି ବାପାଙ୍କୁ ପ୍ରଣାମ କରି ଛିଡ଼ାହୋଇ ରହିଲା ସେଇଠି। ଅନ୍ଧ ଭଟ୍ଟାଚାର୍ଯ୍ୟ ମହାଶୟଙ୍କ ମାନସଚକ୍ଷୁରେ ଉଦ୍ଭାସିତ ହୋଇଉଠିଲା ମୈତ୍ରେୟୀର ତୋଫା ଗୋରା ତକତକ ଚେହେରା। ସେ ଆବେଗଭରା କଣ୍ଠରେ କହିଲେ—"ମାଆ··· ଆସିଲୁ ମୋ' ପାଖକୁ।" ମୈତ୍ରେୟୀ ପାଖକୁ ଆସିବା ମାତ୍ରେ ବାପା ତା'ର ଚିବୁକ ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ତାର ମୁଣ୍ଡରେ ହାତ ବୁଲାଇ ଆଣି ଏକଧ୍ୟାନରେ ତା'ରି ଆଡ଼କୁ ଚାହିଁରହିଲେ ସେଇ ଦୃଷ୍ଟିଶକ୍ତିବିହୀନ ଆଖି ଦୁଇଟିକୁ ବିସ୍ଫାରିତ କରି।

କିଛି କ୍ଷଣ ନିର୍ବାକ୍ ରହିବା ପରେ ତାଙ୍କର କମ୍ପିତ ଓଠ ଦୁଇଟି ଦେଇ ବାହାରିଆସିଲା ବୁକୁଭରା ଶୁଭାଶିଷର ନିର୍ଝରିଣୀ—"ଆନନ୍ଦରେ ବୁକୁ ମୋର ଭରିଗଲା ମା···! ହଳଦୀ ରଙ୍ଗର ଶାଢ଼ିରେ ମନ୍ଦାରଫୁଲିଆ ଧଡ଼ି, କେଡ଼େ ସୁନ୍ଦର ମାନୁଛି ମୋ' ମାଆକୁ ! ପଦ୍ମାଳୟା ହୋଇ ପଦ୍ମନାଭଙ୍କ ଘର ଆଲୋକିତ କର ମା···!"

ରମାକାନ୍ତ ଭଟ୍ଟାଚାର୍ଯ୍ୟ ସତେ ଯେପରି ସବୁ କିଛି ଦେଖିପାରୁଛନ୍ତି, ଠିକ୍ ସେଇପରି ମନେହେଲା। ସେ ସେଇପରି ତୃପ୍ତିଭରା ଚାହାଣିରେ ମୈତ୍ରେୟୀ ଆଡ଼କୁ ଚାହିଁରହିଲେ। ହଠାତ୍ ଦୁଇଟିଯାକ ଦୃଷ୍ଟିହୀନ ଚକ୍ଷୁ ଛଳଛଳ ହୋଇଉଠିଲା ଏବଂ ପରମୁହୂର୍ତ୍ତରେ ଦୁଇଧାର ବୁକୁଫଟା ଲୁହ ଝରିପଡ଼ିଲା ବୃଦ୍ଧ ରମାକାନ୍ତଙ୍କ କୋଟରଗତ ଚକ୍ଷୁର ଦୁଇକୋଣ ଦେଇ।

ମୈତ୍ରେୟୀ ଦେଇ ନୂଆ ବାଦଲ୍ଲୀ ଶାଢ଼ି କାନିରେ ବାପାଙ୍କ ଚକ୍ଷୁରୁ ଲୁହଧାର ପୋଛିଦେଲେ ସତ; କିନ୍ତୁ ନିଜ ଆଖିର ଅମାନିଆ ଅଶ୍ରୁଧାରକୁ ସେ କୌଣସିମତେ ରୋକି ପାରିଲେ ନାହିଁ।

ସେଦିନ ବେଳ ଉତରନ୍ତ ସମୟରେ ସାରା ଅଗଣାଟି କନ୍‌କନ୍ ଆଲୁଅରେ ଭରି-ଉଠିଥିଲା। ମୈତ୍ରେୟୀ କାଖରେ ଜଳପୂର୍ଣ୍ଣ କଳସୀଟିଏ ଧରି ଘରକୁ ଫେରିଆସିଲା। ଏହି ସମୟରେ ବାପା ଡାକ ପକାଇଲେ—"ମାଆ...! ମାଆରେ...! ମୋ' ପାଖକୁ ଆସିଲୁ...!"

ଘରର ଭିତର ଦ୍ୱାର ବାଟେ ଦାଣ୍ଡ ମେଲକୁ ପଶିଆସିଲା ମୈତ୍ରେୟୀ। ଝିଡ଼କି ବାଟେ ସେ ବାହାରକୁ ଚାହିଁଦେଇ ଚମକିପଡ଼ିଲା। ଦୁଆର ଆଗରେ ଧଳା ଘୋଡ଼ାଟିଏ ବନ୍ଧା ହୋଇଥିଲା। ଦାଣ୍ଡଘର ଦଲିଣରେ ବାପାଙ୍କ ପାଖରେ ବସିଥିଲେ ଜଣେ ସୁନ୍ଦର ବଳିଷ୍ଠ ଯୁବକ। ମୈତ୍ରେୟୀର ପାଦଶବ୍ଦ ବାରିନେଇ ବାପା କହିଲେ—"ପ୍ରଣାମ କର ମା—ହିରଣ୍ୟଗଡ଼ର କୁମାରବାହାଦୁର ଆସିଛନ୍ତି।"

ପ୍ରଣାମ କଲା ସେ କୁମାର ସାହେବଙ୍କୁ ତଳେ ମୁଣ୍ଡ ଲଗେଇ। ସେ ଉପରକୁ ମଥା ଟେକି ଚାହିଁବାମାତ୍ରେ ଆଗନ୍ତୁକ ଯୁବକ ଜଣକ ପଣ୍ଡିତ ରମାକାନ୍ତଙ୍କୁ ଅତ୍ୟନ୍ତ ବିନୟ ସହକାରେ କହିଲେ—"ମହାଶୟ, ଯଦି ଆପଣ ଅନୁମତି ଦିଅନ୍ତି, ତେବେ ଆମ ବଂଶର ଆଶୀର୍ବାଦପୂତ ହୀରକ ମୁଦ୍ରିକାଟି ମୁଁ ପିନ୍ଧାଇଦେବି ଆପଣଙ୍କ କନ୍ୟାକୁ।"

ଆନନ୍ଦ ଓ ବିସ୍ମୟରେ କମ୍ପିଉଠିଲା ମୈତ୍ରେୟୀ। ପଣ୍ଡିତ ରମାକାନ୍ତଙ୍କ ମୁଖମଣ୍ଡଳରେ ଆନନ୍ଦ ଓ ପରିତୃପ୍ତିର ସ୍ପଷ୍ଟ ରେଖାଟିଏ ଝଲସିଉଠିଲା। ସେ ଗଦଗଦ କଣ୍ଠରେ କହିଲେ—ଯଦି ମୋର ଆଦରର ମାଆ ହିରଣ୍ୟଗଡ଼ର ବଧୂ ହୋଇ ଯିବାର ସୌଭାଗ୍ୟ ଅର୍ଜନ କରିଛି ବୋଲି ଆପଣ ଭାବୁଥାଆନ୍ତି, ତା'ହେଲେ ଆପଣଙ୍କ ଇଚ୍ଛା ପୂର୍ଣ୍ଣ ହେଉ।"

ଆଜି ମଧ୍ୟ ମଝିରେ ମଝିରେ ମୈତ୍ରେୟୀ ତା' ଆଙ୍ଗୁଳିରେ ପିନ୍ଧିଥିବା ହୀରାପଥରବସା ମୁଦିଟି ଆଡ଼କୁ ଚାହିଁ ଭାବନାର ଅତଳ ଦରିଆରେ ବୁଡ଼ିଯାଏ। ରାତ୍ରିର ଘନଅନ୍ଧକାର ମଧ୍ୟରେ ମୁଦ୍ରିକାରେ ଲାଗିଥିବା ହୀରାଖଣ୍ଡିକ ଦାଉ ଦାଉ ହୋଇ ଜଳିଉଠେ। ମୈତ୍ରେୟୀ ମୁଣ୍ଡ ନୁଆଇଁ ଭାବେ—ଏ' କି ଅଘଟଣ ଘଟିଗଲା ତା' ପୋଡ଼ା କପାଳରେ ? ଯେଉଁ ମୁଦ୍ରିକାଟି ଆଜି ତା' ଅଙ୍ଗୁଳିରେ ଶୋଭାପାଉଛି—ସେ ହେଉଛି ରାଜବଂଶର ଶ୍ରେଷ୍ଠ ଶୋଭା ସମ୍ପଦ।

ଏଇ ହୀରକଖଣ୍ଡ ଖଚିତ ମୁଦ୍ରିକା ବିଷୟରେ ସେ ଅନେକ ଗପ ଶୁଣିଆସିଛି ପିଲାଟି ଦିନରୁ। ସେ ଶୁଣା କାହାଣୀଗୁଡ଼ିକ କେବେହେଲେ ମିଥ୍ୟା ହୋଇପାରେନା। ଏଇ ହୀରକ ଖଣ୍ଡ ବହିଆଣେ ସୁଖ ସୌଭାଗ୍ୟର ଅତୁଳନୀୟ ସମ୍ପଦ। କିନ୍ତୁ ତା' ଫଟା କପାଳକୁ ଏ କ'ଣ ଘଟିଲା ? ତା'ରି ଅଶୁଭ ସ୍ପର୍ଶରେ କାଳକାଳର ସେ ପରମ୍ପରା ମିଥ୍ୟା ବୋଲି ପ୍ରମାଣିତ ହୋଇ-ଗଲା...! ହାୟରେ କପାଳ...!

## ( ଛଅ )

ସେଦିନ ସନ୍ଧ୍ୟାରେ ନକ୍ଷତ୍ରଭରା ନିର୍ମଳ ଆକାଶକୁ ଚାହିଁ ରହିଥିଲା ମୈତ୍ରେୟୀ । ମୁଖ-ମଣ୍ଡଳରେ ତା'ର ଭାବନାର କୁହେଳିକା ସ୍ପଷ୍ଟ ହୋଇଯାଇଛି । ପଛରୁ ଚୁପ୍‌ଚାପ୍ ଆସି ଛିଡ଼ା-ହୋଇଗଲା ଆନା । ସେ ମୈତ୍ରେୟୀର ଭାବନା କ୍ଳାନ୍ତ ମୁହଁଟିକୁ ଚାହିଁଦେଇ ପଚାରିଲା—"ପ୍ରାୟ ପ୍ରତିଦିନ ତୁ ଏକୁଟିଆ ଛାତ ଉପରେ ବସି, ଆକାଶ ଆଡ଼କୁ ଏକଲୟରେ ଚାହିଁ କ'ଣ ଭାବୁଛୁ ମେରୀ ?"

"ଆକାଶର ଅଗଣିତ ତାରା···" ସ୍ପଷ୍ଟ ଉତ୍ତରଟିଏ ଦେଲା ମୈତ୍ରେୟୀ ।

"ନା, ସେ କଥା ମିଛ । ମୁଁ ଜାଣେ ଆକାଶର ତାରାଗୁଡ଼ିକୁ ଏମିତି ରୋଜ ରୋଜ ଦେଖାଯାଏ ନାହିଁ । ଦିନଟିଏ ଚାହିଁଲେ ମନ ବୋଧହୋଇଯାଏ । ନା, ତୁ ନିଶ୍ଚୟ ଅନ୍ୟ କିଛୁ ଭାବୁଛୁ ।"

"ମୋ' ବାପାଙ୍କ କଥା ବେଳେବେଳେ ମୋର ମନେପଡ଼ିଯାଏ ।"

ମୈତ୍ରେୟୀର କଥା ଶୁଣି ଆନା ଭାବନାର ଗୋଲକଧନ୍ଦାରେ କେଇ କ୍ଷଣ ବେଶ୍ ଘୂରି ଘୂରି, ମୁହଁଖୋଲି ନରମ ଗଳାରେ କହିଲା—"ଆଚ୍ଛା ମେରୀ, ତୋ' ବାପାଙ୍କ ପାଖକୁ ଫେରିଯିବାପାଇଁ ତୋ'ର କ'ଣ କୌଣସି ଦିନ ଇଚ୍ଛା ହୁଏନି ?"

"ରୋଜ୍ ରୋଜ୍ ମତେ ସେଇକଥା ପଚାରୁଛ କାହିଁକି ଦିଦି ! ଥରେ ପରା ତୁମକୁ ମୁଁ କହିଛି ଯେ, ମୋର ସେ ପଥ ଚିରଦିନ ଲାଗି ବନ୍ଦ । ମନରେ ଶତ ସହସ୍ର ବାର ଇଚ୍ଛା ହେଲେ ବି ସେ ଭାବନା ମୋର କେବେହେଲେ ଫଳବତୀ ହେବନି ।"

"ଆଚ୍ଛା, ତୁ ଥରେ କହିଥିଲୁ ନା ତୋ' ବାପା ସଂସ୍କୃତ ଅଧ୍ୟାପନା କରନ୍ତି ?"

"ହଁ, ପାଖ ଗାଆଁର ଗୋଟିଏ ସଂସ୍କୃତ ଟୋଲ୍‌ରେ ସେ ସଂସ୍କୃତ-ସାହିତ୍ୟ ପଢ଼ାନ୍ତି ।"

"ଶୁଣ, ମୁଁ ଯଦି ସଂସ୍କୃତ ପଢ଼ିବାକୁ ଚାହେଁ, ତେବେ ତୋ' ବାପା ଆସି ମୋତେ ପଢ଼ାଇବେ ?"

ଗମ୍ଭୀର ହୋଇଉଠିଲା ମୈତ୍ରେୟୀର ମୁଖମଣ୍ଡଳ । ଆଖି ଯୋଡ଼ିକ ତା'ର ଛଳ ଛଳ ହୋଇଉଠିଲା । ବିସ୍ମୟରେ ବିହ୍ୱଳ ହୋଇଉଠି ମୈତ୍ରେୟୀର ହାତ ଦୁଇଟିକୁ ଧରିପକାଇ କହିଲା ଆନା—"ତୋ' ମନରେ ଆଘାତ ଦେଲି ଭଉଣୀ, ମୋତେ କ୍ଷମା କରିବୁ··· ।"

ଝରଝର ହୋଇ ଅମାନିଆ ଅଶ୍ରୁଧାର ଝରିପଡ଼ିଲା ମୈତ୍ରେୟୀର ଲୋତକଣିଆ ଆଖି ଦୁଇଟିରୁ । ସେ କମ୍ପିତ ସ୍ୱରରେ କହିଲା—"ଅନେକ ଦୟା ଦେଖାଇ ମୋତେ ତୁମେ ଭାଗ୍ୟବାନ୍ କରିଛ ଦିଦି ! ତୁମ ଅନୁକମ୍ପାର ବୋଝ ମୁଁ ଟିକେ ହେଲେ ସହିପାରିବିନି ।"

"ଆଚ୍ଛା, ତୁ ମୋତେ ନିଜର ବଡ଼ ଭଉଣୀ ବୋଲି ଭାବୁଛୁ ତ ? କହିଲୁ ଦେଖି, ତୋ' ବାପାଙ୍କ ଉପରେ ମୋର କ'ଣ କିଛି ହେଲେ ଅଧିକାର ନାହିଁ ?"

ଆନାକୁ କୁଣ୍ଢେଇ ଧରି କଇଁ କଇଁ ହୋଇ କାନ୍ଦିଉଠିଲେ ମୈତ୍ରେୟୀ । ତା'ର ଆଖିରୁ ଝରୁଥିବା ଅବାରିତ ଅଶ୍ରୁଝରରେ ଆନାର ବକ୍ଷଦେଶ ସିକ୍ତ ହୋଇଗଲା ।

ପରଦିନ ନାଏବକୁ ଡାକି ସବୁକଥା ବୁଝାଇ କହିଲା ଆନା । ଶେଷରେ ସେ ଜୋର୍‌ଦେଇ କହିଲା—"ହଁ, ପଣ୍ଡିତ ମହାଶୟଙ୍କୁ କହିବ, ମୁଁ ଜାଣେ ଯେ ସେ ଜଣେ ନିଷ୍ଠାପର ବ୍ରାହ୍ମଣ । ତାଙ୍କୁ ଅତ୍ୟନ୍ତ ବିନୀତଭାବରେ କହିବ—ମୁଁ ତାଙ୍କ ସଂସ୍କାରରେ ଆଞ୍ଚ ଆସିବାଭଳି କୌଣସି ଆଚରଣ ଦେଖାଇବି ନାହିଁ । ସପ୍ତାହରେ ଦୁଇଟି ଦିନ ପାଲିଙ୍କି ଯିବ ତାଙ୍କ ପାଖକୁ—ପୁଣି ପଢ଼ା ଶେଷହେଲେ ତାଙ୍କୁ ପାଲିଙ୍କି ନେଇ ଛାଡ଼ିଦେଇ ଆସିବ···।"

ଏଇମିତି ଆହୁରି କେତେ କ'ଣ ବୁଝାଇ ଆନା ନାଏବକୁ ପଠାଇଦେଲା ନୂଆବସାଣ ଗାଁକୁ । ନାଏବ ମଧ୍ୟ ଶୁଭ ସମ୍ବାଦ ଘେନି ଯଥାଶୀଘ୍ର ସମ୍ଭବ ଫେରିଆସି ଜଣାଇଲା—"ମେମ୍‌ସାବ୍, ପଣ୍ଡିତ ମହାଶୟ ରାଜିହୋଇଛନ୍ତି ନୀଳକୋଠିକୁ ଆସି ଆପଣଙ୍କୁ ସଂସ୍କୃତ ପଢ଼ାଇବାଲାଗି ।"

ସପ୍ତାହରେ ଦୁଇଦିନ ପାଲିଙ୍କି ଯାଏ ନୂଆବସାଣ ଗାଁକୁ । ପଣ୍ଡିତ ରାମକାନ୍ତ ଭଟ୍ଟାଚାର୍ଯ୍ୟ ସେଇଥିରେ ବସି ଆସନ୍ତି ନୀଳକୋଠିକୁ । ପୁଣି ପଢ଼ା ଶେଷ ହୋଇଯିବା ମାତ୍ରେ ସେ ଫେରିଯାଆନ୍ତି ନିଜର ଭିଟାମାଟିକୁ । ଶୁଦ୍ଧ ଆଚାରନିଷ୍ଠ ସଂସ୍କୃତ ବିଦ୍ୱାନ୍ ଭଟ୍ଟାଚାର୍ଯ୍ୟ ମହାଶୟ ନୀଳକୋଠିରେ ଜଳ ସୁଦ୍ଧା ସ୍ପର୍ଶ କରନ୍ତି ନାହିଁ କିମ୍ବା ଶିଷ୍ୟା ଆନାକୁ ମଧ୍ୟ ଭୁଲ୍‌ରେ ସୁଦ୍ଧା କେବେହେଲେ ସ୍ପର୍ଶ କରନ୍ତି ନାହିଁ । ଏଇମିତି କଡ଼ାକଡ଼ି ନିୟମ ମଧ୍ୟରେ ଚାଲିଲା ଗୁରୁ ଓ ଶିଷ୍ୟାଙ୍କ ମଧ୍ୟରେ ସଂସ୍କୃତ ଶିକ୍ଷା ।

ସଂସ୍କୃତ ବ୍ୟାକରଣର ସାଧାରଣ ବୋଧଗମ୍ୟ କେତେଗୁଡ଼ିଏ ନିୟମ ପଢ଼ାଇବା ପରେ, ପଣ୍ଡିତ ମହାଶୟ ଆନାର ଅନୁରୋଧ ମତେ ଆରମ୍ଭ କଲେ କାବ୍ୟଚର୍ଚ୍ଚା । ହିତୋପଦେଶ, ପଞ୍ଚତନ୍ତ୍ରାଦି ସରଳ କାବ୍ୟ ଆଲୋଚନା ବେଶ୍ କିଛିଦିନ ଧରି ଚାଲିଲା । ଗୁରୁ ଓ ଶିଷ୍ୟା ଉଭୟ ଆଗ୍ରହୀ—ତେଣୁ କାହାର କିଛିହେଲେ ଅସୁବିଧା ହେଲାନାହିଁ । ପଣ୍ଡିତ ରାମକାନ୍ତଙ୍କ ଭାବ-ବିହ୍ୱଳିତ ବ୍ୟାଖ୍ୟା ଶୁଣି ବୁଦ୍ଧିମତୀ ଆନା ବେଳେବେଳେ ବିଭୋର ହୋଇଉଠେ । ମନେ ମନେ ଭାରତୀୟ ମନୀଷୀ ତଥା ବିଦ୍ୱାନ୍‌ମାନଙ୍କୁ ସାଦରେ ପ୍ରଣାମ ଜଣାଏ ।

ଦିନକର ଘଟଣା । ଆକାଶରେ ପୂର୍ଣ୍ଣ ମେଘାଡ଼ମ୍ବର । ଘନ ଘନ ଭୀମ ଗର୍ଜନରେ ସଚରାଚର କମ୍ପିଉଠୁଛି । ସେତିକିବେଳେ ପଣ୍ଡିତ ରାମକାନ୍ତ ଗମ୍ଭୀର ହୋଇଯାଇ ବେଶ୍ କିଛି ସମୟ କାନ ପାତି ଶୁଣିଲେ ସେଇ ମନ୍ଦ୍ରଜଳଦ ଧ୍ୱନି । ତା'ପରେ ତାଙ୍କ କଣ୍ଠରୁ ଝରିପଡ଼ିଲା 'ମେଘଦୂତ'ର ମନ୍ଦାକ୍ରାନ୍ତା ଛନ୍ଦର ଶ୍ଲୋକଗୁଡ଼ିକ ।

ଶ୍ଲୋକ ପାଠ କରୁ କରୁ ହଠାତ୍ ଅଟକି ରହିଗଲେ ପଣ୍ଡିତ ରାମକାନ୍ତ ! ଆନା ଆଡ଼କୁ ଦୃଷ୍ଟି କ୍ଷେପି ବିହ୍ୱଳ ଚକ୍ଷୁଯୁଗଳରେ ସନ୍ତୁଷ୍ଟ ଭାବରେ ଚାହିଁ କହିଲେ—"ଦେଖିଛୁ ମାଆ ! ବର୍ଷା ଋତୁରେ କେତେ ଜାତିର ଫୁଲ ଫୁଟେ ?"

ମନେହେଲା, ସତେସେପରି ସବୁ କିଛି ନିଖୁଣ ଭାବରେ ଦେଖି ପାରୁଛନ୍ତି ରାମକାନ୍ତ । କେବଳ ସେ ଦେଖିପାରୁନାହାନ୍ତି, ଫୁଲଗୁଡ଼ିକର ସୁଗନ୍ଧ ମଧ୍ୟ ମନଭରି ଅଘ୍ରାଣ କରିପାରୁଛନ୍ତି । —"ଜାଣିଛୁ ମା' ! କାଳିଦାସଙ୍କ କାବ୍ୟଗୁଡ଼ିକରେ ଫୁଲର ମେଳା ଅଟ୍ଟପଟ୍ଟାଳି ଭାଙ୍ଗୁଛି । ମହାକବି ରାଶି ରାଶି ନାନା ବର୍ଣ୍ଣର କୁସୁମରେ କାବ୍ୟଲକ୍ଷ୍ମୀଙ୍କ ଚରଣ ପୂଜାରେ ବିଭୋର ହୋଇଉଠିଛନ୍ତି । ମେଘଦୂତରେ ମହାକବି ମେଘଯାତ୍ରାର ସହିତ ପୁଷ୍ପରାଶିର ଯେଉଁ ଅପୂର୍ବ ସମାବେଶ ସୃଷ୍ଟି କରିଛନ୍ତି ତା'ର ପଟାନ୍ତର ନାହିଁ ।"

× × ×

ଆଉ ଦିନକର ଘଟଣା । ପଣ୍ଡିତ ମହାଶୟ କୁମାରସମ୍ଭବ ପଢ଼ାଇ ଚାଲିଛନ୍ତି । ଶିବଙ୍କ ସହିତ ଉମାଙ୍କର ବିବାହ ପାଇଁ ଋଷିମାନେ ହିମାଳୟଙ୍କ ନିକଟରେ ପ୍ରାର୍ଥନା କରିଛନ୍ତି । ହିମାଳୟ ମୁନିମାନଙ୍କ ଇଚ୍ଛା ପୂର୍ଣ୍ଣ କରିଛନ୍ତି । ଟିକିଏ ରହିଯାଇ ପୁଣି କହିଲେ ରାମକାନ୍ତ— "ସୁକନ୍ୟାଟିଏ ପାଇଲେ ତାକୁ ପ୍ରାର୍ଥନା କରିବାକୁ ହୁଏ ମା'ଆ ! କାରଣ, ସେ ଶ୍ରୀ, ସେ ମହାତ୍ମପୀ ଶକ୍ତି !!"

ବିବାହ ବେଦୀକୁ ପଠାଇବା ପାଇଁ ମାତା ମେନା ଗୌରୀଙ୍କୁ ରତ୍ନାଭରଣରେ ବିମଣ୍ଡିତ କରୁଛନ୍ତି । ମାତାଙ୍କର ଦୃଷ୍ଟି କରୁଣା ବିଜଡ଼ିତ । ଆଜି ତାକରି ଅସିଛି—ଅତି ନିକଟତମକୁ ଅତି ଦୂରକୁ ପଠାଇଦେବାକୁ । ସେଇଥିପାଇଁ ମା'ଆର ହୃଦୟରେ ଦୁଃଖର ଅଥଳ ଢେଉ ଉଠୁଛି ଘନଗର୍ଜନକରି । ମଙ୍ଗଳସୂତ୍ର ବାନ୍ଧିବାକୁ ହେବ ହାତରେ । କିନ୍ତୁ ଚକ୍ଷୁରୁ ଝରୁଥିବା ଅବାରିତ ଅଶ୍ରୁଧାରରେ ଝାପ୍‌ସା ହୋଇଯାଇଛି ତାଙ୍କର ଚକ୍ଷୁଯୁଗଳ । ଉପଯୁକ୍ତ ସ୍ଥାନରେ ମଙ୍ଗଳସୂତ୍ର ବାନ୍ଧି ପାରି ନାହାନ୍ତି ମେନା । ଧାଈମାଆ ମେନାଙ୍କ କମ୍ପିତ ହାତ ଦୁଇଟିକୁ ପାର୍ବତୀଙ୍କ ହାତର ଠିକ୍ ସ୍ଥାନରେ ରଖିଦେଇଛନ୍ତି । ତା'ପରେ ମେନା ଠିକ୍ ଭାବରେ କୌତୁକ ସୂତ୍ରଟିକୁ ବାନ୍ଧିଛନ୍ତି ଉମାଙ୍କ ବାହୁରେ ; ଗଦ୍‌ଗଦ କଣ୍ଠରେ ପଣ୍ଡିତ ମହାଶୟ ଆବୃତ୍ତି କଲେ ଶ୍ଳୋକଟି—

ବବନ୍ଧ ଚାସ୍ରାକୁଲ ଦୃଷ୍ଟିରସ୍ୟାଃ
ସ୍ଥାନାନ୍ତରେ କଳ୍ପିତ ସନ୍ନିବେଶମ୍ ।
ଧାତ୍ର୍ୟଙ୍ଗୁଲିଭିଃ ପ୍ରତିସାର୍ଯ୍ୟମାଣ
ମୂର୍ଣ୍ଣାମୟଂ କୌତୁକହସ୍ତ ସୂତ୍ରମ୍ ।

ଶ୍ଳୋକଟି ପଢ଼ିସାରିବାମାତ୍ରେ ମନେହେଲା ବୁକୁ ଭିତରଟା ତାଙ୍କର ଶତଧା ଛିନ୍ନ ହୋଇ-ଯାଇଛି । ସେ ନିରବ ହୋଇ ବସିରହିଲେ କିଛି ସମୟ । କିନ୍ତୁ ସେ ତାଙ୍କର ବ୍ୟାକୁଳ ହୃଦୟକୁ ଆଉ ସମ୍ଭାଳି ପାରିଲେ ନାହିଁ କୌଣସିମତେ । ଛିନ୍ନବିଚ୍ଛିନ୍ନ ତାଙ୍କ ହୃଦୟତନ୍ତ୍ରୀ-ଗୁଡ଼ିକ ବାହାରେ ଆତ୍ମପ୍ରକାଶ କଲା ଅବାରିତ ଅଶ୍ରୁଧାରାରେ ।

କକ୍ଷ ମଧ୍ୟରେ ବାପାଙ୍କୁ ଲକ୍ଷ୍ୟ କରୁଥିଲା ମୈତ୍ରେୟୀ । ସେ ଆଉ ନିଜକୁ ଅଟକାଇ କରି-ପାରିଲାନି—"ବାବା"—ଭାଙ୍ଗି ପଡ଼ି ଆର୍ତ୍ତକଣ୍ଠରେ କହିପକାଇଲା ସେ ।

"କିଏ···? କିଏ ମୋତେ ଏପରି ଭାବରେ ଡାକିଲା···?"

ହତବାକ୍ ହୋଇଗଲା ଆନା । ସେ ମୈତ୍ରେୟୀକୁ କ୍ଷଣକ ମଧ୍ୟରେ ଅନ୍ୟ କକ୍ଷକୁ ଚୁପ୍‌ଚାପ୍ ନେଇଯାଇ ସାନ୍ତ୍ୱନା ଦେଇ ବସାଇ ଫେରିଆସିଲା ପୁଣି ଅନ୍ଧ ପଣ୍ଡିତ ମହାଶୟଙ୍କ ନିକଟକୁ । ସେତେବେଳକୁ ଭଟ୍ଟାଚାର୍ଯ୍ୟ ମହାଶୟ ଅନେକ ପରିମାଣରେ ପ୍ରକୃତିସ୍ଥ ହୋଇଗଲେଣି । ସେ ମଧ୍ୟ ନିଜର ଭାବବିହ୍ୱଳତାରେ ନିଜେ ଲଜ୍ଜିତ ହୋଇଉଠିଥିଲେ । ଆନାକୁ ସମ୍ବୋଧନ କରି କହିଲେ—"ମାଆ···! କୌଣସି ଗୋଟିଏ ଏକାନ୍ତ ବ୍ୟକ୍ତିଗତ କଥା ମନେପଡ଼ିଯିବାରୁ ମୋର ଏପରି ଭାବାନ୍ତର ପରିଲକ୍ଷିତ ହୋଇଛି । ମୁଁ ସେହି ଭାବାବେଗରେ ଆଉ ନିଜକୁ ଆୟତ୍ତ କରି ରଖିପାରିଲି ନାହିଁ । କିନ୍ତୁ ବେଶ୍ ସ୍ପଷ୍ଟ ଭାବରେ ଶୁଣିପାରିଲି ସେଇ ହତଭାଗିନୀ ମୋର କନ୍ୟାଟିର କରୁଣ ସମ୍ବୋଧନ "ବାବା···" ବୋଲି ।"

"ଏହା ଆପଣଙ୍କ ମନର ଭ୍ରମ ହୋଇପାରେ ପଣ୍ଡିତ ମହାଶୟ ।" କହିଲା ଆନା ।

ଆନା ମୁହଁରୁ ଏତକ ଶୁଣିବା ପରେ ପଣ୍ଡିତ ରାମକାନ୍ତ କରୁଣ ମୁଖମୁଦ୍ରାରେ ନୀରବ ହୋଇ ବସିରହିଲେ । ତା'ପରେ ସେ ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ—"ହିଁ··· ହିଁ···ତାହାହିଁ ହୋଇପାରେ ମାଆ···। ମୋ' ପ୍ରାଣର ମୈତ୍ରେୟୀ ଅନେକଦିନ ତଳୁ ସଂସାରର ମାୟା କାଟିଦେଇ ଚାଲିଯାଇଛି ପରପାରକୁ ।"

ଆନା ପଣ୍ଡିତ ମହାଶୟଙ୍କୁ ଆଶ୍ୱସ୍ତ କରାଇ କହିଲା—"ଆପଣ ଟିକିଏ ବିଶ୍ରାମ କରନ୍ତୁ ମହାଶୟ—ତା'ପରେ ଯିବେ । ମୁଁ ଟିକିଏ ଆସୁଛି···"

ଆନା ସେଠାରୁ ଉଠିଯାଇ ପହଞ୍ଚିଲା ମୈତ୍ରେୟୀ ପାଖରେ । ସେଠାରେ ପହଞ୍ଚି ଦେଖିଲା —ମୈତ୍ରେୟୀର ଚକ୍ଷୁଯୁଗଳରୁ ଅବାରିତ ଗତିରେ ଅଶ୍ରୁଧାର ଝରିପଡ଼ୁଛି । ସେ ମୈତ୍ରେୟୀର ହାତ ଦୁଇଟିକୁ ଧରିପକାଇ କହିଲା—"ତୋ'ରି କଥା ଉପରେ ଭରସା କରି ମୁଁ ପଣ୍ଡିତ ମହାଶୟଙ୍କୁ ଏଠାକୁ ଅଣାଇଥିଲି । ତୁ ମୋତେ କଥା ଦେଇଥିଲୁ ଯେକୌଣସି ଦିନ ବାପାଙ୍କ ଆଗରେ ଧୈର୍ଯ୍ୟହରା ହେବୁ ନାହିଁ ବୋଲି । ପୁଣି ଏ' କ'ଣ ?" ଅନେକ ବୁଝାଇବାପରେ ମୈତ୍ରେୟୀ ଆନାକୁ କୁଣ୍ଢାଇପକାଇ କହିଲା—"ଦିଦି, ମୋତେ କ୍ଷମାକର, ମୋତେ ଶାସ୍ତି ଦିଅ । ମୁଁ ନିଜର ଦୁର୍ବଳ ମନଟାକୁ କୌଣସିମତେ ଆୟତ୍ତ କରିପାରିଲିନି···" ଛଳଛଳ ଆଖି ଦୁଇଟିରେ ଆନାର ମୁହଁକୁ ଚାହିଁରହିଲା ମୈତ୍ରେୟୀ ।

ଆନା ତା'ର ସଜଳ ଆଖି ଦୁଇଟିକୁ ପୋଛି ଦେଇ, ତାକୁ ଅନେକ ବୁଝାଇସୁଝାଇ ଆଶ୍ୱସ୍ତ କରିବାପରେ, କୋଠରୀ ବାହାରକୁ ଆସି ପଣ୍ଡିତ ରାମକାନ୍ତଙ୍କ ବିଦାୟର ବ୍ୟବସ୍ଥା କରିଦେଲା ।

## ( ସାତ )

ପଣ୍ଡିତ ରାମକାନ୍ତ ଆସି ପାଠ ଆରମ୍ଭ କରିଦେଇ ତନ୍ମୟତାର ସହିତ କାବ୍ୟାଲୋଚନା କଲେ । ପାଠ ଶେଷହେବାପରେ ଆନା ପଚାରିଲା—"ପଣ୍ଡିତ ମହାଶୟ, ଗୋଟିଏ କଥା ପଚାରିବି—ଆପଣ ମୋତେ ଠିକ୍ ଭାବରେ ଉତ୍ତର ଦେବେ ତ' ?"

"କ'ଣ ପଚାରିବ ମାଆ···?"

"ନା, ଆପଣ ମୋତେ କଥା ଦିଅନ୍ତୁ, ମୋ' ଆଗରେ କିଛି ହେଲେ ଲୁଚାଇବେ ନାହିଁ ।"

"ମାଆ ବୋଲି ଯାହାକୁ ଡାକୁଛି, ସେ ଯେଉଁ ଦେଶର ହେଉନା କାହିଁକି ତା' ପାଖରେ ଅନ୍ତରର କଥା ଗୋପନ କରିବି କାହିଁକି ?" ପଣ୍ଡିତ ରାମକାନ୍ତ ଅନୁମାନ କରିନେଲେ ଆନାର ପ୍ରଶ୍ନ କ'ଣ ହୋଇପାରେ ।

ଆନା ଟିକିଏ ରହିଯାଇ ପ୍ରଶ୍ନ କଲା—"ଆପଣ ସେଦିନ 'କୁମାରସମ୍ଭବ' ଆବୃତ୍ତି କରୁଥିବାବେଳେ କାହାର ଦୁଃଖରେ ବ୍ୟଥିତ ହୋଇ ଏପରି ଅଭିଭୂତ ହୋଇପଡ଼ିଥିଲେ ? ଯଦି ଆପଣଙ୍କର କିଛି ଆପତ୍ତି ନଥାଏ, ସେ ବିଷୟରେ ଶୁଣିବାକୁ ମୋର ଏକାନ୍ତ ଇଚ୍ଛା ।"

"ତୁମରି ପରି, ବୋଧହୁଏ ତୁମଠାରୁ ବୟସରେ ଟିକିଏ ସାନ ହୋଇପାରେ, ମୋର ଗୋଟିଏ ଝିଅ ଥିଲା ମାଆ ! ତା'ର ବିଷୟ···!"

ପଣ୍ଡିତ ମହାଶୟଙ୍କ କଥାରେ ବାଧାଦେଇ କହିଲା ଆନା—"ହଁ, ସେଦିନ ମୁଁ ଆପଣଙ୍କ କଥାରୁ ସେଇମିତି କିଛି ଗୋଟିଏ ହୋଇଥିବ ବୋଲି ଅନୁମାନ କରିଥିଲି । କିନ୍ତୁ ହୋଇଛି କ'ଣ ?"

"ସେ ଅନେକ କଥା ମାଆ···" ଟିକିଏ ନୀରବ ରହିବାପରେ ପୁଣି କହିଲେ ରାମକାନ୍ତ—"ତେବେ ସଂକ୍ଷେପରେ କହୁଛି ଶୁଣ । ଅଳିଅଳୀ ମାତୃହରା ଝିଅଟି ମୋର ହିରଣ୍ୟଗଡ଼ର କୁଳବଧୂ ହେବାର ସୌଭାଗ୍ୟ ଲାଭ କରିଥିଲା । କିନ୍ତୁ ବିବାହ ଦିନ ରାତିରେ ଗୋଟିଏ ସଂଗଠିତ ଦସ୍ୟୁଦଳ ତାକୁ ମୋର ଦରିଦ୍ର କୁଟୀରରୁ ବଳପୂର୍ବକ ଅପହରଣ କରିନେଲେ ।" —ଏହା କହି ନୀରବ ହେଲେ ପଣ୍ଡିତ ମହାଶୟ ।

ତା'ପରେ ପୁଣି ପଚାରିଲା ଆନା—"କିନ୍ତୁ କେହି କଣ ବାଧାଦେଇପାରିଲେନି ?"

ସେଇ ଦରିଦ୍ର ଗାଆଁଟାରେ ସେଭଳି ଶକ୍ତିମାନ୍ କେହି ନଥିଲେ । କିନ୍ତୁ ହିରଣ୍ୟଗଡ଼ର କନିଷ୍ଠକୁମାର ପ୍ରାଣମୂର୍ଚ୍ଛା ସଂଗ୍ରାମ କରିଥିଲେ । ଶୁଣିଛି, ତାଙ୍କ କପାଳରେ ସେଦିନର ଆଘାତ ଚିହ୍ନ ଅଦ୍ୟାପି ରହିଛି ।"

ଆନା ପଚାରିଲା—"ତା'ପରେ ଆଉ କ'ଣ ହେଲା ଆପଣ କିଛି ଜାଣିଛନ୍ତି କି ?"

"ନା, ସେମିତି କିଛି ମୁଁ ଜାଣେ ନାହିଁ ମାଆ ! ତେବେ ଲୋକମୁଖରୁ ଶୁଣିଛି, ଆତ୍ମ-ସମ୍ମାନ ରକ୍ଷା କରିବାକୁ ଯାଇ ହତଭାଗିନୀ ଝିଅ ମୋର ସୁବର୍ଣ୍ଣରେଖାରେ ଝାସ ଦେଇ ପ୍ରାଣତ୍ୟାଗ କରିଛି ।"

"ତାମାନେ···ଆପଣଙ୍କ କନ୍ୟା ଆତ୍ମଘାତିନୀ ହୋଇଛି ?"

"କଳଙ୍କିନୀ ହୋଇ ବଞ୍ଚିରହିବା ଅପେକ୍ଷା ଆତ୍ମଘାତିନୀ ହେବା ଭଲ ନୁହେଁ କି ମାଆ ?"

ଆନା କିଛିକ୍ଷଣ ନୀରବ ରହିବାପରେ ପୁଣି ପ୍ରଶ୍ନ କଲା—"ପଣ୍ଡିତ ମହାଶୟ, ମୁଁ ଆପଣଙ୍କୁ ଆଉ ଗୋଟିଏ ପ୍ରଶ୍ନ ପଚାରିବି, ଆପଣ କିଛି ମନେକରିବେ ନାହିଁ ତ ?" ପଣ୍ଡିତ ରାମକାନ୍ତ କିଛି ଉତ୍ତର ନଦେଇ କେବଳ ଉଦ୍‌ଗ୍ରୀବ ହୋଇ ଚାହିଁରହିଲେ ଆନା ଆଡ଼କୁ ।

"ହିଁ, ଆପଣ ବେଶ୍ ଭଲଭାବରେ ଜାଣନ୍ତି, ଆପଣଙ୍କ ପୁତ୍ରୀ କନ୍ୟାଟିକୁ ତା'ର ଅନିଚ୍ଛା-ସତ୍ତ୍ୱେ ଦସ୍ୟୁମାନେ ଅପହରଣ କରିନେଇଛନ୍ତି । ଯଦି କୌଣସି ଦିନ ସେଇ ଝିଅଟି ଆପଣଙ୍କ କୋଳକୁ ଫେରିଆସେ ଆପଣ କ'ଣ ତାକୁ ସସମ୍ମାନେ ଘରକୁ ଫେରାଇ ନେବେ···?

ଏପରି ଏକ ଦାରୁଣ ପ୍ରଶ୍ନର ଉତ୍ତର କିଛି ନଥିଲା ପଣ୍ଡିତ ମହାଶୟଙ୍କ ନିକଟରେ । ସେ କିଛିକ୍ଷଣ ନୀରବ ରହିବାପରେ କହିଲେ—"ଆମର କ୍ରିୟାକର୍ମ, ଭଲମନ୍ଦ ଓ ଆଚାର ବିଚାର ସବୁ କିଛି ନିର୍ଭର କରେ ସମାଜର ବିଚାର ଉପରେ । ସମାଜର ବନ୍ଧନ ଏଡ଼ାଇ କିଛି ହେଲେ କରିବାର ଉପାୟ ଆମର ନାହିଁ । ମୋର ପିତୃହୃଦୟ କନ୍ୟାଟିକୁ କୋଳେଇ ନେବାକୁ ଚାହିଁଲେ ସୁଦ୍ଧା ସମାଜ ତାକୁ ସମର୍ଥନ କରିବ ନାହିଁ ।"

"ବାଃ, ବେଶ୍ ତ ସମାଜ ଆପଣଙ୍କର !" କହିଲା ଆନା—"ସମାଜ ଚାହିଁବ ନାହିଁ ବୋଲି ଆପଣ ଆପଣଙ୍କ ଅଲଅଲୀକନ୍ୟାଟିକୁ ପାଇଲେ ମଧ୍ୟ ଜାଣିଶୁଣି ତାକୁ ନର୍କପଥକୁ ଠେଲିଦେବେ ?"

ପଣ୍ଡିତ ରାମକାନ୍ତ ଚିନ୍ତାର ଅତଳ ସାଗରରେ ଉବୁଟୁବୁ ହେବାପରେ ସ୍ପଷ୍ଟଭାବରେ ଉତ୍ତରଦେଲେ—"ଅବଶ୍ୟ ଉତ୍ପୀଡ଼ନାଧୀନ ସେ ଗଳା ହେବନାହିଁ ଏହା ଧ୍ରୁବ ସତ୍ୟ । ତଥାପି କେବେ ଯଦି ମୋର ସେହି ମୈତ୍ରେୟୀ ମୋ' ନିକଟକୁ ଫେରିଆସେ, ତା' ହେଲେ ସମାଜର ତାଡ଼ନାରେ ଆମ ଦୁହିଁଙ୍କୁ ଅନାହାରରେ ମୃତ୍ୟୁ ବରଣ କରିବାକୁ ପଡ଼ିବ । ସମାଜ ବିରୁଦ୍ଧରେ ସଂଗ୍ରାମ କରି କେହି ଅଧିକ ଦିନ ତିଷ୍ଠି ରହିପାରିବନାହିଁ ।"

ଆନା ଅତ୍ୟନ୍ତ କ୍ଷୋଭ ପ୍ରକାଶ କରି କହିଲା—"ଧନ୍ୟ ସେ ସମାଜ ! ଧନ୍ୟ ତା'ର ବନ୍ଧନ !"

ହିନ୍ଦୁ ସମାଜର ଜଣେ ପ୍ରତିଷ୍ଠିତ ବିଦ୍ୱାନ୍ ଆନାର ସମାଜ ବିରୁଦ୍ଧରେ ଆକ୍ଷେପକୁ ସହି ପାରିଲେ ନାହିଁ । ସେ ଧୀର ସ୍ଥିର ଭାବରେ ଅଥଚ ଦୃଢ଼କଣ୍ଠରେ ଉତ୍ତର ଦେଇ କହିଲେ —"ସମାଜ ଗଠନରେ ଭଲମନ୍ଦ ଉଭୟ ଉପାଦାନ ରହିଛି ମାଆ । ମୁଁ ଶୁଣିଛି, ତୁମ ୟୁରୋପୀୟ ସମାଜରେ ପରସ୍ପରକୁ ସାହାଯ୍ୟ କରିବାର ମନୋବୃତ୍ତି ଅପେକ୍ଷା ଆତ୍ମୋନ୍ନତି ଉପରେ ଗୁରୁତ୍ୱ ଆରୋପ କରିଥା'ନ୍ତି ସାଧାରଣ ଜନତା । କିନ୍ତୁ ଆମ ସମାଜରେ ସହଯୋଗି-ତାର ଗୋଟିଏ ଆନ୍ତରିକତା ରହିଛି । ପରସ୍ପରର ସୁଖଦୁଃଖରେ ସମଭାଗୀ ହେବା ଭାରତୀୟ ହିନ୍ଦୁ ସମାଜର ବୈଶିଷ୍ଟ୍ୟ । 'ସର୍ବେ ଭବନ୍ତୁ ସୁଖିନଃ' ଆମ ସମାଜ ଗଠନକାରୀଙ୍କର ବଳିଷ୍ଠ ନିର୍ଘୋଷ ନିର୍ଦ୍ଦେଶ । ପ୍ରତିବେଶୀ ପାଇଁ ଆତ୍ମତ୍ୟାଗ କରିବା ଆମ ସମାଜରେ ଅଦ୍ୟାପି ପ୍ରମାଣର

ଅଭାବ ନାହିଁ । ସମାଜର ଶୁଭଚିନ୍ତକମାନେ ଅନେକ ସ୍ୱଚ୍ଛନ୍ଦ ଆମ ସମାଜ ଗଠନରେ ହାତ ଦେଇଥିଲେ । ଅବଶ୍ୟ ତା' ଭିତରେ ଅନେକ ଆବର୍ଜନା ଆସି ମିଶିଯାଇଛି ସତ; କିନ୍ତୁ 'ବହୁଜନ ସୁଖାୟ ବହୁଜନ ହିତାୟ'କୁ ମନ୍ତ୍ରରୂପେ ଗ୍ରହଣ କରି ଆମେ ସେଇ ଆବର୍ଜନାକୁ ଆଖିବୁଜି ମାନିନେଇଛୁ । ଏହା ଅବଶ୍ୟ ନିଶ୍ଚିତ ଯେ, ସମାଜ ଉପରେ ଆବର୍ଜନାର ଯେଉଁ ଜମାଟ ବାନ୍ଧି ରହିଛି, ତାହା ଆମ ସମାଜକୁ ଅବକ୍ଷୟ ଆଡ଼କୁ ଟାଣିନେଉଛି । ତଥାପି 'ଯଦ୍ୟପି ସିଦ୍ଧଂ ଲୋକବିରୁଦ୍ଧଂ ନାଦରଣୀୟଂ ନାଚରଣୀୟଂ'କୁ ଆମେ ଅକ୍ଷରେ ଅକ୍ଷରେ ପାଳନ କରିଆସିଛୁ ।''

ପଣ୍ଡିତ ରାମକାନ୍ତ ଭଟ୍ଟାଚାର୍ଯ୍ୟଙ୍କ ମତାମତକୁ ଖଣ୍ଡନ କରିବା ଲାଗି ଆଦୌ ଯୁକ୍ତି ନକରି, ଆମା ସେଦିନର ପାଠପଢ଼ା ସେତିକିରେ ଶେଷ କଲି ଏବଂ ଦୃଷ୍ଟିଶକ୍ତିହୀନ କରୁଣାମୟ ଭଟ୍ଟାଚାର୍ଯ୍ୟ ମହାଶୟଙ୍କ ସେଇଦିନଠାରୁ ଉପଯୁକ୍ତ ସମ୍ମାନ ଓ ଉପଢୌକନ ସହିତ ବିଦାୟ କରି ଆତ୍ମତୃପ୍ତିରେ ବିଭୋର ହୋଇଉଠିଲି ।

( ଆଠ )

ଇଂରେଜ ଶାସନ କାଳରେ ଖଟିଖିଆଙ୍କ ଉପରେ ନୀଳଚାଷ, ନୀଳକର ଓ ନୀଳକୋଠି ଗୋଟିଏ ଗୋଟିଏ ମସ୍ତବଡ଼ ଅଭିଶାପ । ତା'ପରେ ପୁଣି ପ୍ରତିଯୋଗିତାର ଅସ୍ୱାଭାବିକ ପରିସ୍ଥିତି ମଧ୍ୟରେ ତାହା ଅତ୍ୟନ୍ତ ଦୁର୍ବିସହ ହୋଇଉଠିଥିଲା । ପ୍ରତିଦିନ ପ୍ରାୟ ଚତୁର୍ଦିଗରୁ ଗଣ୍ଡଗୋଳର ଖବର ଆସି ପହଞ୍ଚୁଛି । ବଙ୍ଗଦେଶର ବିଭିନ୍ନ ସ୍ଥାନରେ ନୀଳକର ସାହେବମାନଙ୍କର ଯେତେ ନୀଳକୋଠି ରହିଛି, ସେଗୁଡ଼ିକ ଗୋଟିଏ ଗୋଟିଏ ପୂତିଗନ୍ଧମୟ ନରକ । ରକ୍ତପାତ, ହତ୍ୟା, ଲୁଣ୍ଠନ, ଗୃହଦାହ ଏହି ନରକଗୁଡ଼ିକର ଗୋଟିଏ ଗୋଟିଏ ବିଶେଷ ଅଙ୍ଗ ଉପାଙ୍ଗ । ପ୍ରାୟ ବହୁସ୍ଥାନରୁ ରୋଜ୍ ରୋଜ୍ ଦଙ୍ଗାହାଙ୍ଗାମାର ସମ୍ବାଦ ମିଳିଥାଏ । କୌଣସି କୌଣସି ସ୍ଥାନରେ ଲୋକମାନେ ଅତିଷ୍ଠ ହୋଇ ଉତ୍କ୍ଷିପ୍ତ ହୋଇଉଠନ୍ତି । ସେମାନେ ନିର୍ଯାତନାମୟ ଜୀବନ ଯାପନ ଅପେକ୍ଷା ବିଦ୍ରୋହ କରି ଆତ୍ମହତ୍ୟା କରିବାକୁ ଶତଗୁଣ ଶ୍ରେୟସ୍କର ମନେକରନ୍ତି ।

ଯେଉଁଠାରେ ନୀଳକର ସାହେବର ଅତ୍ୟାଚାର ଖୁବ୍ କଠୋର, ସେଠାରେ ସାଲିସ୍‌ର ଅବକାଶ ନଥାଏ । ନୀଳକର ଶାସନ ପକ୍ଷରୁ ସିପାହି ପଠାଇ ଜୋର୍ ଜବରଦସ୍ତ ଧରିନିଆଯାଏ ନିରୀହ ପ୍ରଜାମାନଙ୍କୁ ନୀଳକୋଠିକୁ । ଅନ୍ଧକାରି ତଥା ଆବର୍ଜନାମୟ ଜେଲଖାନା ମଧ୍ୟରେ ସେମାନଙ୍କୁ ଆବଦ୍ଧ କରି ରଖାଯାଏ । ଚମଡ଼ା ଗୁନ୍ଥଣି ବେତର ନାଆଁ ସେ ମୁଲକରେ 'ଶ୍ୟାମଚାନ୍ଦ' । ସେଇଥିରେ ନିର୍ଘାତ ପ୍ରହାର ଦେଇ, ରାକ୍ଷସ ନୀଳକର ସାହେବମାନେ କ୍ଷତବିକ୍ଷତ କରିଦିଅନ୍ତି ପ୍ରଜାମାନଙ୍କୁ ।

ଯେଉଁମାନେ ଟିକିଏ ମୁହଁଖୋଲି ପ୍ରତିବାଦର ସ୍ୱର ଉତ୍ତୋଳନ କରନ୍ତି, ସେମାନେ ପାଆନ୍ତି 'ଶ୍ୟାମଚାନ୍ଦ' ଠାରୁ ନିର୍ମମ ଚୁମ୍ବନ । ଶେଷକୁ ଦାରୁଣ ମୃତ୍ୟୁ ବରଣ କରି ସେମାନେ କଠୋର ତଥା ନିର୍ମମ ଯନ୍ତ୍ରଣାରୁ ଯାଇପା'ନ୍ତି । ଅବଶ୍ୟ ନୀଳକର ପାଇଁ ସରକାରଙ୍କ ପକ୍ଷରୁ ବିଚାରକମଣ୍ଡଳୀ ଗଠନ କରାଯାଇଛି । କିନ୍ତୁ ଅତ୍ୟାଚାରୀ ଓ ବିଚାରକ ଦୁହେଁଯାକ ଗୋଟିଏ ଜାତି ଓ ଗୋଟିଏ ରଙ୍ଗର । ତେଣୁ ବିଚାରର ପ୍ରତାରଣା ପ୍ରତି ମୁହୂର୍ତ୍ତରେ ସମସ୍ତେ ଅନୁଭବ କରନ୍ତି । ଏ ଦେଶର ଜମିଦାର ଓ ନୀଳକର ସାହେବମାନଙ୍କ ମଧ୍ୟରେ ପ୍ରାୟ କ୍ଷମତାନେଇ ବରାବର ଦଙ୍ଗାହାଙ୍ଗାମା ଲାଗିରହିଥାଏ । ବେଳେବେଳେ ସରକାରଙ୍କ ଜ୍ଞାତସାରରେ ଏହା ଭୟାବହ ସ୍ତରରେ ପରିଣତ ହୋଇଯାଏ । ଦୁଇଦଳଯାକ ନିଜନିଜର ଶକ୍ତି ପରୀକ୍ଷାର ସମ୍ମୁଖୀନ ହୋଇଉଠନ୍ତି । ସହଜରେ କେହି ହାରିମାନିବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । ତେଣୁ କ୍ଷମତାର ଲିପ୍ସାରେ ନିରୀହ ସିପାହିମାନଙ୍କ ରକ୍ତରେ ଚାଲେ ହୋଲିଖେଳ—ଦିନ-ଦିନ, ସପ୍ତାହ ସପ୍ତାହ ଓ ମାସ ମାସ ବ୍ୟାପୀ । ସେହି ଆଳରେ ଭିତରେ ଭିତରେ ଚାଲେ ନୃଶଂସ ହତ୍ୟାକାଣ୍ଡ, ଷଡ଼ଯନ୍ତ୍ର, ଗୃହଦାହ ଓ ଲୁଣ୍ଠନ । କ୍ଷମତାର ଲଢ଼େଇରୁ ଶେଷ ଫଳ ମିଳେ ସର୍ବନାଶ ।

ପ୍ରାୟ ପ୍ରତିଦିନ ନୀଳକର ଜମିଦାରୀରୁ ଏ ପ୍ରକାର ଖବର ଶୁଣିବାପରେ ଆନା ମନେ ମନେ ଭାବେ, ଏପରି ନିର୍ମମ ଅତ୍ୟାଚାର ସହ୍ୟ କରିବା ଅପେକ୍ଷା ପ୍ରଜାବର୍ଗର ବିଦ୍ରୋହ ଏବଂ ତା'ଫଳରେ ଆତ୍ମବଳିଦାନ ଶତଗୁଣ ଶ୍ରେୟସ୍କର । ଏତେଦିନର ଅତ୍ୟାଚାର ପରେ ନିରୀହ ପ୍ରଜାମାନେ ଅତୀତ ନିର୍ଯାତନାର କଡ଼ାଗଣ୍ଡା ଅସୁଲ କରିବାକୁ ଯା'ହେଉ କମର କସି ବାହାରିପଡ଼ିବା ବାସ୍ତବିକ ଶୁଭ ସଙ୍କେତ । ଗୋଟିଏ ଅତ୍ୟାଚାରିତ ଜାତି ଆଉ କେତେଦିନ ଧରି ଦାରୁଣ ଅଭିଶାପକୁ ମୁଣ୍ଡପାତି ସହିନେଇପାରିବ ?

ଓଡ଼େନ୍ ସାହେବଙ୍କ ଅବସ୍ଥାର ପରିବର୍ତ୍ତନ ହୋଇଛି ନୀଳଚାଷରେ । କିନ୍ତୁ ସେ ପ୍ରଥମେ ପ୍ରଥମେ ନିଜ ଜମିରେ ନୀଳଚାଷ କରିଛନ୍ତି ମୂଲିଆ-ମଜୁରୀ ଦେଇ । ସେ ଦାଦନ ଦେଇ କିମ୍ବା ମିଥ୍ୟାଜାଲରେ ଫସାଇ ଲୋକମାନଙ୍କୁ କାମ କରାଇନଥିଲେ । ଏହାଫଳରେ ରାତାରାତି ସେ ନିଜର ଭାଗ୍ୟ ପରିବର୍ତ୍ତନ କରିବାକୁ ସମର୍ଥ ହୋଇନଥିଲେ । ତଥାପି ସେ ମନରେ ଶାନ୍ତି ପାଇ ବ୍ୟବସାୟ କରିପାରିଥିଲେ । ସେଇଥିପାଇଁ ମା' ସୌଭାଗ୍ୟ ଲକ୍ଷ୍ମୀ ମୁଣ୍ଡରେ ସୌଭାଗ୍ୟର ପେଡ଼ି ଧରି ତାଙ୍କ ଘରକୁ ଆସିପାରିଥିଲେ । ଏଇ ମୂଳକଥା ପ୍ରଜାମାନଙ୍କର ସୁଖ-ଦୁଃଖରେ ଭାଗିଦାର ହୋଇ ଓଡ଼େନ୍ ସାହେବ ନିଜର ସୌଭାଗ୍ୟ ଲକ୍ଷ୍ମୀଙ୍କୁ ନିଜ କୋଠିକୁ ବାନ୍ଧିକରି ଆଣି ପାରିଥିଲେ ଏବଂ ପ୍ରଜାମାନେ ମଧ୍ୟ ଅଭାବ ଅସୁବିଧାରେ ତାଙ୍କର ଦ୍ୱାରସ୍ଥ ହେବାକୁ ସାହସ ବାନ୍ଧି ଆସିପାରୁଥିଲେ । ସାହେବ ନିଜର ସାଧ୍ୟମତେ ସେମାନଙ୍କୁ ସାହାଯ୍ୟ କରୁଥିଲେ; କେତେ-ବେଳେ ନିଜର ବୁଦ୍ଧି ବଳରେ ଆଉ କେତେବେଳେ ଅର୍ଥ କିମ୍ବା ଜମିବାଡ଼ି ଦେଇ ।

ଆନା ବାହାରକୁ ବେଶ୍ ହାକିମ୍ ମେଜାଜ୍‌ର ହୋଇଥିଲେ ମଧ୍ୟ ଅନ୍ତରରେ ଏଇ ହତଭାଗ୍ୟ ମଣିଷମାନଙ୍କୁ ଖୁବ୍ ସ୍ନେହ କରୁଥିଲା; ସେମାନଙ୍କ ମଧ୍ୟରେ ନିଜକୁ ଜଣେ ଅନ୍ତରଙ୍ଗ

ବୋଲି ମନେକରୁଥିଲେ । ପ୍ରଜାମାନେ ମଧ୍ୟ ସେମାନଙ୍କର ନୂତନ ମାଲିକାଣୀଙ୍କୁ ବେଶ୍ ଭଲ ଭାବରେ ଚହ୍ନିବାରେ ଆଦୌ ଭୁଲକରିନଥିଲେ ।

ଓଡ଼େନ୍ ସାହେବଙ୍କ ପରିବାରର ଏହି ପ୍ରଜାବତ୍ସଳତାକୁ ଆଖପାଖର ନୀଳକୁଠୀଓମାନେ ଆଦୌ ସୁନଜରରେ ଦେଖିପାରୁନଥିଲେ । ପ୍ରଜାମାନେ ଅନ୍ୟତ୍ର କିଛିବ ମାତ୍ର ଅସୁବିଧାରେ ପଡ଼ିଲେ ସଙ୍ଗେ ସଙ୍ଗେ ଧାଇଁଆସୁଥିଲେ ଓଡ଼େନ୍ ସାହେବଙ୍କ ଜମିଦାରୀକୁ ଏବଂ ତାଙ୍କର ଇଲାକାରେ ଆସି ଜମିବାଡ଼ି ପାଇ, ଘରଦ୍ୱାର କରି, ବେଶ୍ ଶାନ୍ତିରେ ବସବାସ କରିବାର ସୁଯୋଗ ପାଉଥିଲେ ।

ଯେଉଁଦିନଠାରୁ ହିରଣ୍ୟଗଡ଼ର ଜମିଦାର ନୀଳଚାଷ ଆରମ୍ଭ କଲେ, ସେହି ଦିନଠୁ ଓଡ଼େନ୍ ସାହେବଙ୍କ ଜମିଦାରୀ ସହିତ ତାଙ୍କର ଏକପ୍ରକାର ଗୋପନ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଥିଲା । କିନ୍ତୁ ଓଡ଼େନ୍ ସାହେବ ଏଠାକାର ଜମିଦାରୀ ଛାଡ଼ି ଯେତେବେଳେ ନିଜ ଦେଶକୁ ଚାଲିଗଲେ, ସେତେବେଳେ ହିରଣ୍ୟଗଡ଼ର ଜମିଦାର ସାହେବ ଦୁର୍ଲଭ ରାୟ ଅନାକୁ ବେଶ୍ ପାଠ ପଢ଼ାଇବାର ସ୍ୱପ୍ନରେ ବିଭୋର ହୋଇଉଠିଲେ ଏବଂ ସମସ୍ତ ତଥା ସୁଯୋଗ ଦେଖି ତାକୁ ହରିବାର ହରକତ କରିବାର ଅବସର ଖୋଜିବାକୁ ଲାଗିଲେ । ତାଙ୍କର ଜମିଦାରୀର ଗୋଟିଏ ଅଂଶ କିଣିନେଇ ଓଡ଼େନ୍ ସାହେବ ଜମିଦାର ହୋଇ ବସିଥିବାର ନିଛକ ସତ୍ୟକୁ ସେ ଆଦୌ ଭୁଲିପାରିଲେନାହିଁ ।

ଏଣେ ନୀଳକର ଜମିଦାରମାନଙ୍କର ଅତ୍ୟାଚାର ଦିନକୁଦିନ ବୃଦ୍ଧି ପାଇବାକୁ ଲାଗିଲା । ତା'ଫଳରେ ପ୍ରଜାମାନଙ୍କ ମନରେ ଅସନ୍ତୋଷର ବହ୍ନି ଭିତରେ ଭିତରେ କୁହୁଳି କୁହୁଳି ଧୂମାୟିତ ଭାବରେ ଆତ୍ମପ୍ରକାଶ କଲା । ବିଦ୍ରୋହୀଙ୍କଠାରେ ପ୍ରଜାମାନେ ଓଡ଼େନ୍ ସାହେବଙ୍କ ଜମିଦାରୀର ନଜିର୍ ଦେଇ ଅନ୍ୟାନ୍ୟ ନୀଳକର ଜମିଦାରମାନଙ୍କୁ ଅପଦସ୍ଥ କରାଇବାର ପ୍ରଚେଷ୍ଟା କଲେ ।

ଆନା ବିରୁଦ୍ଧରେ ଭାତମତ ସୁଯୋଗ ଖୋଜୁଥିବା ଜମିଦାର ଦୁର୍ଲଭ ରାୟଙ୍କୁ ଗୋଟିଏ ମଉକା ମିଳିଗଲା । ସେ ଅଞ୍ଚଳର ପରିଶ୍ରମ ତଥା ତଦ୍ବିର୍ କରି ଫର୍ଗୁସନ୍ ସାହେବଙ୍କ ବଙ୍ଗଳାରେ ନୀଳକର ଜମିଦାରମାନଙ୍କର ଗୋଟିଏ ଆଲୋଚନା ସଭାର ଆୟୋଜନ କଲେ । ନୀଳଚାଷୀ ଜମିଦାରମାନଙ୍କ ସ୍ୱାର୍ଥ ରକ୍ଷା ଥିଲା ସେ ଆଲୋଚନା ସଭାର ମୁଖ୍ୟ ଆଲୋଚ୍ୟ ବିଷୟ । ସେମାନଙ୍କ ସ୍ୱାର୍ଥସିଦ୍ଧି ଓ ଅଧିକାର ସାବ୍ୟସ୍ତ କରିବାପାଇଁ କ'ଣ କ'ଣ କରାଯିବା ଉଚିତ, ସେହି ବିଷୟରେ ବିସ୍ତୃତ ଆଲୋଚନା ତଥା ନୂତନ ଉପାୟର ଉଦ୍ଭାବନ କରିବା ଥିଲା ସେଇ ମଜଲିସ୍‌ର ପ୍ରଧାନ ବିଷୟବସ୍ତୁ ।

ଆନା ସେଇ ଆଲୋଚନା ସଭାରେ ଯୋଗଦେଇ ତର୍କ-ବିତର୍କରେ ଭାଗନେଲା । ଅନେକ ପ୍ରକାର ପ୍ରସ୍ତାବ ଆସିଲା ସେଇ ସଭାରେ । କିନ୍ତୁ ପରିଶେଷରେ ଦୁର୍ଲଭ ରାୟଙ୍କର ସମସ୍ତ ପ୍ରଚେଷ୍ଟା ବିଫଳ ହୋଇଗଲା । ଅବଶ୍ୟ ଦୁର୍ଲଭରାୟ କେତେକ ପରିମାଣରେ ସେଇ ଆଲୋଚନା ସଭାରେ ସଫଳତା ହାସଲ୍ କଲେ । ନୀଳକର ଜମିଦାର ସମାଜରେ ଆନା

ପ୍ରତିକୂଳତା ସୃଷ୍ଟି କରୁଥିବାର ସୂଚନାକରି, ମନେ ମନେ ଅଶ୍ୱସ୍ତ ହେବାକୁ ଲାଗିଲେ । କିନ୍ତୁ ପ୍ରତିଶୋଧ ନେବାପାଇଁ ସେ ଯେଉଁ ଜାଲ ବିସ୍ତାରିଥିଲେ, ସେଥିରେ ତାଙ୍କୁ ଆଦୌ ସଫଳତା ମିଳିଲା ନାହିଁ ।

ଅବଶ୍ୟ ଦୁର୍ଲଭ ରାୟ ତାଙ୍କ ଚେଷ୍ଟାରୁ ଆଦୌ ବିରତ ହେଲେ ନାହିଁ । ଏଇ ସୁଯୋଗରେ ମଝିରେ ମଝିରେ ବିଭିନ୍ନ ଜମିଦାରଙ୍କ ବଙ୍ଗଳାରେ ଗୋଟିଏ ଗୋଟିଏ ଆଲୋଚନା ସଭା ଆରମ୍ଭ ହେଲା ।

ଏଇ ପରିପ୍ରେକ୍ଷୀରେ ଅନାଦି ମଧ୍ୟ ନିଜ କୋଠିରେ ଗୋଟିଏ ବୈଠକର ଆୟୋଜନ କଲା । ଅନ୍ୟାନ୍ୟ ଜମିଦାରମାନେ ହଡ଼ଖୁପିରେ ସେଇ ବୈଠକରେ ଯୋଗଦେଉଥିଲେହେଁ, ନିଜ ଅସୁସ୍ଥତାର ଦୁହାଇଦେଇ ହରଣୀଗଡ଼ର ଜମିଦାର ସେଥିରେ ଯୋଗଦେଲେନାହିଁ ।

ଅନେକ ରାତି ପର୍ଯ୍ୟନ୍ତ ଖାନାପିନା, ମଉଜ୍‌ମଜଲିସ୍ ଚାଲିଲା ଖୁବ୍ ଧୁମ୍‌ଧାମ୍‌ରେ । ଅନାଦିର ଇଙ୍ଗିତରେ ମୈତ୍ରେୟୀ ଏଇ ଆସରଠା'ରୁ ଦୂରରେ ରହିଲା । ସାହେବମାନେ ନିଜ ନିଜର କୋଠିକୁ ଫେରିଯିବା ସମୟରେ, ଅନାଦିର ଷ୍ଟଡ଼ିରୁମ୍ ଚାକରବାକରମାନଙ୍କ କୋଳାହଳ ମୁଖରିତ ହୋଇଉଠିଲା । 'କ'ଣ ହେଲା' ବୋଲି ଜାଣିକରି ସାହେବମାନେ ସ୍ତମ୍ଭୀଭୂତ ହୋଇ-ଗଲେ । ବାରଣ୍ଡାରେ ଛିଡ଼ାହେଲେ ଷ୍ଟଡିରୁମ୍‌ର ଭିତରଟା ଭଲଭାବରେ ଦେଖାଯାଏ । ଅନ୍ଧକାର-ମୟ ଘରଭିତରଟା ହଠାତ୍ ଆଲୋକିତ ହୋଇଉଠିଲା । ସମସ୍ତେ ଲକ୍ଷ୍ୟକଲେ, ଘର ଭିତରେ ଗୋଟିଏ ତନ୍ୱୀ ମହିଳା ଚେତାଶୂନ୍ୟ ହୋଇ ପଡ଼ିଛି ।

ଜମିଦାର ଫଲ୍‌ମନ୍ ସେମାନଙ୍କ ମଧ୍ୟରେ ଥିଲା ଅତ୍ୟନ୍ତ କୌତୂହଳୀ । ତା' ବ୍ୟତୀତ ଓଡ଼େନ୍ ସାହେବଙ୍କ ପରିବାର ମଧ୍ୟରେ ସେ ଆଦୌ ଅପରିଚିତ ନଥିଲା । ଅନେକଦିନ ତଳେ ଓଡ଼େନ୍‌ସାହେବଙ୍କ ଜମିଦାରୀରେ ଫଲ୍‌ମନ୍ ଥିଲା ମେନେଜର୍ । କେତେବର୍ଷ ଧରି କାର୍ଯ୍ୟ କରିବା ପରେ, ନିଜର ଖଣ୍ଡିଏ ନୂଆ ଜମିଦାରୀ କିଣି ଫଲ୍‌ମନ୍ ଅନ୍ୟତ୍ର କୋଠି ନିର୍ମାଣ କରି ରହିଲା । ଲୋକମାନେ କହନ୍ତି—ଓଡ଼େନ୍ ସାହେବ ତାକୁ ଦରମା ବାବଦ ଯେତେ ଟଙ୍କା ଦେଉଥିଲେ ଫଲ୍‌ମନ୍ ତା'ଠାରୁ ବହୁପରିମାଣରେ ଟଙ୍କା ପଇସା ଅସୁଲ କରିଥିଲା ପ୍ରଜା-ମାନଙ୍କଠାରୁ ବେଇମାନୀ କରି । ଫଲ୍‌ମନ୍ ଥିଲା ଗୋଟିଏ ରାକ୍ଷସ ପ୍ରକୃତିର ଦୁର୍ଦ୍ଦାନ୍ତ ଲୋକ । କୌଣସି ଗୋଟିଏ ଦଙ୍ଗାହଙ୍ଗାମାରେ ସେ ତା'ର ଗୋଟିଏ ହାତ ହରାଇଥିଲା । ଶୁଣାଯାଏ, ତା' ପରଠାରୁ ସେ ଆହୁରି ଅଧିକ ନିଷ୍ଠୁର ହୋଇଉଠିଲା । ଅବଶ୍ୟ କୌଣସି କାଳେ ତା'ର ସ୍ୱଭାବ ଚରିତ୍ରର ଆଦୌ ସୁନାମ ନଥିଲା ।

ସେଇ ପୂର୍ବପରିଚିତିର ସୁଯୋଗ ନେଇ ଫଲ୍‌ମନ୍ ଝଟ୍‌କରି ପଶିଗଲା ଅନାଦିର ଷ୍ଟଡିରୁମ୍ ଭିତରକୁ । ସେତେବେଳକୁ ମୈତ୍ରେୟୀ ଟିକିଏ ସୁସ୍ଥହୋଇ ବସିଛି ଘରର ଠିକ୍ ମଝାମଝିରେ ଖଣ୍ଡିଏ ଆରାମ ଚୌକିରେ । ଫଲ୍‌ମନ୍ କ୍ଷଣକେ ମଧ୍ୟରେ ସେ ମୁହଁଟିକୁ ଦେଖି ଚମକି ପଡ଼ିଲା । ଅନାଦିର ଶତଚେଷ୍ଟା ଓ ନାନାପ୍ରକାରର ପ୍ରସାଧନ ସେ ମୁଖଶ୍ରୀକୁ କୌଣସିମତେ ଲୁଚାଇ ରଖିପାରିଲାନି ଫଲ୍‌ମନ୍‌ର ସନ୍ଧାନୀ ଦୃଷ୍ଟିର ଅନ୍ତରାଳରେ । କୁଚକ୍ରୀର ଦୃଷ୍ଟି

ଅନ୍ତରାଳରେ କେବେ କ'ଣ କୌଣସି ମୂଲ୍ୟବାନ୍ ବସ୍ତୁ ଗୋପନ ରହିବା ସମ୍ଭବ ? ଫଲ୍‌ମନ୍ ଅପଲକ ଦୃଷ୍ଟିରେ ମୈତ୍ରେୟୀ ଆଡ଼କୁ ଚାହିଁରହିଥିବା ବେଳେ ଆନା ଛଳ କୋପରେ ଅଳ୍ପ ଧରି ଛଡ଼ାହୋଇଥିବା ସ୍ୱିଚ୍‌ବୋର୍ଡଟିକୁ ଖୁବ୍ ଜୋର୍‌ରେ ଗୋଟିଏ ଧକ୍କା ମାରିଲା ଏବଂ ସେଇ ଜୋର୍ ଆଘାତରେ ସ୍ୱିଚ୍‌ବୋର୍ଡଟି ହାତରୁ ଖସିଯାଇ ତଳେ ପଡ଼ି ଚୂର୍‌ମାର ହୋଇଗଲା । ମୁହୂର୍ତ୍ତିକରେ ଷ୍ଟଡ଼ିରୁମ୍‌ଟା ଘନ ଅନ୍ଧକାରର କୁହେଳିକାରେ ଅଚ୍ଛନ୍ନ ହୋଇଗଲା ସତ; କିନ୍ତୁ ଦପ୍ ଦପ୍ ହୋଇ ଜଳିଉଠିଲା ଏକ ଶ୍ରେଷ୍ଠ ଅଥଚ ଦ୍ୟୁତିମାନ୍ ଆଲୋକ ରଶ୍ମି । ଘନ ଅନ୍ଧକାରର ବୁକୁ ଚିରି ମୈତ୍ରେୟୀର ଅଙ୍ଗୁଳିରେ ଥିବା ମୁଦ୍ରିକାର ହୀରକ ଖଣ୍ଡରୁ ଶୁଭ୍ର କ୍ଷୀଣ ଆଲୋକ ରେଖାଟିଏ ବିଚ୍ଛୁରିତ ହୋଇଗଲା ଷ୍ଟଡ଼ିରୁମରେ ।

ହଠାତ୍ ଏକ ଅଟ୍ଟହାସ୍ୟରେ ଗୁଞ୍ଜରିତ ହୋଇଉଠିଲା ଆନାର ପଢ଼ାଘରଟା । ଫଲ୍‌ମନ୍ ଉଚ୍ଛ୍ୱସିତ କଣ୍ଠରେ ହୋ' ହୋ' ହୋଇ ହସିଉଠିଲା ଏବଂ ତା'ର ସେଇ ବିକଟ ହର୍ଷଧ୍ୱନିରେ ଆନାର ବୁକୁ ଭିତରଟା ଶିମ୍‌ଶିମ୍ କରି ଆଶଙ୍କା, ଭୟ ଓ ସନ୍ଦେହରେ କମ୍ପି ଉଠିଲା । ସେ ହଠାତ୍ ଭାବିଲା—ସତେ ଯେପରି ବହୁ ଯତ୍ନରେ ଗଢ଼ିଉଠିଥିବା ତା'ର କାଚଘରଟା ଫଲ୍‌ମନ୍‌ର କୌତୂହଳପୂର୍ଣ୍ଣ ହାସ୍ୟରୋଳରେ ଭାଙ୍ଗି ଚୂର୍‌ମାର୍ ହୋଇଗଲା ।

( ନଅ )

ସେହି ଘନ ଅନ୍ଧକାର ମଧ୍ୟରେ ଆନାକୁ ବିଦାୟକାଳୀନ ଅଭିବାଦନ ଜଣାଇ ଫଲ୍‌ମନ୍ ପାଦେବ ଯିବାବେଳେ ବିଦ୍ରୂପାତ୍ମକ ସ୍ୱରରେ କହିଲା—"ଅଶେଷ କୃପା ତୁମର ମିସ୍ ଆନା !"

ଅତିଥିମାନେ ବିଦାୟ ନେଇ ଚାଲିଯିବା ପରେ ଆନା ମୈତ୍ରେୟୀକୁ ଗୋଟିଏ ଗୋପନ କକ୍ଷ ମଧ୍ୟକୁ ନେଇଯାଇ ଟିକିଏ ବିରକ୍ତିମିଶା ସ୍ୱରରେ କହିଲା—"ଏ କ'ଣ କଲୁ ଆଜି କହିଲୁ ମେରି ? ନିଜେ ତ ବୁଡ଼ିଲୁ, ଆଉ ତୋ' ସହିତ ମୋତେ ମଧ୍ୟ ବୁଡ଼ାଇଲୁ ନାହିଁ !"

ଆନାର ବିରକ୍ତିର କିଛି ଉତ୍ତର ନଦେଇ ନୀରବ ରହିଲା ମୈତ୍ରେୟୀ । ତାକୁ ନୀରବ ରହିବା ଦେଖି ଆନା ଅତ୍ୟନ୍ତ ରାଗିଯାଇ କହିଲା—"ମେରି, ତୁ ତୋର ନିଜର ସୀମା ପାର ହୋଇଯାଉଛୁ । ତୋ'ର କ'ଣ ଦରକାର ଥିଲା ଷ୍ଟଡ଼ିରୁମ୍‌ରେ ପଶି ସବୁକିଛି ଗୋପନରେ ଲକ୍ଷ୍ୟ କରିବା···?"

ତଥାପି ମୁହଁ ଖୋଲିଲା ନାହିଁ ମୈତ୍ରେୟୀ । ଏଥର ଅପେକ୍ଷାକୃତ ନରମ ସ୍ୱରରେ କହିଲା ଆନା—"ତୁ ଫଲ୍‌ମନ୍‌କୁ ଚିହ୍ନିନୁ ମେରି ! ସଂସାରରେ ଏପରି କୌଣସି ଖରାପ କାମ ନାହିଁ ଯାହା ସେ କରିନପାରିବ !"

ଏତେ କିଛି ଶୁଣି ସାରିବା ପରେ ମୁହଁ ଖୋଲିଲା ମୈତ୍ରେୟୀ । ଭୟ, ଲଜ୍ଜା ଓ ଦୁଃଖରେ

ସେ ପଡ଼ିଯାଇଥିଲା । କହିଲା, "ଦଦା, ମୁଁ ସେ ଲୋକଟାକୁ ଗ୍ରୀଡ଼ ଉପରୁ ଦେଖି ଚମକିପଡ଼ିଥିଲି । ଠିକ୍ ସେଇ ଲୋକଟା କି ନା, ତାକୁ ଆଉ ଥରେ ଦେଖିବା ପାଇଁ ଅନ୍ଧାର ଭିତରେ ଚୁପ୍‌ଚାପ୍ ତୁମ ଷ୍ଟଡ଼ିରୁମ୍ ଭିତରେ ପଶିଥିଲି ।"

"ତୁ କାହା କଥା କହୁଛୁ ମେଘା ? ଫଲ୍‌ମନ୍‌କୁ ତୁ ବା ଚିହ୍ନିଲୁ କିପରି ?" ବିସ୍ମିତ ହୋଇ ପଚାରିଲେ ଆନା ।

"ଏଇ ଲୋକଟା ମୋର କାଳଚକ୍ର ଦଦା । ମୋ' ଦେଖିବାରେ ଆଦୌ ଭୁଲ ହୋଇନି । ସେଦିନ ମୋ ବିବାହର ବାସରରାତିରେ ଶ୍ରେଷ୍ଠ କୁମାରଙ୍କ ପାଖରେ ଶେଯରେ ମୁଁ ଶୋଇଥିଲି । କ୍ଲାନ୍ତିରେ ତାଙ୍କର ଆଖି ଲାଗିଯାଇଥିଲା; କିନ୍ତୁ ମୁଁ ଆଦୌ ଆଖି କଷ୍ଟା କରି-ନଥିଲି । ହେଉକବେଳେ ମୁଁ ଘୋଡ଼ାଟାପୁ ଶବ୍ଦ ଶୁଣି ଚମକିଉଠିଲି । ଆମ ଘରର ଠିକ୍ ବାଡ଼ିପଟେ ସେ ଶବ୍ଦ ମୁଁ ଶୁଣିବାକୁ ପାଇଥିଲି । ସେଦିନର ସେଇ କ୍ଷୀଣଚନ୍ଦ୍ରର ଆଲୋକରେ ମୁଁ ଦେଖିଥିଲି ଏଇ ରାକ୍ଷସଟାକୁ । ଏ ବାଁ' ହାତରେ ଉଞ୍ଚାଇ ଧରିଥିଲା ତରୁଆଲ୍‌ଟାଏ···।

"ତା ପରେ ଆରମ୍ଭ ହୋଇଯାଇଥିଲା ବିକଟ ଚିତ୍କାର । ଆଉ ଯେଉଁ କେତୋଟି ବତି ଜଳୁଥିଲା, ସ୍ତା'ର ଆକ୍ରମଣରେ ସବୁ ଲିଭିଗଲେ । ଆଜ ପରି ସେଦିନ ମଧ୍ୟ ମୁଁ ମୂର୍ଚ୍ଛା ହୋଇଯାଇଥିଲି । ମୋର ଚେତା ଫେରି ଆସିବା ମାତ୍ରେ ମୁଁ ଦେଖିବାକୁ ପାଇଲି ଯେ ଖଣ୍ଡିଏ ପାଲିଙ୍କି ଭିତରେ ଶୁଆଇ ଶାଳବଣ ଭିତର ଦେଇ ମୋତେ ନଦୀ ଆଡ଼କୁ ନିଆଯାଉଛି । ନଦୀକୂଳରେ ଗୁପଡ଼ଙ୍ଗା ବନ୍ଧାଯାଇଥିଲା । ପାଲିଙ୍କି ସହିତ ମୋତେ ସେଇ ନୌକା ଭିତରକୁ ନିଆଯାଇଥିଲା । ସେଇ ପାଲିଙ୍କିରେ ପଡ଼ି ଝାପ୍‌ସା ଝାପ୍‌ସା ଯେତିକ ଦେଖିଲି କହୁଚି ଶୁଣ ।"

ମୈତ୍ରେୟୀର ସର୍ବାଙ୍ଗ ଭୟରେ ବଡ଼ୋପଡ଼ ପରି ଥରିଉଠିଲା । ସେ ଥରିଲା କଣ୍ଠରେ କହିଲା—"ମୁଁ ସ୍ପଷ୍ଟ ଭାବରେ ଦେଖିଲି, ଏଇ ଲୋକଟା କୂଳରେ ଠିଆହୋଇ ଇଙ୍ଗିତ ଦେଉଥିଲା ତା' ଲୋକମାନଙ୍କୁ । ଆଉ କିଛି ଦେଖିବାର ଧୈର୍ଯ୍ୟ ମୋର ନଥିଲା । ମୁଁ ମୂର୍ଚ୍ଛାରେ ଚେତନା ହରାଇଥିବାର ଛଳନା କରି କିଛି ସମୟ ପଡ଼ିରହିଲି । ତା' ପରେ ନୌକାର ଗତି କିଛିଟା ତୀବ୍ର ହେବା ମାତ୍ରେ, ସେମାନଙ୍କ ଅନ୍ୟମନସ୍କତାର ସୁଯୋଗ ନେଇ, ମୁଁ ଧୀରେ ପାଲିଙ୍କିରୁ ଉଠି ଡେଇଁପଡ଼ିଲି ନଈ ଭିତରକୁ । ତା' ପରେ ଯାହା ସବୁ ଘଟିଥିଲା, ସେ କଥା ତୁମକୁ ଅଜଣା ନାହିଁ ଦଦା ।"

ମୈତ୍ରେୟୀର କଥା ଶୁଣି ସ୍ତବ୍ଧ ହୋଇ କିଛି ସମୟ ବସିରହିଲେ ଆନା ।

ଫଲ୍‌ମନ୍ ନିଜ ଡାହାଣହାତଟାକୁ କେଉଁ ଦିନରୁ ହରାଇବା ପରେ, ବାଆଁହାତରେ ବନ୍ଧୁକ ଓ ତରବାରି ଚଳାଇବା ବେଶ୍ ଅଭ୍ୟାସ କରିଛି । ସେଇ ବାଆଁହାତରେ ସେ ଅସାଧ୍ୟ ସାଧନ କରିପାରେ । ତା'ର ଲକ୍ଷ୍ୟ ସବୁବେଳେ ଅବ୍ୟର୍ଥ ।

ଆନା ଫଲ୍‌ମନ୍ ସମ୍ବନ୍ଧରେ ଏଣ୍ଡୁତେଣ୍ଡୁ କେତେ କଥା ଭାବିବା ପରେ, ମୈତ୍ରେୟୀକୁ

ଆଶ୍ୱସ୍ତ କରାଇ କହିଲା—“ତୁ ଭୟରେ ଶୁଖିଆଁ ହୋଇଯାଆନା । ଆଜିଠାରୁ ଢେର୍ ସାବଧାନରେ ଚଳିବାକୁ ହେବ ଆମକୁ । ଚିତାବାଘ ଥରେ ମଣିଷ ରକ୍ତର ସ୍ୱାଦ ଚାଖିଲେ, ସେ ସହଜରେ ତା'ର ଶିକାରକୁ ଛାଡ଼େନା । ବରାବର ସେ ଓର ଉଣ୍ଡି ଖୋଜୁଥାଏ ମଣିଷ ଶିକାର ।”

ପ୍ରକୃତରେ ଭୟରେ ନିତାନ୍ତ କାତର ହୋଇଉଠିଥିଲା ମୈତ୍ରେୟୀ । ଜୀବନରେ ଆଉ ଥରେ ସେଇ ନରରାକ୍ଷସଟାକୁ ଦେଖିବ ବୋଲି ସେ ଆଦୌ ଭାବିନଥିଲା । ସେ କିଛି ସମୟ ନୀରବ ରହିବା ପରେ କହିଲା—“ଦିଦି, ସେ ଲୋକଟା ଏଠିକି ଆସିଲା କିପରି ? ତା'ର କାମ କ'ଣ ଏଠି ? ସେ କିଛି ମନ୍ଦ ଉଦ୍ଦେଶ୍ୟରେ ଏଠାକୁ ପୁଣି ଆସି ନଥିଲା ତ ?”

“ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଫଲ୍‌ମନ୍ ଆମର ଏଇଠି ମେନେଜର୍ ହୋଇ କାମକରୁଥିଲା । ଏଇଲେ ସେ ଆମର ପରି ଜଣେ ନୀଳକର ଜମିଦାର । ସେ ତା'ର ସ୍ୱତନ୍ତ୍ର କୋଠି ତିଆରି କରିଛି । ଯେତେବେଳେ ନୀଳକୃଷି ଜମିଦାରମାନଙ୍କର ବୈଠକ ବସେ, ସେ ଯେତେ ବଦ୍‌ମାସ୍ ହେଲେ ବି ଭଦ୍ରତା ଖାତିରରେ ତାକୁ ମଧ୍ୟ ନିମନ୍ତ୍ରଣ କରାଯାଏ ।”

ଆନା ମୁହଁରୁ ଏହା ଶୁଣିବା ପରେ ମୈତ୍ରେୟୀ ଅନ୍ୟମନସ୍କ ଭାବରେ କେତେ କ'ଣ ଆକାଶ ପାତାଳ ଭାବିବାକୁ ଲାଗିଲା—‘ଏ’ ଲୋକଟା ଏତେ ନିର୍ଦ୍ଦୟ ଓ ଅତ୍ୟାଚାରୀ ହେଲା କିପରି ? ନୀଳକୃଷି ସାହେବଗୁଡ଼ାକ ଅତ୍ୟାଚାରୀ ବୋଲି ଶୁଣିଛି; କିନ୍ତୁ ଲୁଟ୍‌ମାର୍ କରିବା ଏମାନଙ୍କର ପେଷା ବୋଲି ମୋର ଧାରଣା ନଥିଲା । ଏତେ ସୁନ୍ଦର ଭଦ୍ର ପୋଷାକ ମଧ୍ୟରେ କି ଭୟଙ୍କର ସୈତାନର ଦୁର୍ଦ୍ଦାନ୍ତପଣିଆ ଛପି ରହିଛି ! ଲୋକଟାର କାରବାର ଦେଖି ମନେହୁଏ ଏ ଗୋଟେ ଷଣ୍ଢମତ ସୈତାନ ଦସ୍ୟୁ ।”

ମୈତ୍ରେୟୀର ମନକଥା ବୁଝିପାରିଲା ପରି କହିଲା ଆନା—“ତୁ ଠିକ୍ ଅନୁମାନ କରିଛୁ ମେଘ— ଫଲ୍‌ମନ୍‌ଟା ପ୍ରକୃତରେ ଗୋଟେ ଦୁର୍ଦ୍ଦାନ୍ତ ଦସ୍ୟୁ । ତା'ର ଦୟାମାୟା କିଛି ହେଲେ ନାହିଁ । ସେ ତା'ର ସ୍ୱାର୍ଥପାଇଁ ସବୁକିଛି ନାରକୀୟ କର୍ମ କରିପାରେ ।”

ଆନା ଟିକିଏ ନୀରବ ରହିବା ପରେ ପୁଣି କହିଲା—“ମେଘ, ମୁଁ ଆଜି ଖୁବ୍ କ୍ଳାନ୍ତ ହୋଇପଡ଼ିଛି । ଚାଲ୍, ଛାତ ଉପରେ ଖୋଲା ପବନରେ ବସି ଗପସପ କରିବା । ଆଉ ଥରେ ସୁବିଧା ଦେଖି ମୁଁ ତୋତେ ସେଇ ଦୁର୍ଦ୍ଦାନ୍ତ ଲୋକଟାର ଅନେକ କିଛି ଘଟଣା ଶୁଣାଇବି ।” ଏହା କହି ଦି'ଭଉଣୀ ହାତ ଧରାଧରି ହୋଇ ଛାତ ଉପରକୁ ଉଠିଗଲେ ।

( ଦଶ )

ଆଉ ଥରେ ମୈତ୍ରେୟୀ ଓ ଆନା ଆସି ସଞ୍ଜସନ୍ଧିଆ ବେଳେ ଛାତ ଉପରେ ବସିଲେ । ମୈତ୍ରେୟୀର ମନ ଲାଗିଛି ଫଲ୍‌ମନ୍‌ର ଅତୀତ କାହାଣୀ ଶୁଣିବାପାଇଁ । ଦୁହେଁ ଯାଇ ଛାତର

ଗୋଟିଏ ପାଖରେ ବସିଲେ । ସ୍ଥିତର କାଲ୍ଦାର ଦେଓ୍ୱାଲ୍ ଦେଇ ସୁବର୍ଣ୍ଣରେଖାର ବକ୍ଷସ୍ଥିତ ଜଳରାଶି ସ୍ପଷ୍ଟସ୍ପଷ୍ଟିଆ ହୋଇ ଦେଖାଯାଉଥିଲା । ମଝିରେ ମଝିରେ ଥିବା ସ୍ୱର୍ଣ୍ଣିମ ବାଲୁକା-ରାଶି, କେଉଁ ଦେବନ ରାଜାଙ୍କର ପକ୍ଷୀମାନଙ୍କ ନୃତ୍ୟ ପାଇଁ ପଡ଼ିଥିବା ସ୍ୱର୍ଣ୍ଣାଭ ଗାଲିଚା ପରି ଶୋଭା ପାଉଥିଲା । ଅନ୍ଧାର ଟିକିଏ ଦୂରରେ, ନଈ ଆରପାରିର ଶାଲବନ ଭିତରେ, ଯେଉଁଠି ଚନ୍ଦ୍ର କିରଣ ଧୂପଛାଇର ଲୁଚକାଳି ଖେଳୁଥିଲା, ସେଠାରେ ମନେହେଉଥିଲା ଯେତେବେଳେ କେହି କ୍ଲାନ୍ତଶ୍ରାନ୍ତ ପଥିକ କାହାରି ଅପେକ୍ଷାରେ ବସିରହିଛି । ବୋଧହୁଏ, ଚନ୍ଦ୍ର ଆକାଶରୁ ଅପସରିଗଲେ ସେ ତା'ର ଅଭିଯାନ ବା ଅଭିସାର ଆରମ୍ଭ କରିବ । ତା'ର ଆହୁରି ପଛକୁ ଦେଖାଯାଉଛି ଅନ୍ଧାରିଆ ହୋଇ ପାହାଡ଼ । ଠିକ୍ ଯେପରି ଧୂସର ବର୍ଣ୍ଣର ଗୋଟିଏ ଅତିକାୟ ଜନ୍ତୁ ରାତ୍ରିର ଅନ୍ଧକାର ମଧ୍ୟରେ ସ୍ତବ୍ଧ ହୋଇ ଛିଡ଼ା ହୋଇଛି । ସେଇ ନିର୍ଜନ ସନ୍ଧ୍ୟାରେ ମୈତ୍ରେୟୀର ଆଗ୍ରହରେ କଥା ଆରମ୍ଭ କଲା ଅନା—"ଅତି ଉତ୍କଳୀୟ ରୁ ମେଘୀ—ତେଣୁ ତୋତେ କିଛି ଭୟଙ୍କର ଘଟଣା ଶୁଣାଇବାକୁ ମୋର ଇଚ୍ଛା ହେଉନି ।"

ମୈତ୍ରେୟୀ ହସି ହସି କହିଲା—"ତୁମ କଥା ମିଛ ନୁହେଁ ଦଦା ! ମୁଁ କେବେହେଲେ କ'ଣ ତୁମ ପରି ବୀରାଙ୍ଗନା ହୋଇପାରିବ ? ସେଥିପାଇଁ ମୋତେ ଅପରାଧିନୀ ବୋଲି ମନେ-କରନା । ମୁଁ ଗୋଟେ ସାମାନ୍ୟ ବ୍ରାହ୍ମଣଘରର ଝିଅ । କେବଳ ଠାକୁରପୂଜା ପାଇଁ ଫୁଲ ତୋଳିବା ଶିଖିଛି ପିଲାଟି ଦିନରୁ । ମୋ'ଠାରୁ ତୁମେ ଆଉ ବେଶି କ'ଣ ଆଶା କରୁଛ ?"

"ତା' ତ ଠିକ୍—" କହିଲା ଅନା—"ସେଥିପାଇଁ ପରମାତ୍ମା ତୋତେ ଦୁଃଖର ଅତଳ ଗର୍ଭ ଭିତରେ ପକାଇ ଚେହେରାଟିକୁ ଗଢ଼ିବାକୁ ମନକରିଛନ୍ତି ।"

"କିନ୍ତୁ ତୁମ ଆକ୍ଷେପ ଠିକ୍ ବୋଲି ମୁଁ ମନେକରିପାରୁନି । ମୋ ଭଗବାନ୍ ନିଶ୍ଚୟ କରୁଣାମୟ । ତା'ର ପ୍ରମାଣ ତୁମେ ନିଜେ । ଏଇ ପୋଡ଼ା ଜୀବନଟାକୁ ବଞ୍ଚେଇବା ପାଇଁ ମୋତେ କେତେ ଅଜଣା ସ୍ଥାନରେ ଆଶ୍ରୟ ଖୋଜିବାକୁ ପଡ଼ିଥା'ନ୍ତା, ତା'ର ଠିକ୍‌ଠିକଣା ନାହିଁ···" ଗଭୀର ଦୀର୍ଘନିଃଶ୍ୱାସଟିଏ ପକାଇ ମୈତ୍ରେୟୀ ଏକଲୟରେ ଚାହିଁରହିଲା ଆନାର ମୁହଁକୁ ଅପଲକ ଦୃଷ୍ଟିରେ ।

ମୈତ୍ରେୟୀର ଅକପଟ ସ୍ୱୀକାରୋକ୍ତିରେ ଗୋଟିଏ କ୍ଷୀଣ ହାସ୍ୟରେଖା ଅଙ୍କି ହୋଇଗଲା ଆନାର ଗୋଲାପୀ ଓଠରେ । ସେ ମୈତ୍ରେୟୀ ଆଡ଼କୁ ଚାହିଁ କହିଲା—"ସତରେ ମେଘୀ, ପରମାତ୍ମାଙ୍କ କାରସାଦ ବୁଝିବା ବଡ଼ କଷ୍ଟ । କେତେବେଳେ କାହାକୁ କାହା ସହିତ ମିଳାଇ ଦିଅନ୍ତି, ଆଉ କାହାଠୁ କାହାକୁ ଦୂରେଇ ନିଅନ୍ତି, ତା' ତାଙ୍କୁ ହିଁ ଜଣା । ହୁଏତ ଫିଲିମନ୍ ଆଜି ଏଇ ଝିଲମିଲ ଜ୍ୟୋତ୍ସ୍ନା ରାତରେ ଏଇଠି, ଠିକ୍ ତୋ'ର ବସିବା ଆସନରେ ବସିଥାଆନ୍ତା ମୋ ଦେହକୁ ଦେହ ଲଗାଇ ।"

ଚମକିପଡ଼ି କହିଲା ମୈତ୍ରେୟୀ—"ଏ ସବୁ ତୁମର ଅଳୀକ କଳ୍ପନା ଦଦା ।"

"ନା" ଟିକିଏ ଗୁମ୍ ମାରି କହିଲା ଆନା—"ହୁଏତ ତାହାହିଁ ଘଟିଯାଇଥା'ନ୍ତା;

କିନ୍ତୁ···ଫଲ୍‌ମନ୍ଦ ଯେ କି ପ୍ରକାର ଭଦର୍ଯ୍ୟ ଚରିତ୍ରର ମଣିଷଟାଏ, ବୋଧହୁଏ ମୋ'ଠାରୁ ଆଉ ଅଧିକ କେହି ଜାଣିନାହାନ୍ତି ।"

ମୈତ୍ରେୟୀ କଥାର ଲଥ ପରି, ଆଉ କେଉଁ କୋଟିଏ ଅଦ୍ଭୁତ କାହାଣୀ ଶୁଣିବା ପାଇଁ କାନ ଡେରି ରହିଲି । ଆନା କିଛୁ ସମୟ ନୀରବ ରହିବା ପରେ ଗୋଟିଏ ବୃକୁଫଟା ଦୀର୍ଘ ନିଃଶ୍ୱାସ ପକାଇ କହିଲା—"ଏଇ ଦୂରରେ ଯେଉଁ ଅସ୍ପଷ୍ଟ ପାହାଡ଼ର ଛାୟା ଦେଖାଯାଉଚି, ତା'ରି ଆଢୁଆଳରୁ ଦିନେ ଗୋଟିଏ ଘୋଡ଼ସବାର ଏ ଆଡ଼କୁ ପବନ ବେଗରେ ଛୁଟି ଆସୁଥିବାର ମୁଁ ଦେଖି ଚମକିପଡ଼ିଥିଲି । ସେ ସମୟଟା କାଳବୈଶାଖୀର ଉଦ୍ଦୁଉଦ୍ଦିଆ ଦ'ପ୍ରହର । ଆକାଶରୁ ଧୂ-ଧୂ ହୋଇ ଯେମିତି ନିଆଁ ଅଜାଡ଼ିହୋଇ ପଡ଼ୁଥିଲା । ଆଉ ଏଇ ସୁବର୍ଣ୍ଣରେଖାର ବାଲିଚର, ଯାହା ଏବେ ଲେ କେତେ ସ୍ନିଗ୍ଧ ଓ ମନୋରମ ଦେଖା-ଯାଉଚି, ସେତେବେଳେ ହୁରୁ ହୁରୁ ହୋଇ ଜଳୁଥିଲା ପରି ମନେହେଉଥିଲା ।

"ସତରେ ମେଘା, ମୁଁ ପ୍ରଥମେ ସେଇ ଲୋକଟାକୁ ଆମ ଘରର ଜାନ୍‌ଲା ବାଟେ ଦେଖିବାକୁ ପାଇଲି । ସେ ଧାଇଁ ଧାଇଁ ଘୋଡ଼ା ଛୁଟେଇ ନଈଧାରକୁ ମାଡ଼ିଆସି ପାଣିରେ ହୁ-ଦଣେ ପଡ଼ିଗଲା । ଘୋଡ଼ାଟା ପାଣି ଭିତରେ ପଡ଼ି ଚିଁ-ଚିଁ କରି ପେଟେ ପାଣି ପିଇସାରି ହିଁ···ହିଁ···ହିଁ···ହୋଇ ରଡ଼ି ଛାଡ଼ିଲା । ଦୂରରୁ ମୁଁ ବେଶ୍ ଅନୁମାନ କରିନେଲି ଯେ ଲୋକଟା ନିଶ୍ଚିତ ଖରାରେ ମୂର୍ଚ୍ଛିତ ହୋଇ ପଡ଼ିଛି—ସେ କୌଣସି ମୁହୂର୍ତ୍ତରେ ପାଣିରେ ବୁଡ଼ି ପ୍ରାଣ ହରାଇବ ।

"ମେଘା, ମୁଁ କାହାରିକୁ ଅସହାୟ ଅବସ୍ଥାରେ ଦେଖିପାରେ ସହିପାରେନା । ତେଣୁ ତରତର ହୋଇ ମୁଁ ତଳକୁ ଓହ୍ଲାଇ ଆସିଲି । ସେତେବେଳେ ମୋ' ବାପା ଗୋଟିଏ ଜରୁରୀ କାମରେ କମ୍ପାନୀ ଅଫିସ୍‌କୁ ଯାଉଥିଲେ । ନାଏବବାବୁ କୋଠିରେ ଥାଆନ୍ତି । ତାଙ୍କୁ ସବୁକଥା ଜଣାଇଦେଇ ଲୋକଟାକୁ ଶୀଘ୍ର ଯାଇ ରକ୍ଷା କରିବା ପାଇଁ ମୁଁ ଅନୁରୋଧ କଲି । ସେ ତରବର ହୋଇ ଲୋକବାକଙ୍କୁ ଡକାହକା କରି ନଈକୂଳରେ ବନ୍ଧା ହୋଇଥିବା ଆମ ନାଆଟିକୁ ନେଇ ଆରକୂଳ ଆଡ଼କୁ ଆଗେଇଗଲେ ଏବଂ ସଙ୍ଗେ ସଙ୍ଗେ ଲୋକଟାକୁ ପାଣିରୁ ଘୋଷି ଆଣିଲା ପରି ଫେରିଆସିଲେ ।

"ଏ ପାଖରେ ପହଞ୍ଚିବା ମାତ୍ରେ ହଇଚଇ ଲାଗିଗଲା । ମୁଁ ଯାଇ ଦେଖିଲି, ଲୋକଟି ଆମରି ଦେଶର । ତା'ର ଡାହାଣହାତଟା ଦ'ଗଡ଼ ହୋଇ କଟି ସେଥିରୁ ରକ୍ତର ସୁଅ ଛୁଟୁଛି । ସେ ସମ୍ପୂର୍ଣ୍ଣ ଚେତନାଶୂନ୍ୟ ହୋଇ ପଡ଼ିଥିଲା; କିନ୍ତୁ ତା'ର ବିକୃତ ମୁଖମଣ୍ଡଳରୁ ଫୁଟି ଉଠୁଥିଲା ତୀବ୍ର ଯନ୍ତ୍ରଣାର ଆଭାସ । ଲୋକଟି ଏକାବେଳକେ ଅସହାୟ ପରି ମନେହେଲା ।

"ଆମ ନୀଲକୋଠିର ଦର୍ଦାର ଗୋଲୋକ ମୁର୍ମୁର ବୁଢ଼ାବାପା ସେତେବେଳେ ବଞ୍ଚିଥିଲା । ଆଶ୍ଚର୍ଯ୍ୟର କଥା—ଲୋକଟା ବଣ ଜଙ୍ଗଲର କେତେ ଗଛ, ପତର, ଚେର ଓ ମୂଳମୂଳିକା ଜାଣିଥିଲା କେଜାଣି, ସବୁ ରୋଗ ପାଇଁ ତା' ପାଖରେ ମହଜୁଦ୍ ଥିଲା ମହୌଷଧ । ତୁ ଆଶ୍ଚର୍ଯ୍ୟ ହେବୁ—ତୁମ ଦେଶର ଏଇ ଆଦିବାସୀ ଲୋକମାନେ କି ଅଦ୍ଭୁତ ଧରଣର ଔଷଧପତ୍ର

ଜାଣିନ୍ତି କେଜାଣି, ଗୃହଁ ଗୃହଁ ଯେଉଁ ବଡ଼ ରୋଗ ହେଉ ପଛକେ ତାକୁ ଝାଡ଼ଫୁଙ୍କି ଚେରମୂଳ ଦେଇ ଉଡ଼େଇ ଦେବେ । ମୂର୍ଖ ବୁଢ଼ାର ଔଷଧରେ ଫଲ୍‌ମନ୍ ରୋଗ ଝାଡ଼ଝୁଡ଼ି ଦେଇ ବସିଲା ।

"ଲୋକଟା ଥିଲା ଭାରି ଚତୁର । ତା'ର ଚାଲିଚଳଣି, ଆଚାର ବ୍ୟବହାର ଓ କଥାବାର୍ତ୍ତାରୁ ବାପା ତାକୁ ବେଶ୍ ପାରିବାର ଲୋକ ବୋଲି ଜାଣିପାରିଲେ । କିନ୍ତୁ ମୁଁ ଶତଚେଷ୍ଟା କରି ମଧ୍ୟ ଲୋକଟାର ପେଟରୁ ଅସଲ କଥାଟି ଜାଣିପାରିଲିନାହିଁ—କିଏ ତାକୁ ଆଘାତ କରି ତା'ର ଡାହାଣ ହାତଟିକୁ ଛୁଡ଼େଇଦେଇଥିଲା ଓ ତା'ର ଦୋଷ କ'ଣ ଥିଲା ।

"ବାପା ତା'ର ଦକ୍ଷତା ଦେଖି ତାକୁ ଆମ ନୀଳକୋଠିର ଜଣେ ବଡ଼ କର୍ମସ୍ଥ ରୂପେ ନିଯୁକ୍ତ କରିଦେଲେ । ଫଲ୍‌ମନ୍ ମଧ୍ୟ ମାସ କେଇଟା ମଧ୍ୟରେ ନିଜକୁ ଜଣେ ପୋକ୍ତ କାମିକା ଲୋକ ଭାବରେ ପ୍ରମାଣିତ କରାଇଦେଲା । ଆମ କୋଠିର ଆୟ ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ଶେଷକୁ ବାପା ଲୋକଟା ଉପରେ ଏତେ ସନ୍ତୁଷ୍ଟ ହୋଇଗଲେ ଯେ, ତାକୁ ମେନେଜର୍ ଭାବରେ ନିଯୁକ୍ତି ଦେବାକୁ ଟିକେହେଲେ ଇତସ୍ତତଃ ହେଲେ ନାହିଁ ।

"ମେନେଜର୍ ହୋଇ କାମ କରିବାର ପାଞ୍ଚ-ଛଅବର୍ଷ ପରେ ଫଲ୍‌ମନ୍ ସମ୍ପୂର୍ଣ୍ଣ ଭାବରେ ବଦଳିଗଲା । ସେ ବାପାଙ୍କ ହାତରୁ କଳେ କୌଶଳେ ସବୁତକ ଅଧିକାର ହସ୍ତଗତ କରିନେଲା । ବାପା ମଧ୍ୟ ଯାଦୁବିଦ୍ୟାରେ ବଶୀଭୂତ ହେଲା ପରି ତା' ଉପରେ ସମସ୍ତ ଦାୟିତ୍ୱ ଅର୍ପଣ କରିଦେଲେ ।

"ଠିକ୍ ଏଇ ସମୟରେ ଆମ କୋଠିକୁ ଜଣେ ତରୁଣୀ ଭଦ୍ରମହିଳା ଘନଘନ ଯିବା-ଆସିବା କଲେ । ବାପାଙ୍କ ସହିତ ସେ ଭଦ୍ରମହିଳାଙ୍କର ସମ୍ପର୍କ ଦିନକୁ ଦିନ ଘନିଷ୍ଠରୁ ଘନିଷ୍ଠତର ହୋଇଚାଲିଲା ଏବଂ ବାପା ତା' ସହିତ ପ୍ରାୟ ଅନେକ ଦିନ ବାହାରେ ରହିବାର କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ତେଣୁ ସେ ଆଉ ପୂର୍ବପରି କୋଠିର ଦାୟିତ୍ୱରେ ରହିବାକୁ ଇଚ୍ଛା କଲେ ନାହିଁ । ଫଲ୍‌ମନ୍ ସେଇ ସୁଯୋଗର ସମ୍ପୂର୍ଣ୍ଣ ସଦ୍‌ବ୍ୟବହାର କଲା । ଆମ ନୀଳକୋଠି ଅଧୀନସ୍ଥ ପ୍ରଜାମାନେ ଧୀରେ ଧୀରେ ମୋ' ବାପାଙ୍କୁ ଭୁଲିଯାଇ, ନିଜର ମୁନିବ ରୂପେ ଫଲ୍‌ମନ୍‌କୁ ଗ୍ରହଣ କରିନେଲେ ଏବଂ ସେଇ ମଉକାରେ କୁଟିଳ ଚକ୍ରାନ୍ତ କରି ଫଲ୍‌ମନ୍ ଆଶାତୀତ ସଫଳତା ହାସଲ କରିନେଲା । ସେ ଘୋଡ଼ାରେ ବସି ସକାଳୁ ସନ୍ଧ୍ୟା ଯାଏଁ ଆମ ସିରସ୍ତା ଭିତରେ ବୁଲିବୁଲି କରି ନିଜର ଆଧିପତ୍ୟ ସମ୍ପୂର୍ଣ୍ଣ ଭାବରେ ସୁଦୃଢ଼ କରିବାକୁ ଲାଗିଲା ।

"କେବଳ ପୋଖତ ଶାସକ ଭାବରେ ନୁହେଁ, ଜଣେ ନାମଜାଦା ଶିକାରୀ ଭାବରେ ମଧ୍ୟ ସେ ଲୋକମାନଙ୍କୁ ଚମତ୍କୃତ କରିଦେଲା । ବାଆଁ ହାତରେ ତରୁଆଲ୍ ବୁଲାଇ ସେ ଯେପରି ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେଲା ଠିକ୍ ସେହିପରି ବାଆଁ ହାତରେ ବନ୍ଧୁକ ଚଳାଇ ଉଡ଼ନ୍ତା ଚଢ଼େଇକୁ ଆକାଶରୁ ଖସାଇଦେଲା । ତା'ର ବାହାଦୁରି ଦେଖି ଆଖପାଖ ପାଞ୍ଚଖଣ୍ଡ

ସାଥିଁର ଲୋକମାନେ ବେଶ୍ ପ୍ରଭାବିତ ହେଲେ ଏବଂ ତା'ର ଅଦ୍ଭୁତ ଶାସନ କୌଶଳରେ ଲୋକମାନଙ୍କ ଆଖି ଖୋଲି ହୋଇଗଲା ।"

ଫଲ୍‌ମନ୍‌ର ଦୁର୍ଦ୍ଦାନ୍ତ ବିକ୍ରମ ବିଷୟରେ ବର୍ଣ୍ଣନା କରୁ କରୁ ହଠାତ୍ ଆନା କିଛି ସମୟ ନୀରବ ହୋଇଯାଇ ପୁଣି କହିଲା—"ମେଘ, ଯେତେବେଳେ ମୋ' ବାପାଙ୍କ ଅବସ୍ଥା ତମଶାର କୁହୁଡ଼ି ଗିଳିବା ପରି ହୋଇଗଲା ।"

ମୈତ୍ରେୟୀ କଥାରେ ବାଧାଦେଇ କହିଲା—"ଏ' କ'ଣ କହୁଛ ଦିଦି !"

"ମୋ' ବାପା ଅତ୍ୟନ୍ତ ସରଳ ଓ ସତ୍ ପ୍ରକୃତିର ଲୋକ ଥିଲେ । କିନ୍ତୁ ତାଙ୍କର ପ୍ରେୟସୀମାନେ ବାପାଙ୍କୁ ପୁରାପୁରି ଅଧିକାର କରିନେଇଥିଲେ । ତା'ର ପ୍ରଣୟ ବନ୍ଧନରେ ବନ୍ଦୀ ହୋଇ ବାପା ନିଜର ବିଶାଳ ଭୂସମ୍ପତ୍ତି ଅଡ଼କୁ ଅଡ଼ ଆଖିରେ ଦେଖିବାକୁ ସମୟ ପାଉନଥିଲେ । ସବୁବେଳେ ତାଙ୍କୁ ଖୁସି କରିବା ପାଇଁ ବାପା କଲିକତା, ଲକ୍ଷ୍ନୌ, ସିମଲା ଆଦି ଭାରତର ବଡ଼ ବଡ଼ ସହରରେ ଘୂରିବୁଲିଲେ । ଏଣେ ଆମ ନାଏବବାବୁ ଫଲ୍‌ମନ୍‌ର କାରସାଦି ବିଷୟରେ ବାପାଙ୍କୁ ଗୋପନରେ ଚିଠି ଲେଖି ଜଣାଇଦେଲେ ।

"ଅବଶ୍ୟ ବୁଦ୍ଧିମାନ୍ ଫଲ୍‌ମନ୍ ଏଦ୍ୱାରା ପ୍ରତ୍ୟକ୍ଷ ପ୍ରମାଣ ପାଇପାରିଲା ନାହିଁ ସତ; କିନ୍ତୁ ସେଇ ପ୍ରକାର କିଛି ଅନୁମାନ କରି ସେ ତା'ର କୌଶଳ ପଦ୍ଧତି ବାପାଙ୍କ ମନଲୁଚି କରି ବଦଳାଇଦେଲା । ବାପାଙ୍କର ଭ୍ରମଣ ସମୟରେ ଯେତେ ଟଙ୍କା ଦରକାର, ତା'ଠାରୁ ଅନେକ ବେଶୀ ଟଙ୍କା ସେ ତାଙ୍କୁ ପଠାଇବାକୁ ଲାଗିଲା । ସେ ଭଲଭାବରେ ଜାଣିଥିଲା, ପ୍ରେମର ପ୍ରଥମ ଅବସ୍ଥାରେ ମଣିଷର ଦରକାର ପ୍ରଚୁର ଅର୍ଥ । ତେଣୁ ବାପାଙ୍କର ଅବସ୍ଥାକୁ ସେ ବେଶ୍ ଅନୁମାନ କରିନେଇ, ସେ ତାଙ୍କର ପ୍ରେୟସୀ ଆଗରେ ନିଜର ପାରିଲାପଣିଆ ଦେଖାଇବାରେ ଛାଡ଼ିଲେହେଲେ ପଛାଇଲା ନାହିଁ । ଫଲ୍‌ମନ୍ ପ୍ରଚୁର ଟଙ୍କା ପଠାଇ ମୋ' ବାପାଙ୍କ ହାତକୁ ନିଜ ପ୍ରେୟସୀମାନଙ୍କ ଆଗରେ ଯେପରି ମୁକ୍ତହସ୍ତ କରାଇଦେଲା, ସେଇପରି ତାଙ୍କର ମୁହଁଟିକୁ ମଧ୍ୟ ତା' ବିରୁଦ୍ଧରେ କିଛି କହିବାପାଇଁ ବନ୍ଦ କରିଦେବା କୌଶଳରେ ସଫଳତା ହାସଲ୍ କଲା । ତା' ଫଳରେ ବାପା ଫଲ୍‌ମନ୍‌ର ଚକ୍ରବ୍ୟୂହରେ ପଡ଼ି ପ୍ରଜାମାନଙ୍କ ହାନିଲାଭ, ଦୁଃଖସୁଖ ଓ ଭଲମନ୍ଦ ଆଡ଼୍ ଦୃଷ୍ଟି ଫେରାଇନେଇ ନିଜ ପ୍ରେୟସୀମାନଙ୍କ ଉପରେ ସଂପୂର୍ଣ୍ଣ ନିବଦ୍ଧ କଲେ ।"

ଏଥର କଥା ମଝିରେ ବାଧାଦେଇ ପୁଣି ପଚାରିଲା ମୈତ୍ରେୟୀ—"ଦିଦି, ଯଦି ତୁମେ କିଛି ଅନ୍ୟଥା ନ ଭାବିବ ତେବେ ଗୋଟିଏ କଥା ପଚାରିବି ?"

"ହଁ, ପଚାର ।"—କହିଲା ଆନା ।

"ଅଚ୍ଛା, ସେ ସମୟରେ ତୁମ ବାପା କ'ଣ ତୁମକୁ ଆଗପରି ଭଲପାଉଥିଲେ ?"

ମୈତ୍ରେୟୀର କଥା ଶୁଣି ହସି ହସି କହିଲା ଆନା—"ବାପା ଯଦି ମୋତେ ଭଲ ପାଉନଥା'ନ୍ତେ, ତେବେ ଆଜି ମୁଁ ଏତେ ବଡ଼ ନୀଳକୋଠିର ମାଲିକାଣୀ ହୋଇ ବସିଥା'ନ୍ତି କିପରି ? ଅବଶ୍ୟ ବାପା ନିଜର ଜନ୍ମଭୂମି ସ୍କଟ୍‌ଲାଣ୍ଡକୁ ଫେରିଯିବା ବେଳେ ପ୍ରଚୁର ଟଙ୍କା ନେଇଯାଇଛନ୍ତି । ଅବଶିଷ୍ଟ ଏଠାର ସମସ୍ତ ସମ୍ପତ୍ତି ମୋ' ନାମରେ ଉଇଲ୍ କରି

ଦେଇଛନ୍ତି ।'' ଟିକିଏ ନୀରବ ରହିବା ପରେ ପୁଣି କହିଲା ଅନା—''ମୁଁ ପ୍ରଥମେ ପ୍ରଥମେ ବାପାଙ୍କୁ ଭୁଲବୁଝିଥିଲି; କିନ୍ତୁ ମୋର ସେ ଭୁଲ ଧାରଣା ଦୂର ହେବାକୁ ବେଶିଦିନ ଲାଗିଲା ନାହିଁ । କେତେଦିନ ପରେ ବାପା ତାଙ୍କ ପ୍ରେମିକା ସହିତ କୋଠିକୁ ଫେରିଆସିଲେ । ତା' ପରେ ପରେ କେତେଦିନ ଧରି ସେ ମେନେଜର ଫାଲ୍‌ମନ୍ ସହିତ ଗୋପନରେ କ'ଣ ସବୁ ଆଲୋଚନା କଲେ, ଅବଶ୍ୟ ସେ ବିଷୟରେ ମୁଁ କିଛି ଜାଣେନି । ଶେଷରେ ଦିନେ ମୁଁ ଜାଣିବାକୁ ପାଇଲି—ସେ ଫାଲମନ୍‌କୁ ଆମ କୋଠିର ମେନେଜର୍ ପଦରୁ ବିଦାୟ ଦେବାକୁ ଯାଉଛନ୍ତି । ତାହାଙ୍କୁ ଗୋଟିଏ ନୂଆକରି ନୀଳକୋଠି ତିଆରି କରିବାପାଇଁ ପ୍ରଚୁର ଟଙ୍କା ଦେଇ ବିଦାୟ କରିଦେଲେ—ଅବଶ୍ୟ ଏହାକୁ ବିଦାୟ ନକହି ଆତ୍ମରକ୍ଷା ବୋଲି କହିଲେ ଠିକ୍ ହେବ ।''

''ଏହାପରେ ବାପା ଦିନେ ମୋତେ ଡାକି ଏକାନ୍ତରେ ମୋର ମତାମତ ଜାଣିବାକୁ ପଚାରିଲେ—''ବର୍ତ୍ତମାନ ମୁଁ ଗୋଟିଏ ଜଣ୍ଡିରେ ପଡ଼ିଅଛି । ତୋ' ନିକଟରେ ଦୁଇଟି ପଥ ଖୋଲିରହିଛି—ତୁ ମୋ' ସହିତ ଆମ ଦେଶକୁ ଫେରିଯାଇପାରୁ କିମ୍ବା ଏଇଠି ରହି ଏ ବିପୁଳ ଜମିଦାରୀର ଦେଖାଶୁଣା କରିପାରୁ ।''

ତା'ପରେ ସେ କହିଲେ—''ତୋର ଏଇଲେ ନିହାତି କଞ୍ଚା ବୟସ; ତଥାପି ତୋ' ବୁଦ୍ଧି, ବିଦ୍ୟା ଓ ଆତ୍ମବଳ ଉପରେ ମୋର ବିଶ୍ବାସ ଅଛି । ତୁ ଏଠି ସ୍ୱଚ୍ଛନ୍ଦରେ ରହିପାରୁ । କିନ୍ତୁ ମୋର ମନେହେଉଛି—ତୋର ଏଇ ନିଃସଙ୍ଗ ଜୀବନ ହୁଏତ ତୋତେ ଭଲ ଲାଗିବ ନାହିଁ । ତୁ ମୋ' ସହିତ ଦେଶକୁ ଫେରିଗଲେ ହୁଏତ ମୁଁ ଖୁବ୍ ଖୁସି ହେବା ସଙ୍ଗେ ସଙ୍ଗେ ନିଶ୍ଚିନ୍ତ ହୋଇପାରନ୍ତି ।''

ବାପାଙ୍କ କଥା ଶୁଣି ମୁଁ ହଠାତ୍ କିଛି ଉତ୍ତର ଦେଇପାରିଲି ନାହିଁ । ବାପା ତା'ପରେ କହିଲେ—ହଠାତ୍ କିଛି ଉତ୍ତର ଆଦାୟ କରିବାକୁ ମୁଁ ଚାହୁଁନାହିଁ । ତୁ କେତେ-ଦିନ ସମୟ ନେଇ ମନେ ମନେ ଭଲ ମନ୍ଦ ଚିନ୍ତାକର । ତା'ପରେ ଉତ୍ତର ଦେବୁ···''

ଏତିକି କହିବାପରେ ଅନା ଉଠିପଡ଼ି କହିଲା—''ମେରି ଆଜି ଏତିକି ଥାଉ, ଆଉଦିନେ ସବୁ କଥା ତୋତେ ବିସ୍ତୃତ ଭାବେ ବୁଝାଇଦେବି । ''

ମୈତ୍ରେୟୀ ଏକ ଆଜ୍ଞାକାରିଣୀ ଶିଷ୍ୟା ପରି ତୁରନ୍ତ ଉପରୁ ଉଠି ଅନାର ଅନୁସରଣ କରି ତଳକୁ ଚାଲିଗଲା ।

( ଏଗାର )

ଏହା ଭିତରେ ଦୁଇ ତିନିଦିନ ବିତିଗଲା । ଅନା ନୀଳକୋଠି କାମରେ ଖୁବ୍ ବ୍ୟସ୍ତ ରହିଲା । ମୈତ୍ରେୟୀର ପ୍ରବଳ ଆଗ୍ରହ ଥିଲେ ମଧ୍ୟ ସେଦିନର ଅସମାପ୍ତ କାହାଣୀ ସମ୍ବନ୍ଧରେ

ସେ କିଛି ହେଲେ ମୁହଁ ଖୋଲିଲା ନାହିଁ ।

ଦିନେ ନିର୍ମଳ ଆକାଶରେ ତାରାଭରା ରାତ୍ରିର ପ୍ରଥମ ପ୍ରହରରେ ମୈତ୍ରେୟୀର ହାତ ଧରି ଆନା ଛାତ ଉପରକୁ ଉଠିଯାଇ ପାରାପେଟ୍‌ର ଗୋଟିଏ କୋଣରେ ବସିଲା । ସୁବର୍ଣ୍ଣରେଖା ନଦୀ ବକ୍ଷରୁ ମାଝୀମାନଙ୍କ ମନମତାଣିଆ ସଙ୍ଗୀତ ଭାସିଆସି ରାତ୍ରିର ନିସ୍ତବ୍ଧତାକୁ ଆନ୍ଦୋଳିତ କରୁଥିଲା । ନଦୀର ପ୍ରବହମାନ ସ୍ରୋତକୁ ଛୁଇଁ ଛୁଇଁ ବହିଆସୁଥିବା ମୃଦୁମନ୍ଦ ପବନ ଛାତ ଉପରର ବାତାବରଣକୁ ବେଶ୍ ସାନ୍ଦ୍ର ଓ ଶୀତଳ କରିଦେଇଥିଲା ।

ସେ ମୈତ୍ରେୟୀର ହାତ ଧରି ତାକୁ ନିଜ ପାଖରେ ବସାଇ କହିଲା—"ମେତ୍ରି, ମୁଁ ଜାଣେ ଯେ ସେ ଦିନର ଅସମାପ୍ତ କାହାଣୀ ଶୁଣିବାପାଇଁ ତୋ' ମନରେ ନିଶ୍ଚୟ ଖୁବ୍ କୌତୂହଳ ଜାଗିଥିବ; କିନ୍ତୁ ଜମିଦାରୀର ହାଲଚାଲ ଟିକିଏ ମନଦେଇ ନ ବୁଝିଲେ ତାହା ପୁଣି ଅଡୁଆ ସୂତା ଖିଅପରି ସହଜରେ ଧରାପଡ଼ିବ ନାହିଁ ଯେ…"

ଆନାର ସ୍ନେହ, ଆଦର ଓ ଅକପଟ ବ୍ୟବହାରରେ ମୈତ୍ରେୟୀ ବିମୁଗ୍ଧ ହୋଇଯାଇଥିଲା । ସେ ଆନାର କଥାରେ ବାଧାଦେଇ କହିଲା—"ଦିଦି, ତୁମେ ଏ' କ'ଣ କହୁଛ ? ଅବଶ୍ୟ ସେଦିନର କଥାଗୁଡ଼ିକ ଶୁଣିବାପାଇଁ ମୋ' ମନରେ ଯେ ଆଗ୍ରହ ଜାତ ହୋଇନି ତା' ନୁହେଁ; କିନ୍ତୁ ତୁମର ଗୁରୁଦାୟିତ୍ୱ ତୁଳନାରେ ମୋର ଆଗ୍ରହ ସେତେ ମହତ୍ତ୍ୱପୂର୍ଣ୍ଣ ନୁହେଁ । ମୁଁ ସେଇଥିପାଇଁ ତୁମ କର୍ତ୍ତବ୍ୟରେ ବାଧାଦେଇନାହିଁ ।"

"ହେଉ, ଶୁଣ…" କହିଲା ଆନା—ବାପାଙ୍କ ମୁହଁରୁ ମୋ ଭାଗ୍ୟ ନିଷ୍ପତ୍ତିର ପ୍ରଶ୍ନ ଶୁଣି ମୁଁ ସେଦିନ ରାତ୍ରିଟି ବହୁ କଷ୍ଟରେ କଟାଇଲି । ଆଖିକୁ ଆଦୌ ନିଦ ଆସିଲା ନାହିଁ । କେତେ ବେଳ ପରେ ହଠାତ୍ ମୋ' ଛାଇନିଦ ଭାଙ୍ଗିଗଲା । ମୁଁ ଅସ୍ଥିର ମନରେ ଉଠି ବିଛଣାରେ ବସି-ପଡ଼ିଲି । ହଠାତ୍ ମୋର ଦୃଷ୍ଟି ପଡ଼ିଲା ମୋ' ମାଆଙ୍କ ଫଟୋ ଉପରେ । ଫଟୋଟିର ଠିକ୍ ମୁହଁ ଉପରେ ଘରର ଜାଲିଦାର ଜଳାକବାଟି ଦେଇ ଚେନାଏ ହେବ ଜହ୍ନ ଆଲୁଅ ବିଛି-ହୋଇ ପଡ଼ିଛି । ମାଆଙ୍କର ମୁହଁଟି ସେଇ ଛବି ମାଧ୍ୟମରେ ମୋ ମାନସପଟରେ ଅଙ୍କି ହୋଇଗଲା । ଗୋଟି ଗୋଟି ହୋଇ ତାଙ୍କର ସମସ୍ତ ସ୍ନେହ ଭାସିଉଠିଲା ମୋ ଆଖି ଆଗରେ । ଏଇ ନଦୀ, ବଣ, ପାହାଡ଼ ଓ ପ୍ରକୃତିର ଅପରୂପ ଶୋଭାକୁ ସେ ଦିନେ ମନଭରି ଦେଖୁଥିଲେ । ତାଙ୍କର ଏକଲ ଆନନ୍ଦ ଅନୁଭୂତିର ସୁଖଦ ସ୍ପର୍ଶ ପାଇଛନ୍ତି ମୋ' ବାପା । କର୍ମକ୍ଷେତ୍ରରୁ କ୍ଳାନ୍ତ ହୋଇ ବାପା ଘରକୁ ଫେରିଆସିବାମାତ୍ରେ, ତୁମରି ଏଇ ଦେଶର ଅଜ୍ଞାକାରିଣୀ ପତିପରାୟଣା ନାରୀମାନଙ୍କ ପରି, ମାଆ ହାତରେ ବିଞ୍ଚଣାଟିଏ ଧରି ତାଙ୍କୁ ବିଞ୍ଚି ଦିଅନ୍ତି । ସେ ଚାକରମାନଙ୍କ ଉପରେ ବିଶେଷ ନିର୍ଭର ନକରି, ସ୍ୱାମୀସେବାରେ ନିଜେ ଲାଗିପଡ଼ନ୍ତି । ଏ' ପର୍ଯ୍ୟନ୍ତ କାରୁକାର୍ଯ୍ୟ-ପୂର୍ଣ୍ଣ ଗୋଟିଏ ସୁନ୍ଦର ପଙ୍ଖା ଆଲମିରାରେ ମୁଁ ସାଇତି ରଖିଛି । ସେଥିରେ ବୋଳାହୋଇ ରହିଛି ମୋ' ସେବାମୟୀ ମାଆଙ୍କ ହାତର ସୁକୋମଳ ସ୍ପର୍ଶ ।

ମୁଁ ହଠାତ୍ ବିଛଣାରୁ ଉଠିପଡ଼ି ଝରକା ପାଖରେ ଯାଇ ଛିଡ଼ାହୋଇ ବଗିଚା ଅଡ଼କୁ ଏକଲୟରେ ଚାହିଁରହିଲି । ମୋ' ମାଆ ନିଜ ହାତରେ ଲଗାଇଥିବା ଚମ୍ପା ଗଛଟିରେ ଅଜସ୍ର

ଫୁଲ ଫୁଟି ଚନ୍ଦ୍ରକିରଣରେ ସ୍ୱର୍ଗୀମ ଆଭା ଝଲସାଇ ଦେଉଛି । ସେଥିରୁ ଝରିଆସୁଛି ମୃଦୁମନ୍ଦ ସମୀରଣରେ ସୁଗନ୍ଧିତ ଆମୋଦ । ମୁଁ ଘ୍ରାଣଭରି ସେଇ ସୁଗନ୍ଧକୁ ଆଘ୍ରାଣ କଲି । ସେଇଠି ଛିଡ଼ାହୋଇ ମୁଁ ଉଦ୍ୟାନର ସ୍ନିଗ୍ଧ ତଥା ସୁଶୀତଳ ପରିବେଶକୁ ଏକଧ୍ୟାନରେ ଅନାଇ ରହିଲି । ମୋ' ମାଆଙ୍କର ସ୍ମୃତିବିଜଡ଼ିତ ଉଦ୍ୟାନର ସେଇ ପ୍ରଶାନ୍ତ ବାତାବରଣକୁ ଅପଲକ ନେତ୍ରରେ ନିହାରୁଥିବାବେଳେ ମୋ' ଆଖିରୁ ଦୁଇଧାର ତାତଲ ଲୁହ ଝରିପଡ଼ିଲା । ତା'ପରେ ମୋ' ଆଖି ଝଲସାଇ ଦେଲା — ବଗିଚାର ଗୋଟିଏ ପ୍ରାନ୍ତରେ ଏକ କାମିନୀ ଗଛ ତଳେ, ଝଲମଲ୍‌ମଲ୍ ପଥରରେ ନିର୍ମିତ ମୋ ମାଆଙ୍କ କବର । ସେଇ ମୁହୂର୍ତ୍ତରେ ମାଆଙ୍କ କବର ପାଖକୁ ସ୍ମୃତି ବେଦନାରେ ବ୍ୟାକୁଳ ହୋଇଉଠି, ମୁଁ ସେଇ ମୁହୂର୍ତ୍ତରେ ଗୁଣୁଗୁଣୁ ହୋଇ କହିଲି—'ତୋତେ ଏଠି ଛାଡ଼ିଦେଇ ମୁଁ କେଉଁଆଡ଼େ ହେଲେ ଯିବିନି ମାଆ ! ମୁଁ ତୋ'ର ପାଖେ ପାଖେ ସବୁଦିନେ ରହି ତୋତେ ସ୍ମରଣ କରିବା ସଙ୍ଗେ ସଙ୍ଗେ ତୋ' ସ୍ମୃତି ଝୁରି-ହେଉଥିବି ।'

ଏହା କହିବା ସମୟରେ ଅନାର କଣ୍ଠସ୍ୱର ବ୍ୟାକୁଳ ହେବାପରି ଶୁଣାଗଲା । ସେ ଗଦ୍‌ଗଦ କଣ୍ଠରେ କହିଲା—"ମେଷ୍ଟ, ପରଦିନ ମୁଁ ବାପାଙ୍କୁ ମୋ ସିଦ୍ଧାନ୍ତ ଜଣାଇଦେଲି । ବାପା ମୋ' ମୁହଁକୁ ନିହାରିରହି କିଛି ସମୟ ଗୁମ୍‌ମାରି ବସିଗଲେ ଏବଂ ତା'ପରେ ସେ ତାଙ୍କ ଆଲ୍‌ମିରାରୁ ଖଣ୍ଡିଏ 'ଉଇଲ୍' ଆଣି ମୋ ହାତକୁ ବଢ଼ାଇଦେଇ କହିଲେ—ମୁଁ ଜାଣେ ଅନା, ତୋ' ହାତରେ ମୋର ଏଇ ବିସ୍ତୀର୍ଣ୍ଣ ଜମିଦାରୀଟି ସୁରକ୍ଷିତ ହୋଇ ରହିବ । ସ୍ୱଦେଶକୁ ଫେରିଯିବା ବେଳେ ମୁଁ ଶାନ୍ତିରେ ନିଃଶ୍ୱାସଟିଏ ମାରି ନିଶ୍ଚିନ୍ତରେ ଯାଇପାରିବି । ମୋର ଏ ଧାରଣା ଦୃଢ଼ ହୋଇଛି ଯେ, ତୁ ଏଇ ମହଲକୋଠି ଓ ତା'ର ବିପୁଳ ସମ୍ପତ୍ତିର ଗୁରୁଦାୟିତ୍ୱ ମୁଣ୍ଡାଇ ପାରିବୁ । ଯଦି କୌଣସି ଦିନ ଆମ ପାଖକୁ ଫେରିଯିବା ଲାଗି ତୋ' ଇଚ୍ଛା ହେବ, ସେ ପଥ ତୋ' ପାଇଁ ମଧ୍ୟ ଉନ୍ମୁକ୍ତ ରହିଲା···।

ସତରେ ମେଷ୍ଟ, ବାପା ଆଉ କିଛି କହିପାରିଲେ ନାହିଁ । ମୁଁ ବେଶ୍ ଲକ୍ଷ୍ୟ କରିଛି— ବାପାଙ୍କ ଆଖି ଦୁଇଟି ଲୁହ ଛଳଛଳ ହୋଇଯାଇଥିଲା ।

ମୈତ୍ରେୟୀର ମନଟା ଭାରାକ୍ରାନ୍ତ ହୋଇଉଠିଲା । ସେ ତାଙ୍କ ଗାଁର କେତେ ବାପାଙ୍କ କାହାଣୀ ଶୁଣିଥିଲା, ଯେଉଁମାନେ କନ୍ୟାମାଆର କଥାରେ ପଡ଼ି ଆଗ ସ୍ତ୍ରୀର ପିଲାପିଲିଙ୍କୁ କେତେ କ'ଣ ଅତ୍ୟାଚାର କରନ୍ତି । ତେଣୁ ଅନାର ବାପାଙ୍କ ବ୍ୟବହାରରେ ସେ ଆଶ୍ଚର୍ଯ୍ୟ ହୋଇଯାଇ କହିଲା—"ସତେ, ତୁମ କଥା ଶୁଣି ମୋର ମନେହେଉଛି କେଡ଼େ ଉଦାର ଥିଲେ ତୁମ ବାପା ! ତାଙ୍କୁ ଥରେ ଦେଖିପାରନ୍ତି କି ?"

"କିନ୍ତୁ ମୋ' ବାପା ତାଙ୍କ ନିଜର ଆନନ୍ଦ ପାଇଁ ପୁଣିଥରେ ନୂତନ ଜୀବନସଙ୍ଗିନୀ ବାଛିନେଇ ଥିବାରୁ ମୁଁ ଆଦୌ ଦୁଃଖିତ ହୋଇନି । ତୁମ ମୁଲକରେ ଯେତେ ନୀଳକର ସାହେବ ଅଛନ୍ତି, ସେମାନଙ୍କ ମଧ୍ୟରେ ମୋ' ବାପା ଥିଲେ ଅତ୍ୟନ୍ତ ଉଦାର । ପ୍ରଜାମାନଙ୍କର ସୁଖ ସୁବିଧା ପାଇଁ ସେ ସଦାସର୍ବଦା ଚେଷ୍ଟା କରୁଥିଲେ । ନିଜର ଉଦ୍ଦେଶ୍ୟ ସିଦ୍ଧି ପାଇଁ ସେ

କାହାର ଯେତେହେଲେ ଅନିଷ୍ଟ କରିବାକୁ ମନରେ କଳ୍ପନା ସୁଦ୍ଧା କରୁନଥିଲେ । ତାଙ୍କର ସେଇ ଭଲ ଗୁଣ ପାଇଁ ମୁଁ ତାଙ୍କୁ ଅତ୍ୟନ୍ତ ଶ୍ରଦ୍ଧାକରେ ଏବଂ ତାଙ୍କ ପ୍ରତି ମୋର ଶ୍ରଦ୍ଧା ଓ ଭକ୍ତି ସାରା ଜୀବନ ଅତୁଟ ରହିବ ।''

ଏହାପରେ ଦୁହେଁ ନୀରବ ହୋଇ ବସିରହିଲେ ଅନେକ ସମୟ ପର୍ଯ୍ୟନ୍ତ ସୁବର୍ଣ୍ଣରେଖାର ଜଳଧାର ଅଡ଼କୁ ଅପଲକ ଦୃଷ୍ଟିରେ ଚାହିଁରହି । ନଦୀର ଜଳଧାରା ଉପରେ ଚନ୍ଦ୍ରର ରୌପ୍ୟ କିରଣ ପଡ଼ି ତାହା ଝଲମଲ୍ ଦିଶୁଥିଲା···ଯେତେ ଅବା ଶତ ଶତ ମୂଲ୍ୟର ଏକାଠି ନଦୀ ଉପରେ କେହି ବିଛାଇଦେଇଛି ।

ଆନା ଝିଲ୍‌ମିଲ୍ କରୁଥିବା ସେଇ ନଈଧାର ଅଡ଼କୁ ଏକଧ୍ୟାନରେ କେତେ ସମୟ ଚାହିଁ-ରହିବାପରେ କହିଲା—''ହଁ ମେଖ୍ରୀ, ଆମେ ମୂଳକାହାଣୀଠାରୁ ବେଶିଦୂର ଆଗେଇ ଆସିଲେଣି । ମୁଁ ଆରମ୍ଭ କରିଥିଲି—ଫଲ୍‌ମନ୍‌ର କ୍ରୂର ପ୍ରବୃତ୍ତି ବିଷୟରେ କିଛି ଶୁଣାଇବି ବୋଲି । କିନ୍ତୁ ସେ କଥାକୁ କେଉଁଠି ଛାଡ଼ିଦେଇ ନିଜ କଥା ଆରମ୍ଭ କରିଦେଲି ।''

''ହିଁ···ହେଲା କ'ଣ ? କିଛି ବାଜେ କଥା ତ କହିନ ! ବରଂ ନିଜର ଅଙ୍ଗେ-ନିଭେଇଥିବା କଥାଗୁଡ଼ିକୁ ଆଜି ଅନେ ମୋ ଆଗରେ ଦୋହରାଇଦେଇଛ । କୁହ, ତା'ପରେ···?''—ପଚାରିଲା ମୈତ୍ରେୟୀ ।

ଆନା ସେଇ ସଇତାନ୍ ଫଲ୍‌ମନ୍ କଥା ଶୁଣାଇବାକୁ ଯାଇ କହିଲା—''ସତରେ ମେଖ୍ରୀ, ମୁଁ ମଧ୍ୟ ତାକୁ ଆପଣା ମନଲାଖି ସାଥିଟିଏ ବୋଲି ଭାବିନେଇଥିଲି । ତେଣୁ ଆମ ଦୁହିଁଙ୍କ ମଧ୍ୟରେ କ୍ରମେ ବେଶ୍ ଘନିଷ୍ଠତା ଗଢ଼ିଉଠିଥିଲା । ସେଇ ଘନିଷ୍ଠତା ଫଳରେ ମୁଁ ତା'ର ବ୍ୟକ୍ତିଗତ ଜୀବନ ସମ୍ବନ୍ଧରେ ଅନେକ କିଛି ଜାଣିବାର ସୁଯୋଗ ପାଇଲି ।''

ମୈତ୍ରେୟୀ କାନପାରି ଶୁଣିବାରେ ମଗ୍ନ ହୋଇଯାଇଥିଲା—ସେଇ ବିଷପଟାର କୁ-କୃତ୍ୟପୂର୍ଣ୍ଣ କାହାଣୀ । ଆନା କହିଚାଲିଲା ତା'ର ଅଙ୍ଗେ ନିଭେଇଥିବା ସେଇ କଥାଗୁଡ଼ିକ —''ତୁ ମୋତେ ପଚାରିବୁନି ମେଖ୍ରୀ, ଆମେ କାହିଁକି ପରସ୍ପର ପ୍ରତି ଘନିଷ୍ଠ ହୋଇଉଠିଲୁ । ତେବେ ଏତିକି ମନେରଖ, ଜଣେ ତରୁଣ ଗୋଟିଏ ତରୁଣୀକୁ ହାତପାହାନ୍ତାରେ ପାଇଲେ ଅତିରେ ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା ଗଢ଼ିଯିବା ସ୍ୱାଭାବିକ ।

''ମୁଁ ପ୍ରଥମେ ପ୍ରଥମେ ଫଲ୍‌ମନ୍ ପ୍ରତି ଅତ୍ୟନ୍ତ ସହାନୁଭୂତିଶୀଳ ହୋଇଉଠିଥିଲି । ସେ ତାହାର ହାତଟା ହରାଇଥିଲେ ସୁଦ୍ଧା ବାଆଁ ହାତରେ କିପରି ଅଶ୍ୱାରୋହଣ ଧରିବାର ବନ୍ଧୁକ ଓ ତରବାରି ଚଳାଇ ପାରୁଥିଲା ତାହାହିଁ ମୋତେ ବିସ୍ମିତ କରିଥିଲା । ତା'ପରେ ଗୋଟିଏ ଦିନର ଘଟଣା ପରେ ମୁଁ ତା' ଅଡ଼କୁ ଟିକିଏ ଅଧିକ ଝୁଙ୍କି ପଡ଼ିଲି ।''

ଆନା କହୁ କହୁ ନୀରବ ହୋଇଯାଇ ଓଠ ଫାଙ୍କରେ ଟିକିଏ ସଲଜ୍ଜ ହସ ଖେଳାଇଦେଇ ଚାହିଁରହିଲା ମୈତ୍ରେୟୀକୁ । ତା'ପରେ ସେ କହିଲା—''ତୁ ବୋଧହୁଏ ଭାବୁଥିବୁ ମୁଁ ଏତେ ସହଜରେ କିପରି ଲୋକଟା ଆଡ଼କୁ ଆଗେଇଯାଇଥିଲି—ନୁହେଁ କି ?''

''ନା···ଦେଖ, ମୁଁ ତୁମ ବିଷୟରେ ଜାଣିଥିଲେ ହେଲେ କିଛି ଭାବୁନାହିଁ । ମୁଁ କେବଳ ତୁମ ମୁହଁରୁ ଘଟଣାଗୁଡ଼ିକ ଶୁଣିବା ପାଇଁ କାନପାରି ବସିରହିଛି ।''

"ହେଉ, ଶୁଣ ତା'ହେଲେ ସେଦିନର ଘଟଣାଟି ମନେଦେଇ।" ଥିଲା ଟିକିଏ ଭଲ ଭାବରେ ବସି ଆରମ୍ଭକଲା—"ଆମ ଖ୍ରୀଷ୍ଟିୟାନ୍ ପରିବାର ପକ୍ଷରେ ବଡ଼ଦିନଟି ଗୋଟିଏ ସ୍ମରଣୀୟ ଉତ୍ସବ। ଆମେ ବର୍ଷଯାକ ଯେଉଁ ପ୍ରକାର ବ୍ୟସ୍ତମୟ ଜୀବନ ବିତାଉଥିଲେ ହେଁ, ସେଇ କେତୋଟି ଦିନ ବେଶ୍ ମଉଜ ମଜଲିସ୍‌ରେ ବିତାଇଦେଉ। ଆମ ସମ୍ପ୍ରଦାୟର ଆଖପାଖର ଲୋକମାନେ ଆସି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ସମବେତ ହୁଅନ୍ତି। ନାନା ପ୍ରକାର ଆମୋଦ-ପ୍ରମୋଦ ଓ ଖିଆପିଆ ସହିତ ନାଚ ଗାନ ବି ଚାଲେ ଖୁବ୍ ଧୁମ୍‌ଧାମରେ। ଏହି ଉତ୍ସବ ସହିତ ମୋ' ବାପା ଆଉ ଗୋଟିଏ ଅନୁଷ୍ଠାନ ସେଇ ସମୟରେ ଆରମ୍ଭ କରାଇଥିଲେ ଏବଂ ସେ ଏଠାରୁ ଚାଲିଯିବା ପରେ ସେ ଉତ୍ସବର ଆୟୋଜନରେ ପୂର୍ଣ୍ଣଚ୍ଛେଦ ପଡ଼ିଲା। ସେ ଅନୁଷ୍ଠାନଟି ହେଉଛି ଘୋଡ଼ାଦୌଡ଼ ପ୍ରତିଯୋଗିତା। ଏଇ ଯେଉଁ ଦୂର ପାହାଡ଼ଟି ଦେଖୁଛ, ତା'ର ପାଦଦେଶରେ ଥିବା ଗୋଟିଏ ଶାଳଗଛର ଶାଖାରେ ଗୋଟିଏ ଥଳି ଝୁଲି ଯାଇଥାଏ। ତା' ଭିତରେ କିଛି ରୁପାଟଙ୍କା ଓ କିଛି ସ୍ୱର୍ଣ୍ଣମୁଦ୍ରା ରହିଥାଏ। ଅବଶ୍ୟ ସୁନା ରୁପାର ମୁଦ୍ରା ପ୍ରତିଯୋଗୀମାନଙ୍କୁ ଖୁବ୍ ଆକୃଷ୍ଟ କରାଏ। ସୁବର୍ଣ୍ଣରେଖାର ସେପଟରେ ଥିବା ଖୋଲା ପଡ଼ିଆରେ ପ୍ରତିଯୋଗୀ ଅଶ୍ୱାରୋହୀ ଦଳ ଘୋଡ଼ାରେ ବସି ଅପେକ୍ଷା କରିଥାଆନ୍ତି। ବନ୍ଧୁକର ଶବ୍ଦ ଶୁଣିବା ମାତ୍ରେ ସେମାନେ ଆରମ୍ଭ କରିଦିଅନ୍ତି ଘୋଡ଼ା ଦଉଡ଼। ଯେଉଁ ଘୋଡ଼ସବାର୍ ଆଗେ ଯାଇ ସେ ଟଙ୍କା ଥଳିଟିକୁ ଡାଳରୁ କାଟି ଆଣି ପୁଣି ଆସି ଘୋଡ଼ା ଦଉଡ଼ ଆରମ୍ଭ ହୋଇଥିବା ସ୍ଥାନରେ ପହଞ୍ଚିଯାଏ, ତାକୁ ହିଁ ବିଜୟୀ ବୋଲି ଘୋଷଣା କରାଯାଏ। ତା' ସଙ୍ଗେ ସଙ୍ଗେ ସେଠାରେ ଛିଡ଼ାହୋଇଥିବା ଦେଖଣାହାରୀଙ୍କ ମନକୁ ସେ ମଧ୍ୟ ଆପଣାଛାଏଁ କିଣିନିଏ। ବିଶେଷତଃ କୁଆଁରୀ ଝିଅମାନେ ଶକ୍ତିଶାଳୀ ପୁରୁଷକୁ ହିଁ ଭଲପାଇଥାଆନ୍ତି।"

"ହିଁ, ମୁଁ ଯେଉଁ ଘୋଡ଼ାଦୌଡ଼ କଥା କହୁଛି, ତାହା ସାଧାରଣ ଖେଳଘର କଥା ନଥିଲା। ସେଇ ଆବୁଡ଼ାଖାବୁଡ଼ା ପଥୁରିଆ ପଡ଼ିଆରେ ଘୋଡ଼ା ଛୁଟେଇ ତୀବ୍ର ବେଗରେ ଦୌଡ଼ିବା ଅତି କଷ୍ଟସାଧ୍ୟ କାମ।

"ଏଇ ଘୋଡ଼ାଦୌଡ଼କୁ କେନ୍ଦ୍ରକରି ନୀଳକୋଠି ସାହେବମାନଙ୍କ ଭିତରେ ଗୋଟିଏ ପ୍ରଚ୍ଛନ୍ନ ଶକ୍ତି ପରୀକ୍ଷା ମଧ୍ୟ ହୋଇଯାଏ। ଏ ଅଞ୍ଚଳର ସମସ୍ତ ନୀଳକୋଠି ମାଲିକ, ତାଙ୍କର ଜଣେ ଜଣେ ପ୍ରତିନିଧି ଏଇ ଘୋଡ଼ାଦୌଡ଼କୁ ପଠାନ୍ତି। ସେହି ପ୍ରତିନିଧିର ବିଜୟକୁ ସେମାନେ ନିଜ ନୀଳକୋଠିର ବିଜୟ ବୋଲି ଧରିନିଅନ୍ତି।"

"ଫର୍ଗୁସନ୍ ସାହେବଙ୍କ ନୀଳକୋଠି ପକ୍ଷରୁ ହୋସେନ୍ ଖାଁ ନାମରେ ଜଣେ ବଳିଷ୍ଠ ମୁସଲମାନ ଯୁବକ ସେଇ ପ୍ରତିଯୋଗିତାରେ ଯୋଗଦିଅନ୍ତି। ପ୍ରାୟ ପ୍ରତିବର୍ଷ ସେହି ସୁଦର୍ଶନ ବଳିଷ୍ଠ ଯୁବକ ଜଣକ ପ୍ରତିଯୋଗିତାରେ ବିଜୟୀ ହୁଅନ୍ତି। କେବଳ ଏଇ ଅଞ୍ଚଳ ମଧ୍ୟରେ ନୁହେଁ, ଦୂର ଦୂର ସ୍ଥାନରୁ ମଧ୍ୟ ପ୍ରତିଯୋଗୀମାନେ ଆସି ଏଥିରେ ଯୋଗଦେବାକୁ ଲାଗିଲେ। ଧୀରେ ଧୀରେ ପ୍ରତିବର୍ଷ ଏ ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା। ଏହି ଘୋଡ଼ାଦୌଡ଼ର ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ବହୁ ପ୍ରତିଯୋଗୀ ଆସି ସେଇ ପଡ଼ିଆରେ ଅଭ୍ୟାସ ଆରମ୍ଭ କରିଦିଅନ୍ତି। ସେହି

ଘନ ଆମ କୋଠିର ହଲ୍‌ଟିକୁ ନାନାଭାବରେ ସଜାଯାଇଥାଏ । ନାନାରଙ୍ଗର ଫୁଲ ଓ ପତ୍ରରେ ଆମ କୋଠିଟି ଗୋଟିଏ ନବବଧୂର ପାଲଙ୍କ ପରି ସଜ୍ଜିତ ହେଲାପରି ଦେଖାଯାଏ । ନିମନ୍ତ୍ରିତ ଅତିଥି-ଅଭ୍ୟାଗତଙ୍କ ଭିଡ଼ରେ ଆମ କୋଠିଟି ସରଗରମ ହୋଇଉଠେ । ସ୍ୱକର-ବାକର, ସିପାହି, ମଜୁରିଆମାନେ ମଧ୍ୟ ଚକମକିଆ ପୋଷାକ ପିନ୍ଧି ନିଜନିଜକୁ ସଜେଇ ନେଇ ଅନୁଷ୍ଠାନର ଶୋଭା ବର୍ଦ୍ଧନ କରନ୍ତି । ସମସ୍ତ ପ୍ରକାର ଆଡ଼ମ୍ବରପୂର୍ଣ୍ଣ କାର୍ଯ୍ୟ ପରେ ଆରମ୍ଭହୁଏ ସବୁଠାରୁ ଉତ୍ତେଜନାପୂର୍ଣ୍ଣ ଘୋଡ଼ାଦୌଡ଼ ପ୍ରତିଯୋଗିତା ।

ସେ ଥର ଆମ ନୀଲକୋଠି ପକ୍ଷରୁ ପ୍ରତିଯୋଗିତାରେ ଭାଗ ନେବାପାଇଁ ଆଗେଇଆସିଲା ଫଲ୍‌ମନ୍ । ତା'ର ଶାରୀରିକ ଅକ୍ଷମତା ଦେଖି ବାପା ତାକୁ ବାରମ୍ବାର ବାରଣକଲେ; କିନ୍ତୁ ବାପାଙ୍କ ବାରଣକୁ ହସରେ ଉଡ଼ାଇଦେଇ ସେ କହିଲା—"ଏ ପର୍ଯ୍ୟନ୍ତ ଆମ ନୀଲକୋଠି କୌଣସିଥର ପ୍ରତିଯୋଗିତାରେ ଜୟଲାଭ କରିନାହିଁ । ଏଥର ମଧ୍ୟ ଜିତିବ ନାହିଁ ବୋଲି ଧରିନିଅନ୍ତୁ । କିନ୍ତୁ ପ୍ରତିଥର ହାରୁଥିବା ଲୋକଙ୍କୁ ପୁଣି ଥରେ ସୁଯୋଗ ଦେବା ଅପେକ୍ଷା, ଜଣେ ନୂଆ ଉତ୍ସାହୀ ଲୋକକୁ ଥରେ ମାତ୍ର ସୁଯୋଗ ଦେବା ଉଚିତ ନୁହେଁ କି ? ଏଥିରେ ଆମର କ୍ଷତି କ'ଣ ?"

ବାପା ଫଲ୍‌ମନ୍‌ର ଉତ୍ସାହ ଦେଖି ତା' ପିଠି ଆପୁଡ଼େଇ ଦେଇ କହିଲେ—"ହଉ, ଈଶ୍ୱର ତୁମର ଗଳାରେ ଜୟମାଳ୍ୟ ପିନ୍ଧାନ୍ତୁ ।" ଆମେ ଜାଣିଛୁ, ହୋସେନ୍ ଖାଁ ପାଖରେ ଦେଶୀ ବିଦେଶୀ ସମସ୍ତ ଘୋଡ଼ସବାର୍ ବରାବର ହାର ମାନି ଆସିଛନ୍ତି, ଏଥର ମଧ୍ୟ ତାହାହିଁ ହେବ । ପ୍ରତିଯୋଗିତା ଆରମ୍ଭ ହେବା ଆଗରୁ ଅନେକ ଲୋକ ନାନାପ୍ରକାର ବାହାଦୁରି ଦେଖାନ୍ତି ସତ; କିନ୍ତୁ ପରିଶେଷରେ ହୋସେନ୍ ଖାଁର ବାହାଦୁରି ଆଗରେ ସମସ୍ତେ ହାର ମାନନ୍ତି ଏବଂ ସେମାନଙ୍କ ଭାଗ୍ୟରେ ପରାଜୟ ହିଁ ଲେଖାଥାଏ ।

ଅନୁଷ୍ଠାନ ଆରମ୍ଭ ହେବା ପୂର୍ବରୁ ଦେଖାଗଲା—ଖଣ୍ଡିଏ ନୀଲବର୍ଣ୍ଣ ସ୍କାର୍ଫରେ ମୁହଁ ଢାଙ୍କି ଗୋଟିଏ କଳାଘୋଡ଼ାରେ ବସିଛି ଫଲ୍‌ମନ୍ । ତା'ର ଆଖି ଦୁଇଟା କେବଳ ଜଳ ଜଳ କରି ବାହାରକୁ ଦେଖାଯାଉଥିଲା ।

"ଅନେକ ପ୍ରତିଯୋଗୀ ଭିନ୍ନ ଭିନ୍ନ ନୀଲକୋଠିରୁ ଆସିଥିଲେ । ଅନ୍ୟଥର ପରି ଏଥର ମଧ୍ୟ ହୋସେନ୍‌ଶାହ ଖଣ୍ଡିଏ କଳାସ୍କାର୍ଫରେ ତା' ମୁହଁଟିକୁ ଘୋଡ଼ାଇ, ତା'ର ଚେଞ୍ଜାସ୍କାନ୍ ଲାଲ୍ ଘୋଡ଼ାଟି ଉପରେ ଜିଣ ଫୁଲେଇ ବସିଥିଲା । ତା' ଘୋଡ଼ାଟି ମଝିରେ ମଝିରେ ହିଃ··· ହିଃ···ହିଃ ହୋଇ ହ୍ରେଷାରବ କରୁଥିଲା ଏବଂ ବେଳେ ବେଳେ ତା'ର ଆଗ ଗୋଡ଼ ଦୁଇଟିକୁ ଉପରକୁ ଉଠାଇ ନିଜ ବ୍ୟଗ୍ରତାର ପରିଚୟ ଦେଉଥିଲା ।

"ହଠାତ୍ ବନ୍ଧୁକ ଶବ୍ଦ ଶୁଣାଗଲା । ତା'ପରେ ମନେହେଲା ସତେ ଅବା ଆଗେ ଆଗେ ଧାଉଁଥିବା କୌଣସି ଗୋଟିଏ ପଶୁକୁ ଧରିବା ପାଇଁ ପଛେ ପଛେ ଗୋଟେ ଚିତାବାଘ ଧାଉଁଛନ୍ତି । ଘୋଡ଼ାଗୁଡ଼ିକ ପ୍ରାଣମୂର୍ଚ୍ଛା ଧାଇଁବାକୁ ଲାଗିଲେ । ସେମାନଙ୍କ ଗୋଡ଼ ସବୁହେଁ ଶୂନ୍ୟରେ ସ୍ଥାପିତ ହେଲାପରି ଆମକୁ ଦେଖାଯାଉଥିଲା ।

କ୍ରମେ ଘୋଡ଼ାଗୁଡ଼ିକ ସେମାନଙ୍କ ସବାରକୁ ନେଇ ଗୋଟିଏ ଗୋଟିଏ ବିନ୍ଦୁରେ ପରିଣତ ହୋଇଗଲେ ଏବଂ ପରେ ପରେ ସମସ୍ତ ଘୋଡ଼ା ଆଖିରୁ ଉଭେଇ ବଣଜଙ୍ଗଲର ବୃକ୍ଷଲତା ମଧ୍ୟରେ ମିଳେଇଗଲେ ।

କେତେ ସମୟ ପରେ, କ୍ୟାନ୍‌ଭାସ୍ ଉପରେ ଶିଳ୍ପୀର ତୂଳୀକାରୁ ଛିଟିକି ପଡ଼ିଥିବା ବିନ୍ଦୁ ବିନ୍ଦୁ ରଙ୍ଗ ପରି, ପୁଣି କେତେଗୁଡ଼ିଏ ବିନ୍ଦୁ ଫୁଟିଉଠିଲା ଆଖି ଆଗରେ ।

ହଁ, ଶାଳବଣର ଡାଳରୁ ଟଙ୍କା ଥଳିଟି ନଆଣି, ଯଦି ପ୍ରତିଯୋଗୀମାନେ ଫେରି ଆସନ୍ତି ତେବେ ପ୍ରତିଯୋଗିତା ପୁଣି ଥରେ ଆରମ୍ଭ ହେବ ।

ଆମ ଆଖି ଆଗରେ ଭାସିଉଠିଲେ ସବୁଯାକ ଘୋଡ଼ସବାର । ସେମାନଙ୍କୁ ଦେଖି ମନେହେଉଥିଲା—ଯେବେ ଯେପରି ସମସ୍ତେ ଗୋଟିଏ ସମାନ୍ତରାଳ ରେଖାରେ ମାଡ଼ିଆସୁଛନ୍ତି । ଧୀରେ ଧୀରେ ଉତ୍ତେଜନା ବୃଦ୍ଧି ପାଇବାକୁ ଲାଗିଲା ଦର୍ଶକମାନଙ୍କ ମଧ୍ୟରେ । ଘୋଡ଼ସବାର-ମାନେ ଏଥର ସ୍ପଷ୍ଟରୁ ସ୍ପଷ୍ଟତର ହେବାକୁ ଲାଗିଲେ ।

ହଠାତ୍ ମୁଁ ହାତତାଳି ମାରି ଚିତ୍କାର କରିଉଠିଲି । କଳାଘୋଡ଼ାଟି ସମସ୍ତଙ୍କୁ ପଛରେ ପକାଇଦେଇ ଆଗେଇ ଆସୁଛି । ଘୋଡ଼ାର ପିଠିରେ ଫଲ୍‌ମନ୍ ଏକାବେଳକେ ମିଶି-ଯାଇଛି । ଠିକ୍ ତା'ରି ପଛରେ ହୋସେନ୍ ଖାଁର ଲାଲ୍ ଟକ୍‌ଟକ୍ ଘୋଡ଼ାଟା ପ୍ରାଣମୂର୍ଚ୍ଛା ଦୌଡ଼ିବାରେ ଲାଗିଛି । ମନେହେଉଥିଲା ସତେଅବା ସେ କଳାଘୋଡ଼ା ଉପରକୁ ଆଖି-ପିଛୁଡ଼ାକେ କୁଦିପଡ଼ିବ ।

ସମସ୍ତେ ସ୍ପଷ୍ଟ ଦେଖିଲେ ହୋସେନ୍ ଖାଁର ହାତରେ ଚକ୍ ଚକ୍ କରି ଆଖି ଝଲସାଇଦେଉଛି ତା'ର ତରୁଆଲ୍‌ଟି । ପଠାଣ ଟୋକା ମନେ ମନେ ରାଗି ପଞ୍ଚମ । ସେ ତୀବ୍ର ବେଗରେ ତରବାରି ଚଳାଇଦେଲା ।

ଆମେ ସ୍ପଷ୍ଟ ଭାବରେ ଦେଖିବାକୁ ପାଇଲୁ, ଫଲ୍‌ମନ୍ ମଧ୍ୟ ତା' ତରବାରିଟି ସ୍ୱା' ମଧ୍ୟରେ ବାହାର କରିନେଇଛି । ହଠାତ୍ ଗ୍ରୀବା ଉପରେ ଚିପିଧରିଥିବା ଟଙ୍କା ଥଳିଟି ଝର୍ କରି ଖସିପଡ଼ିଲା ଭୂଇଁରେ । ଫଲ୍‌ମନ୍ ଝପ୍ କରି ଘୋଡ଼ା ପିଠିରୁ ଡେଇଁପଡ଼ିଲା । ସେ ଟଙ୍କା ଥଳିଟିକୁ ଉଠାଇବାକୁ ଯାଉଛି ଆମେ ଚିତ୍କାର କରିଉଠିଲୁ । ହୋସେନ୍ ଖାଁ ତରବାରି ହଣା'ଇ ଫଲ୍‌ମନ୍‌ର ଗର୍ଦ୍ଦନ ଉଡ଼ାଇଦେବାକୁ ଚେଷ୍ଟା କରୁଛି । ମୁହୂର୍ତ୍ତକ ପାଇଁ ଆମ ଆଖି ଖୋସିହୋଇଗଲା । ବାଜପକ୍ଷୀ ଯେପରି ସାଏଁ କରି ଉଡ଼ିଯାଇ ଶିକାରଟାକୁ ଉଠାଇନିଏ, ସେଇମିତି ଫଲ୍‌ମନ୍ ତୀବ୍ର ବେଗରେ ଟଙ୍କା ଥଳିଟିକୁ ଭୂମିରୁ ଗୋଟାଇନେଇ ହୋସେନ୍ ଖାଁର ଲକ୍ଷ୍ୟରୁ ଉବୁରିଗଲା । କେବଳ ସେ ରକ୍ଷା ପାଇଗଲା ତା ନୁହେଁ, ବିଦ୍ୟୁତ୍ ବେଗରେ ସେ ମଧ୍ୟ ତାର ତରବାରିରେ ଆଘାତ କଲା ହୋସେନ୍ ଖାଁକୁ ।

ହୋସେନ୍ ଖାଁ ହାତରୁ ଲଗାମ୍‌ଟା ଛୁଟିଗଲା ଫଲ୍‌ମନ୍‌ର ଆଘାତରେ । ଘୋଡ଼ାର ତୀବ୍ରଗତିରେ ସମତାଳ ରକ୍ଷାକରିନପାରି ହୋସେନ୍ ଖାଁ ସେଇଠି ସୁବର୍ଣ୍ଣରେଖାର ବାଲିଚର ଉପରେ ଧୁମ୍ କରି ମୁହଁମାଡ଼ି ପଡ଼ିଗଲା ଏବଂ ଫଲ୍‌ମନ୍‌ର ତରୁଆଲ ହୋସେନ୍ ଖାଁର ବୁକୁ

ଉପରେ ପ୍ରଚଣ୍ଡ ଆଘାତ ଦେଇ ପୁଣି ତା' ମୁକ୍ତ ହାତରେ ଚକ୍ ଚକ୍ କରିବାକୁ ଲାଗିଲା ।

ଏହା ମଧ୍ୟରେ ଫର୍ଗ୍ୟୁସନ୍ ସାହେବ କ୍ରୋଧରେ ଅଗ୍ନିଶର୍ମା ହୋଇଯାଇଥିଲେ । ସେ ହଠାତ୍ ତାଙ୍କର ବନ୍ଧୁକ ଧରି ଫଲ୍‌ମନ୍ ଉପରକୁ ଗୁଳି ଚଳାଇବାକୁ ଯାଉଛନ୍ତି ଆଉ ମାତ୍ରେ, ମୋ ବାପା ତାଙ୍କୁ ଧରିପକାଇଲେ । ନୋହିଲେ ଫଲ୍‌ମନ୍ ସେଦିନ ସୁବର୍ଣ୍ଣରେଖାର ସେଇ ବାଲିଚର ଉପରେ ଚିରନିଦ୍ରାରେ ଶୋଇଥାନ୍ତା ।

ତା'ପରେ ବିଚାର ପଡ଼ିଗଲା । ନୀଳକୋଠିର ସାହେବମାନେ ବିସ୍ତାର କରି ଫଲ୍‌ମନ୍‌କୁ ନିର୍ଦ୍ଦୋଷ ବୋଲି ଘୋଷଣା କଲେ; କାରଣ ସେଦିନ ସେଠାରେ ଯେଉଁମାନେ ଉପସ୍ଥିତ ଥିଲେ ସମସ୍ତେ ଲକ୍ଷ୍ୟ କରିଥିଲେ ହୋସେନ୍ ଖାଁର ଅଶିଷ୍ଟ ବ୍ୟବହାର । ଆହୁରି ମଧ୍ୟ ସମସ୍ତ ପ୍ରତିଯୋଗୀ ହୋସେନ୍ ଖାଁର ବିପକ୍ଷରେ ସାକ୍ଷୀ ଦେଲେ । ସେମାନେ ସମସ୍ୱରରେ କହିଲେ—"ଫଲ୍‌ମନ୍ ବେଣ୍ ବ୍ୟବଧାନ ରକ୍ଷା କରି ଝଙ୍କା ଗଛଟିକୁ ଛୁଇଁଆସି ଫେରି-ପଡ଼ିବା ମାତ୍ରେ ହୋସେନ୍ ଖାଁ ନିୟମ ଅନୁସାରେ ଲକ୍ଷ୍ୟସ୍ଥଳକୁ ନଯାଇ, ସେଇଠାରୁ ଫେରିଆସି ଧାଇଁଲା ସ୍ୱରରେ ଚିତ୍କାର ହୋଇ ଫଲ୍‌ମନ୍‌ର ପିଠି ଧରି । ସେ ଜୋର୍‌ରେ ଚିତ୍କାର କରି କହୁଥିଲା—ତୁ ସେଦିନ ମୋ' ହାତରୁ ରକ୍ଷାପାଇଯାଇଥିଲୁ, ଆଜି ତୋତେ ସାକିନାର କବରକୁ ପଠେଇଦେବ ।"

କିନ୍ତୁ ସତରେ ମେଘ, ଫଲ୍‌ମନ୍‌ର ଆଘାତରେ ହୋସେନ୍ ଖାଁ ଚିରଦିନଲାଗି ଆଖି ବୁଜିଲା, ଆଉ ଫଲମନ୍ କେବଳ ମୋ' ବାପାଙ୍କ ପାଇଁ ରକ୍ଷାପାଇଯାଇଥିଲା ।

ଆନା ଏତିକି କହି ଉଠିପଡ଼ିଲା ମୈତ୍ରେୟୀର ହାତଧରି । ମୈତ୍ରେୟୀ ଆଉ କ'ଣ କହିବାକୁ ଯାଉଥିଲା, ଆନା ତାକୁ ବାଧାଦେଇ କହିଲା—"ଆଉ ଆଜି, ଆଉ ଦିନେ ତୋତେ ଆହୁରି ଅନେକ ଘଟଣା ଅଛି କହିବି । ଚାଲ, ଆଜି ଏତିକିରେ ଆମ ବୈଠକ ଶେଷ କରିବା···

ଆନା ହାଇମାରି ତଳକୁ ଓହ୍ଲାଇଆସିଲା ଏବଂ ମୈତ୍ରେୟୀ ତା' ପିଠି ଧରିଲା ସୁନା ପିଲାଟିଏ ପରି ।

( ବାର )

ପୁଣି କେତେଦିନ ପରେ ମୈତ୍ରେୟୀ ଓ ଆନା ଦୁହେଁ ବସି ଆଲୋଚନା କଲେ ସେଦିନର ଅସମାପ୍ତ କାହାଣୀ । ମୈତ୍ରେୟୀ ପ୍ରଥମେ ଆଲୋଚନା ଆରମ୍ଭ କରି କହିଲା—ଦିଦୀ, ହୋସେନ୍ ଖାଁ ସେଦିନ ଯେଉଁ ସାକିନାର ନାଁ ଧରିଥିଲା, ସେ ବିଷୟରେ ତୁମେ କ'ଣ କିଛି ଜାଣିଛ ? ମୋର ତ ଏ କଥା ଶୁଣି ମନେହେଉଛି ଯେ ହୋସେନ୍ ଖାଁ ତା' ଡାହାଣ ହାତଟିକୁ କାଟିପକାଇଛି । ସେ ଦୁହିଁଙ୍କ ଭିତରେ ଖୁବ୍ ସମ୍ଭବତଃ ଆଗରୁ ଶତ୍ରୁତା ଥିଲା ।"

"ତୋ'ର ଧାରଣା ଏକବାରେ ଠିକ୍ ମେଘ" କହିଲା ଆନା—"ମୁଁ ଫଲମନ୍‌ର

ରହସ୍ୟମୟ ଜୀବନର କେତେକ ଖବର ପରେ ସଂଗ୍ରହ କରିଥିଲି । ଆମ ନୀଳକୋଠିର ମାଳୀ ଗୋଲକ ମୁର୍ମୁ ମୋତେ ସେଇ ଖବର ଦେଇଥିଲା ।"

"ଗୋଲକ କପରି ଜାଣିଲା ?"—ପଚାରିଲା ମୈତ୍ରେୟୀ ।

"ଗୋଲକ ସର୍ଗସନ୍ଙ୍କ କୋଠିରେ ଆଗରୁ କାମ କରୁଥିଲା । ସେତେବେଳେ ହୋସେନ୍ ଖାଁ ସହିତ ତା'ର ଘନିଷ୍ଠ ସମ୍ପର୍କ ହୋଇଥିଲା । କେଣୁ ସେ କହୁଥା ତା'ର ଗୋପନୀୟ ଖବର ଜାଣିଥିଲା ।"

ମୈତ୍ରେୟୀ ଏକ ଧ୍ୟାନରେ ଆନାର ମୁହଁକୁ ଦୃଷ୍ଟି ରଖିଥିଲା ହୋସେନ୍ ଖାଁର ଖବର ଶୁଣିବା ପାଇଁ । ତା'ର ଉତ୍ସୁକତା ଲକ୍ଷ୍ୟ କରି କହିଲା ଆନା—"ସେ କାହାଣୀଟି ଆରମ୍ଭ ହୋଇଥିଲା ଲକ୍ଷ୍ନୌରରୁ ଆଉ ଶେଷ ହୋଇଥିଲା ଏହି ସୁନ୍ଦରବନର ଜଙ୍ଗଲରେ ।"

ଆନା ଟିକିଏ ରହିଯାଇ କହିଲା—"ଲକ୍ଷ୍ନୌଠାରେ ଦୁର୍ଦ୍ଦାନ୍ତ କଣେ ଫଳ-ବାଲାର ପ୍ରେମରେ ପଡ଼ି ବନ୍ଧୁତାସୂତ୍ରରେ ବାନ୍ଧି ହୋଇ ପଡ଼ିଥିଲେ ।"

ହଠାତ୍ କଥା ମଝିରେ ବାଧାଦେଇ କହିଲା ମୈତ୍ରେୟୀ—"ଆଚ୍ଛା, ଦୁହେଁ ତ ଅଲଗା ଅଲଗା ଜାତିର ଲୋକ, ତାଙ୍କ ଭିତରେ ପୁଣି ଗୋଟିଏ ସ୍ତ୍ରୀକୁ ନେଇ ବନ୍ଧୁତା ହେଲା କପରି ?"

"ଲକ୍ଷ୍ନୌଠାରେ ଗୋଟିଏ ଇଂରେଜ କମ୍ପାନୀରେ କାମ କରୁଥିଲା ଫଲ୍‌ମନ୍ ଆଉ ହୁସେନ୍ ଖାଁ ଥିଲା ଗୋଟେ ଦସ୍ୟୁ ଦଳର ସର୍ଦ୍ଦାର..."

"ଏଁ...ଦସ୍ୟୁଦଳର !" କହିଲା ମୈତ୍ରେୟୀ—"ଦସ୍ୟୁଗୁଡ଼ା'କ ଅତି ସାଙ୍ଘାତିକ ବୋଲି ମୁଁ ଶୁଣିଛୁ । ସେମାନେ କାଳେ ଫାଶ ବସାଇ ଲୋକମାନଙ୍କୁ ଗାଏବ୍ କରି-ଦିଅନ୍ତି..."

ଆନା ଅଟୌ ବିସ୍ମିତ ନହୋଇ କହିଲା—"ହଁ, ସେଇମିତି ଗୋଟିଏ ଠକ ଦସ୍ୟୁ ଦଳର ସର୍ଦ୍ଦାର ଥିଲା ହୋସେନ୍ ଖାଁ ଆଉ ତାକୁ ପୋଲିସ୍ ହାତରୁ ରକ୍ଷାକରୁଥିଲା ଖବର ଯୋଗାଇଦେଇ ଫଲ୍‌ମନ୍ ।"

ଆନା ଏଥର ପଚାରିଲା ମୈତ୍ରେୟୀକୁ—"ତୁ ଶ୍ଳୀମାନ୍ ସାହେବର ନାଆଁ ଶୁଣିଛୁ ?"

ମୈତ୍ରେୟୀ ମୁଣ୍ଡ ହଲାଇ କହିଲା—"ନା ଦିଦୀ, ମୁଁ ସେ ନାଁ କେବେହେଲେ ଶୁଣିନି ।"

"ଏଇ ଶ୍ଳୀମାନ୍ ସାହେବ ଥିଲେ ଜଣେ ଦକ୍ଷ ଅଫିସର୍ । ସେ ତୁମର ଏଇ ବଙ୍ଗ-ଦେଶର ଦସ୍ୟୁମାନଙ୍କ ଦମନଲାଗି ଖୁବ୍ ମନପ୍ରାଣ ଦେଇ କାମ କରିଥିଲେ । ତେଣୁ ସାରା-ଭାରତର ଲୋକେ ତାଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରନ୍ତି ।"

କଥାର ଧାରା ଟିକିଏ ବଦଳାଇ ଦେଇ କହିଲା ଆନା—ଏଇ କିଛିଦିନ ଆଗରୁ ଆମର ଏଠାରେ ଗୋଟିଏ ଗାର୍ଡ଼େନ ପାର୍ଟି ହୋଇଥିଲା—ତୋର ମନେଥିବ । ସେଇ ପାର୍ଟିରେ ଯୋଗ ଦେଇଥିଲା ମିଲଟାରୀ ପୋଷାକ ପିନ୍ଧିଥିବା ଲମ୍ବା ମଣିଷଟିଏ । ମୋ' ଶୋଇବା ଘର

ଝରକାଦେଇ ରୁ ଉଙ୍କିମାରି ସମସ୍ତଙ୍କ ଆଡ଼କୁ ଚାହୁଁଥିବାର ମୁଁ ଲକ୍ଷ୍ୟ କରିଛୁ । ତୋର ମନେପଡ଼ୁଛି ସମସ୍ତଙ୍କଠାରୁ ବେଶ୍ ହୃଷ୍ଟପୁଷ୍ଟ ସେଇ ଲୋକଟିର ଚେହେରା ?"

"ହଁ...ହଁ..." କହିଲା ମୈତ୍ରେୟୀ—"ସେ ସଭିଙ୍କ ସଙ୍ଗରେ ଖୁବ୍ ହସଖୁସିରେ କଥା କହୁଥିଲେ ନା ? ହାତରେ ସେ ଗୋଟିଏ ଛଡ଼ି ଧରିଥିଲେ । ସେଇ କ'ଣ ଶ୍ରୀମାନ୍ ସାହେବ ?"

"ନା ସେ କାହିଁକି ଶ୍ରୀମାନ୍ ସାହେବ ହେବ ? ତେବେ ତୋ' ଅନୁମାନ ଏକାବେଳକେ ଭୁଲ ନୁହେଁ । ସେ ହେଉଛନ୍ତି ଶ୍ରୀମାନ୍ ସାହେବଙ୍କର ଅନୁଚର ତଥା ପ୍ରଧାନ ସହଯୋଗୀ କ୍ୟାପଟେନ୍ ଭେଲେନ୍ସ । ମେଦିନୀପୁର ଜିଲ୍ଲାରେ ଦସ୍ୟୁ ଦମନର ଭାର ଏଇ ଭଦ୍ରଲୋକ ଗ୍ରହଣ କରିଛନ୍ତି ।"

ମୈତ୍ରେୟୀ ଅନାର କଥାରେ ବାଧାଦେଇ କହିଲା—"ଥାଉ ଦାଦା ସେ କଥା—ଏଥର ହୋସେନ ଖାଁ ର ଦସ୍ୟୁବୃତ୍ତି ବିଷୟରେ କହିଲ ।"

"ହୋସେନ୍ ଖାଁ ସହିତ ଟଙ୍କା ପଇସାର ଦେଣନେଣ ଥିଲା ଏଇ ଫଲ୍‌ମନ୍‌ର । ସେଇଠି ଲାଲବଜାରଠାରେ ଗୋଟେ ଫଳବାଲୀଠାରୁ ଫଳ କିଣିବା ଛଳନାରେ ଦୁଇବନ୍ଧୁଙ୍କର ଦେଖାସାକ୍ଷାତ୍ ହୁଏ ଏବଂ ଆବଶ୍ୟକୀୟ ଆଲୋଚନା ପରେ ଦୁହେଁ ପୁଣି ନିଜ ନିଜ କାମରେ ଚାଲିଯାଆନ୍ତି ।

"କିନ୍ତୁ ଦିନକର ଘଟଣା, ଫଳବାଲୀଟି ହୋସେନ୍ ଖାଁ କୁ ଚାହିଁ ଆଖିରେ ଇଙ୍ଗିତ ଜଣାଇଲା । ଫଳବାଲୀଟି ଥିଲା ଖୁବ୍ ସୁନ୍ଦରୀ । ତା'ର ହସିଲା ଠାଣିର ଇଙ୍ଗିତରୁ ହୋସେନ୍ ଖାଁ ର ଦେହଟା ଜଳିପୋଡ଼ିଗଲା । ସେ କାଲେ ଆଉ ସେଦିନ ରାତିରେ ଶୋଇ ପାରିଲା ନାହିଁ ଶାନ୍ତିରେ । ଫଳବାଲୀର ସୁନ୍ଦର ମୁହଁଟି ତା' ଆଖି ଆଗରେ ଝଲସିଉଠିଲା । ସେ ମନେ ମନେ ଭାବିଲା—ଯଦି ପ୍ରକୃତରେ ଫଳବାଲୀ ମୋତେ ଭଲପାଉଥାଏ ତେବେ ତାକୁ ନେଇ ଏ ଲାହୋର ଛାଡ଼ି ପଳାଇଗଲେ ଭଲହୁଅନ୍ତା । ଏଠି ତ ମୋ' ବେଉସା ମାନ୍ଦା ପଡ଼ିଆସିଲାଣି । ଖାଲି ଫଲ୍‌ମନ୍‌ଟା ଟିକିଏ ସାହା ଭରସା ହେଉଛି ବୋଲି ସିନା—ନଇଲେ, କେଉଁ ଦିନରୁ କ'ଣ କ'ଣ ଘଟିଯାଆନ୍ତାଣି...'

"ଏ ଗୁମର କଥାଟି ସେ ତା'ର ବନ୍ଧୁ ଫଲ୍‌ମନ୍‌କୁ କହିବା ଆଗରୁ ଫଳବାଲୀଟିକୁ ପରୀକ୍ଷା କରି ନେବାକୁ ଚାହିଁଲା ହୋସେନ୍ ଖାଁ । ସେଦିନ ସେ ଫଳ କିଣିବା ବାହାନାରେ ଫଳବାଲୀ ପାଖରେ ଯାଇ ହାଜର୍ ହୋଇଗଲା ଏବଂ ଫଳ ଦୋକାନରେ ଲୋକବାକ ନଥିଲା ବେଳ ଦେଖି ସେ ଆଖିର ଇସାରାରେ ଫଳବାଲୀକୁ ତା'ର ମନୋଭାବ ଜଣାଇଦେଲା । ମନ୍ତୁ ଚାହୁଁଥିଲା ଯା' ବଇଦ ବତେଇଲା ତା' । ଫଳବାଲୀ ହୋସେନ୍ ଖାଁ ର ମନୋଭାବ ବୁଝିପାରି ତାକୁ ମଧ୍ୟ ଇସାରାରେ ଠିକ୍ ଠିକ୍ ଉତ୍ତରଦେଲା ।

"ତା ପରେ ହୋସେନ୍ ଖାଁ କୁ ସମ୍ଭାଳେ କିଏ ? ଆନନ୍ଦରେ ତା' ଛାତିଟା କୁଣ୍ଢେମୋଟ ହୋଇଗଲା । ସେ ଆଉ ପାଦେ ଆଗେଇ ଯାଇ ଫଳବାଲୀ ଆଗରେ ତା' ମନର ଭାବନାଟିକୁ

ଅକାଣ୍ଡ ତାଣ୍ଡବରେ ସେ ଏକାପଦକେ ରାଜି ହୋଇଗଲା । ଏଣିକି ହୋସେନ୍ ଖାଁ ଭାବିଲା ତା' ପଶାକାଠିରେ କଚେବାର ପ' ପଡ଼ିଯାଇଛି । ସେ ଆଉ ଆଗପଛ କିଛି ବିଚାର ନକରି, ଧାଇଁଲା ତା'ର ଜିଗର୍ ଦୋସ୍ତ ଫଲ୍‌ମନ୍ ପାଖକୁ । ସେ ଭାବିଥିଲା ତା'ର ଅନେକ ଧନର ସାଙ୍ଗ ଏ ଖବର ଶୁଣି ତାକୁ ତାରିଫ୍ କରିବା ସଙ୍ଗେ ସଙ୍ଗେ ସାହାଯ୍ୟ କରିବ ।

ଫଲ୍‌ମନ୍ ହୋସେନ୍ ଖାଁ ମୁହଁରୁ ସବୁକଥା ଶୁଣିବା ପରେ ଟିକିଏ ଗମ୍ଭୀର ହୋଇଯାଇ କହିଲା—"କାଲିକି ଆସ, ଏ ବିଷୟରେ ଆହୁରି ଅନେକ କଥା ବିଚାର କରିବାର ଅଛି । ହଠାତ୍ ଗୋଟେ କିଛି କରିପକାଇଲେ ହାରି ଯିବାର ସମ୍ଭାବନା ମଧ୍ୟ ରହିଛି ।"

"ଫଲ୍‌ମନ୍‌ର କଥା ଶୁଣି ହୋସେନ୍ ଫେରିଯାଉଥିଲା, କିନ୍ତୁ ପୁଣି ପଛରୁ ଡାକ ପକାଇଲା ତା'ର ସେଇ ଠକ ବନ୍ଧୁଟା । ଫଲ୍‌ମନ୍ ତା'ର ଶୁଭକାଙ୍‌କ୍ଷୀ ବନ୍ଧୁ ପରି ତା' କାନ ପାଖକୁ ମୁହଁ ନେଇ କହିଲା—"ଖବରଦାର, ପ୍ରେମ ବାଉଳାରେ ତା' ଆଗରେ ତୋ' କାଠ ବେହଯାର ଗୁମର୍ ଖୋଲି ଦେବୁ ନାହିଁଟି···!"

ହୋସେନ୍ ଖାଁ ଜଣେ ପକ୍‌କା ଖିଲାଡ଼ି ପରି ମୁଣ୍ଡ ହଲାଇ ଦେଇ ଆଗେଇଯାଇ ଭାବିଲା—ମୋତେ କ'ଣ ଏତେ ବୁଦ୍ଧୁ ବୋଲି ମନେକରୁଛ ଏ ସାହେବ ?

"କିନ୍ତୁ ମେଗ୍ସି, କଥାଟା ହେଲା ସମ୍ପୂର୍ଣ୍ଣ ଓଲଟା । ହୋସେନ୍ ଖାଁ ଭାବିଥିଲା—ଫମଲିନ୍ ମୋର ବହୁଦିନର ବିଶ୍ୱସ୍ତ ସାଙ୍ଗ—ସେ ମୋ' କଥା ଶୁଣି ମନେ ମନେ ଖୁସି ହୋଇଥିବ । କିନ୍ତୁ ହୋସେନ ଖାଁ ଚାଲିଯିବା ପରେ ଫଲ୍‌ମନ୍‌କୁ ସେ ରାତିରେ ଆଦୌ ନିଦ ହେଲା ନାହିଁ । ତା'ର ମନେହେଲା ସତେ ଯେପରି ତା'ର ପଞ୍ଜରା ହାଡ଼ ଭାଙ୍ଗି ଚୂରମାର ହୋଇଯାଇଛି । ଆଉ ତା'ର ବହୁଦିନର ଆଶା ଫସରଫାଟି ଯିବାକୁ ବସିଛି ।

"ଫଲମନ୍ ଫଳ କିଣିବା ବାହାନାରେ ସୁନ୍ଦରୀ ଫଳବାଲୀର ସୁରୁମାବୋଳା ଆଖିକୁ ଘଡ଼ିଏ କାଳ ଅନାଇ ମନେ ମନେ କେତେ ସ୍ୱାର୍ଥ ପାଇଁ ହୁଏ । ତା'ର ଗୋଲାପୀ ଓଠ ଫାଙ୍କରୁ ଟେନାଏ ନାଲି ହସ ଝରିପଡ଼ିବାର ଦେଖିଲେ ତାକୁ କୋଟିନିଧି ମିଳିଯାଏ । ତା'ର ସେଇ ମନର ଅର୍‌ମାନକୁ ଚୂରମାର କରିଦେଇ ତା' ଦିଲ୍‌ଦାର୍ ବେଗମ୍ ହେବ ପୁଣି ଗୋଟେ ଦସ୍ୟୁର ବାଁଦୀ ?

"ଜାଣୁ ମେଗ୍ସି, ଫଲ୍‌ମନ୍ ଇଚ୍ଛା କରିଥିଲେ ଘଡ଼ିକ ମଧ୍ୟରେ ହୋସେନ୍ ଖାଁକୁ ଫୁଟ୍‌କରେ ଉଡ଼େଇ ଦେଇ ଫଳବାଲୀଟାକୁ ତା' ଗଳାର ଦୋସର କରିପାରିଥା'ନ୍ତା । ଅଥବା ଅନ୍ୟ ଭାବରେ କହିବାକୁ ଗଲେ, ତା'ର ମନଲାଖି ଗୋଲାପ ଫୁଲଟିକୁ କଣ୍ଟା ଗଛରୁ ଛିଣ୍ଡେଇଆଣି ତା' କୋଟ୍ ପକେଟ୍‌ରେ କେଉଁ କାଳରୁ ଖୋଷି ସାରନ୍ତାଣି । କିନ୍ତୁ ସେ ଆଦୌ କଞ୍ଚା ଖେଳାଳି ନଥିଲା । ରକ୍ତରେ ତା'ର ଜଳଦସ୍ୟୁ ପର୍ତ୍ତୁଗୀଜ୍ ଜାତିର ରକ୍ତର ସୁଅ ଛୁଟୁଥିଲା । ତା'ପରେ ପୁଣି ହିଂସ୍ରଦନ୍ତ ଶେତାର ରକ୍ତ ତା' ଶ୍ରୋତରେ ଉଠେଇ ଚଳେଇ ହେଉଛି । ସେ ସାମାନ୍ୟ ଜନ୍ତୁ ନୁହେଁ । ତେଣୁ ଜାଣିଶୁଣି ସେ ସଙ୍ଗେ ସଙ୍ଗେ କିଛି ଗୋଟାଏ ଅଘଟଣ ଘଟାଇଲା ନାହିଁ ।"

ପୁଣି କଥା ମଝିରେ ବାଧା ଦେଇ କହିଲା ମୈତ୍ରେୟୀ —"ହଁ, ତା'ହେଲେ କ'ଣ ଫଲ୍‌ମନ୍‌ର ମାଆ ପର୍ତ୍ତୁଗିଜ୍ ଓ ବାପା ହିନ୍ଦୁ ବଙ୍ଗାଳୀ ?"

"ସେ ପ୍ରଶ୍ନର ଉତ୍ତର ମୁଁ ତୋତେ ପରେ କେବେ ଦେବି । ଏହା ଗୋଟିଏ ରହସ୍ୟମୟ କାହାଣୀ । ଏ କାହାଣୀ ମୁଁ ଅନ୍ୟ କାହାରିଠାରୁ ଶୁଣିନି, ନିଜେ ଫଲ୍‌ମନ୍ ମୋତେ ଦିନେ ନିଜ ମୁହଁରେ ଶୁଣାଇଛି । ହଁ, ଛାଡ଼ ସେ କଥା, ଆମେ ମୂଳକଥା ଆଡ଼କୁ ଆଗେଇବା ।"

ଏତିକି କହି, ଆଉ କିଛି ସମୟ ନୀରବ ହୋଇଗଲା କଥାଟିକୁ ସବୁଦିଗରୁ ସଜାଡ଼ି ସଜାଡ଼ି କହିବା ପାଇଁ ।

## ( ତେର )

ଆଉ ଗୋଟିଏ ମୁହୂର୍ତ୍ତ ନୀରବ ରହିବା ପରେ କହିଲା—"ଫଲ୍‌ମନ୍ ସେ ଫଳବାଲୀକୁ କୌଣସି ମତେ ଭୁଲିପାରିଲା ନାହିଁ । ତା'ର ନାଆଁ ସାକିନା । ତାକୁ ନିଜର ପ୍ରଣୟିନୀରୂପେ ପାଇବା ପାଇଁ ତ' ମନରେ ଦିନକୁ ଦିନ ଆଶା ବଳବତୀ ହୋଇଉଠିଲା ।

"ପରଦିନ ଠିକ୍ ସମୟରେ ଆସି ହୋସେନ୍ ଖାଁ ହାଜର ହୋଇଗଲା । ସେ ହୋସେନ୍‌କୁ ଦେଖିବା ମାତ୍ରେ ନିଜ ମନର ଭାବ ଗୋପନ କରି, ତା'ର ପ୍ରଣୟିନୀ ନିର୍ବାଚନ ଲାଗି ତାକୁ ଖୁବ୍ ତାରିଫ୍ କରି କହିଲା—"ତୁମେ ବଡ଼ ଭାଗ୍ୟବାନ୍ ବନ୍ଧୁ ! ବିବାହ ପରେ ତୁମେ ତୁମର ପ୍ରଣୟିନୀକୁ ପାଇ କିଛିଦିନ ବେଶ୍ ମଉଜ ମଜଲିସ୍‌ରେ କାଳ ଯାପନ କରିବ । ମନଲାଖି ଝିଅଟିଏ ପାଇଲେ କିଏ ଆନନ୍ଦରେ ମସ୍‌ଗୁଲ୍ ନହେବ ସେ ? କିନ୍ତୁ···କିନ୍ତୁ···" ନୀରବ ହୋଇଗଲା ଫଲ୍‌ମନ୍ ।

"ହଠାତ୍ ନୀରବ ହୋଇଗଲ କାହିଁକି ?"—ବ୍ୟଗ୍ର ହୋଇ ପଚାରିଲା ହୋସେନ୍ ଖାଁ ।

"କ'ଣ କହିବି ଭାଇ ! କ୍ଲିମନ୍ ସାହେବ ଯେମିତି ତା'ର ତୁର୍କୀ ଘୋଡ଼ା ଛୁଟାଇ ଚାଲିଛି, ତାକୁ ତୁମ ପାଖରେ ପହଞ୍ଚି ଯିବାକୁ ବେଶି ସମୟ ଲାଗିବ ନାହିଁ । ତା'ପରେ ପୁଣି ତୁମ ପ୍ରାଣର ପିଆରୀ ଯଦି ଏ' କାରବାର ବିଷୟରେ ଜାଣିଯାଏ, ତେବେ ତୁମର ଦଶଦିଗ ଅନ୍ଧାର ହୋଇଯିବ । ମୁଁ ସେଇ କଥା ହିଁ କେବଳ ଭାବୁଛି ।"

ହୋସେନ୍ ଖାଁ ସେତେବେଳେ ଫଲ୍‌ମନ୍‌କୁ ତା'ର ସବୁଠାରୁ ବଡ଼ ଆତ୍ମୀୟ ତଥା ବିଶ୍ୱାସୀ ବୋଲି ଭାବୁଥିଲା । ସେ ଅତ୍ୟନ୍ତ ଅସ୍ଥିରତାର ସହିତ କହିଲା—"ତୁମ ଉପରେ ଭରସା କରି ରହିଛି ବନ୍ଧୁ ! ତୁମରି ପରାମର୍ଶ ଅନୁସାରେ ମୁଁ କାର୍ଯ୍ୟ କରିବ ।"

"ଠିକ୍ ଅଛି" କହିଲା ଫଲ୍‌ମନ୍—"ମୋତେ ଆଉ କେତୋଟି ଦିନ ସମୟ ଦିଅ; କାରଣ ଧୀର ପାଣି ପଥର କାଟେ । ତୁମେ ସମସ୍ତ ଦାୟିତ୍ୱ ମୋ' ଉପରେ ଛାଡ଼ିଦେଇ ନିଶ୍ଚିନ୍ତରେ ରହିପାର ।"

ହୋସେନ୍ ଖାଁ ଆନନ୍ଦ ମନରେ ସେଠାରୁ ଚାଲିଗଲା ଏବଂ ତା' ପରଠାରୁ ଫଲ୍‌ମନ୍

ନୂତନ ଭାବରେ ଡାକ ପକାଇ ଗୁପ୍ତିଗୁଞ୍ଜନ ଚଳାଇବାକୁ ଲାଗିଲା । ସେ କିଛିଦିନ ପରେ ମନେ ମନେ ଭାବିବାକୁ ଲାଗିଲା—ନା, କେବଳ ଚାକିରିର ଟଙ୍କା ଉପରେ ଭରସା କରି ମୁଁ ମୋର ଜୀବନ ନୌକାଟିକୁ ଚଳାଇ ପାରିବ ନାହିଁ । ପିଲାଟି ଦିନରୁ ବାପା-ମାଆଙ୍କୁ ହରାଇ ମୁଁ ଏକାକୀ ଜୀବନର ଏଇ ଦୁର୍ଗମ ପଥରେ ଚାଲିବା ଶିଖିଛି । ମୁଁ ମୁଣ୍ଡଝାଳ ତୁମରେ ମାରି ଟଙ୍କା ରୋଜଗାର କରିଛି । ଟଙ୍କାର ମୂଲ୍ୟ ମୁଁ ବେଶ୍ ବୁଝିଛି ।

ଯେତେଶୀଘ୍ର ସମ୍ଭବ ହେବ ହୋସେନ୍ ଖାଁଟାକୁ ପଟେଇ କରି ରଖିବାକୁ ପଡ଼ିବ । ତାକୁ ଏଇ ଦସ୍ୟୁ ବ୍ୟବସାୟରେ କଳେବଳେ କୌଶଳେ ରଖାଇବାକୁ ପଡ଼ିବ । ହୋସେନ୍ ଖାଁ କେବେହେଲେ ମୋ' ପଞ୍ଝାରୁ ଅଧଲାଏ ମାରିବ ନାହିଁ ।

ଫଲ୍‌ମନ୍ ସ୍ୱପ୍ନ ଦେଖିଲା—ସାକିନା ବେଗମ୍ ଓ ହୋସେନ୍ ଖାଁଙ୍କୁ ନେଇ ତାକୁ ଏଠାରୁ ଚାଲିଯିବାକୁ ପଡ଼ିବ । ଶ୍ଲିମାନ୍ ସାହେବ ଜଣେ ପୋଲିସ୍ ଶିକାରୀ ପରି, ଜବଲ୍‌ପୁରରେ ନ୍ତରିଅଡ଼୍ ଜାଲ ପାରି ବସିଛି । ତା' ଜାଲରେ ବଡ଼ବଡ଼ ଦସ୍ୟୁଦଳ ଗୋଡ଼ହାତ ଛନ୍ଦି ହୋଇ ବନ୍ଦୀହେଉଛନ୍ତି ।

ଫଲ୍‌ମନ୍ ଦିନରାତି ସେଇ କୌଶଳ ଚିନ୍ତାରେ ବିତାଇଦେଲା । ଶେଷକୁ ଭାଗ୍ୟଲକ୍ଷ୍ମୀ ତା'ର ଅନୁକୂଳ ହୋଇଉଠିଲେ । ସେ ଶାକିନା ବେଗମ୍ ଓ ହୋସେନ୍ ଖାଁଙ୍କୁ ନେଇ ଏକାବେଳେକେ ଯାଇ ହାଜର୍ ହୋଇଗଲା ବଙ୍ଗଦେଶର ମେଦିନୀପୁର ଜିଲ୍ଲାରେ । ସେ ମନେ ମନେ ଭାବିଲା—ଯେତେଶୀଘ୍ର ସମ୍ଭବ ହେବ ଶାକିନା ଓ ହୋସେନ୍ ଖାଁଙ୍କୁ ବନ୍‌ଶୀରେ ମାଛକୁ ଖେଳାଇଲା ପରି ଖେଳାଇବାକୁ ପଡ଼ିବ । ଠିକ୍ ସମୟବେଳେ ସୁନାବୋଲା ଏଇ ହରିଣାକ୍ଷୀ ଶାକିନାକୁ ହାତ କରିବାକୁ ପଡ଼ିବ ।"

ବହୁ କାରସାଦି ଓ ଖୋସାମଦ୍ ପରେ ସୁଯୋଗ ତା' ହାତକୁ ଆସିଲା । ସେତେବେଳେ ମେଦିନୀପୁର ଜିଲ୍ଲାର ଖେଜୁରୀଠାରେ କମ୍ପାନୀର ଗୋଟିଏ ବନ୍ଦର ଥିଲା । ସେଇ ବନ୍ଦରରୁ ଇଷ୍ଟଇଣ୍ଡିଆ କମ୍ପାନୀର ଜାହାଜ ଚଳାଚଳ କରୁଥାଏ ଦେଶର ଅନ୍ୟାନ୍ୟ ବନ୍ଦରକୁ । ଦେଶୀ, ବିଦେଶୀ, ବ୍ୟବସାୟୀ ଓ ଠକମାନଙ୍କର ପ୍ରଧାନ ଅଡ୍ଡାସ୍ଥଳ ଥିଲା ଖେଜୁରୀବନ୍ଦର । ଫଲ୍‌ମନ୍ ଖେଜୁରୀ ବନ୍ଦରର ପୋଷ୍ଟଅଫିସକୁ ବଦଳିହୋଇ ଆସିଲା ଜଣେ ତଳିଆ କର୍ମଚାରୀ ଭାବରେ ଏବଂ ସାଥିରେ ମଧ୍ୟ ହୋସେନ୍ ଖାଁ ଓ ଶାକିନାଙ୍କୁ ନାନାପ୍ରକାର ପ୍ରଲୋଭନ ଦେଖାଇ ଘେନିଆସିଲା । ନିଜର ଗଣ୍ଠିଲି ପୋଟଳି ବାନ୍ଧି ହୋସେନ୍ ଖାଁ ଓ ଶାକିନା ସବୁ ଲଟହୋଇରଙ୍କୁ ଚାଲିଆସିଲେ ବଙ୍ଗମୁଲକକୁ । ପୋଷ୍ଟ ଅଫିସ୍‌ରେ କିରାଣି ହୋଇ କାମ କଲା ଫଲ୍‌ମନ୍ ଆଉ ଶାକିନା ଓ ହୁସେନ୍ ସାଜିଲେ ତା'ର ବବୁର୍ଚି ଓ ଖାନସାମା ।

ଲୋକମାନେ ସେ ତିନିଙ୍କୁ ଏହିପରି ଭାବରେ ଜାଣିଲେ । ଏଣେ ହୋସେନ୍ ଖାଁ ନିଜର ଗୋଟିଏ ଦଳ ଗଢ଼ିନେଲା । ନିଜର ଗୋଟିଏ ମଜବୁତ୍ ଦଳ ଗଢ଼ିନେବାପାଇଁ ହୋସେନ୍‌କୁ ଆଦୌ ବେଶି ସମୟ ଲାଗିଲା ନାହିଁ, କାରଣ କଥାରେ ଅଛି ଗୁଣ ଥିଲେ ଗୁଣୀ !

ହଳଦୀ ନଦୀ ବହିଯାଇଛି ଖେଜୁରୀ ବନ୍ଦରର ପାଖ ଦେଇ ଅନେକ ଦୂରପର୍ଯ୍ୟନ୍ତ । ସେଇ

ନଦୀ କୂଳରେ କଚ୍ଛଡନ ଘୁସୁଘୁସୁ କରି ହୋସେନ୍ ଖାଁ ଦସ୍ତ୍ରକଚ୍ଛ ବେଶ୍ ବୁଝିପାରିଲେ । ସେଇ ନଦୀରେ ଶ୍ରେଷ୍ଠ ଶ୍ରେଷ୍ଠ ହୁଲଡଙ୍ଗା ଧରି 'ଝଗିନା'ମାନେ ଓର ହୁଣ୍ଡି ବସିଥାନ୍ତି । ସେମାନେ ଯାତ୍ରୀମାନଙ୍କୁ ଭୁଲେଇଭାଲେଇ କୌଣସିମତେ ଆଣି ତାଙ୍କର ସହଯାତ୍ରୀ ରୂପେ ନୌକାରେ ବସାନ୍ତି ।

ହଠାତ୍ କଥା ଭିତରେ ବାଧାଦେଇ କହିଲା ମୈତ୍ରେୟୀ—ହଁ, ଏ ଝଗିନା ପୁଣି କିଏ ?

ଆନା ହସି ହସି କହିଲା—"ଏତିକି ବି ଜାଣିନୁ ? ଏମାନଙ୍କ ନାଆଁ ଚାରିଆଡ଼େ ହୁରି-ପଡ଼ିଛି, ତୁ କିପରି ଜାଣିଲୁ ନାହିଁ ? ତେବେ ଶୁଣ—ଦସ୍ୟୁମାନଙ୍କ ମଧ୍ୟରୁ କେତେକ ଲୋକ ଟଣୁଲି ପୋଟଳି ଧରି ଯାତ୍ରୀବେଶରେ ଡଙ୍ଗା ଉପରେ ବସିଥାଆନ୍ତି ଏବଂ ଆଉ କେତେକ ଠକ ଯାଙ୍ଗ ଖୋଜିବା ବାହାନାରେ ଏଣେତେଣେ ବୁଲୁଥାଆନ୍ତି । ଓଗ୍ରହୁଣ୍ଡି ମାଲ୍‌ଦାର ଯାତ୍ରୀମାନଙ୍କୁ ଠାବକରି ସେମାନେ ଗୋଟିଏ ଗୋଟିଏ ଡଙ୍ଗାରେ ଅସଲି ଯାତ୍ରୀଙ୍କ ସହିତ ମିଳାମିଶା କରିବସନ୍ତି । ଆହୁଲମାରିବା ଲୋକମାନେ ସେଇ ନକଲି ଯାତ୍ରୀ ଅର୍ଥାତ୍ ଦସ୍ୟୁମାନଙ୍କ ଇଶାରାରେ ଡଙ୍ଗା ଚଳାଇ ନିଅନ୍ତି ନିର୍ଘାଟିଆ ଜଳପଥ ଦେଇ । ସେଇ ନକଲି ଯାତ୍ରୀମାନେ ଧୀରେ ଧୀରେ ଅସଲି ଯାତ୍ରୀମାନଙ୍କୁ ଏପରି ଭାବରେ ଘେରିବସିଥାଆନ୍ତି ଯେ, ତାଙ୍କ ସର୍ଦ୍ଦାରଙ୍କ ଇସାରା ପାଇବାମାତ୍ରେ ସେମାନେ ଯାତ୍ରୀମାନଙ୍କ ଗଳାରେ ଆଖିପିଛୁଡ଼ାକେ ଫାଶ ଲଗାଇ ଦେଇ ଏପରି କାଇଦାରେ ସେମାନଙ୍କୁ ଅଣନିଃଶ୍ୱାସୀ କରିଦିଅନ୍ତି ଯେଉଁଥିରେ ପିଣ୍ଡରୁ ପ୍ରାଣ ଉଡ଼ିଯିବା ଲାଗି ଖୁବ୍ ବେଶି ସମୟ ଲାଗେନାହିଁ । ତା'ପରେ ସେଇ ହତଭାଗ୍ୟ ଯାତ୍ରୀମାନଙ୍କୁ ସମୁଦ୍ର ଜଳରେ ବିସର୍ଜନ କରିଦେଇ ତାଙ୍କ ମାଲପତ୍ରଗୁଡ଼ିକୁ ନିଜ ନିଜ ମଧ୍ୟରେ ବାଣ୍ଟି ନିଅନ୍ତି ।

ଆନା ଲକ୍ଷ୍ୟ କଲା—ଏହା ମଧ୍ୟରେ ମୈତ୍ରେୟୀ ଭୟରେ ଆଖି ବୁଜିଦେଇଛି । ସେ ଆନାକୁ ବାଧା ଦେଇ କହିଲା—"ହଁ, ଆଉ ସେମାନଙ୍କ କଥା କୁହନି । ମୁଁ ଆଉ ସେ ନୃଶଂସ ମଣିଷଗୁଡ଼ାଙ୍କ ଜଘନ୍ୟ କର୍ମ ଶୁଣି ଧୈର୍ଯ୍ୟ ଧରିପାରିବି ନାହିଁ । ମୋ' ଆଖି ଆଗରେ ଭାସି-ଉଠୁଛି ସେଇ ନିରୀହ ଯାତ୍ରୀମାନଙ୍କ ମୃତ୍ୟୁର କରୁଣ ତଥା ହୃଦୟବିଦାରକ ଦୃଶ୍ୟ ।"

ଆନା ମୈତ୍ରେୟୀକୁ ଆଶ୍ୱସ୍ତ କରାଇ କହିଲା—"ସେଇ ବୀଭତ୍ସ ଦୃଶ୍ୟର ଭୟ ଧୀରେ ଧୀରେ ଶେଷ ହୋଇଆସୁଛି । ସ୍ଲିମାନ୍ ସାହେବ ଓ ତାଙ୍କ ଦଳ ଦସ୍ୟୁମାନଙ୍କୁ ସାବାଡ଼ କରି ଦେଲେଣି । ଆଉ ଆଗ ପରି ଜଳଦସ୍ୟୁମାନଙ୍କର ଉତ୍ପାତ ନାହିଁ । କେଉଁଠି କେମିତି କାଁ ଭାଁ ଏବେ ଦସ୍ୟୁଗିରି ଚାଲିଛି ।"

ଆନା କିଛି ସମୟ ନୀରବ ରହିବା ପରେ ପୁଣି ଆରମ୍ଭ କଲା—"ହୋସେନ୍ ଖାଁ ଦନ କେଉଟା ଭିତରେ ନିଜର ଗୋଟିଏ ପକ୍କା ଦଳ ଗଢ଼ିନେଲା । ଫାଶ ବସେଇ ଲୋକଙ୍କୁ ମାରିବା ଥିଲା ତା'ର ବ୍ୟବସାୟ । ସେଇ ବେଉସା ସେ ଅଦ୍ଭୁତ ଚତୁରତାର ସହିତ ଖେଜୁରି ବନ୍ଦର ନିକଟସ୍ଥ ହଲଦୀ ନଦୀ କୂଳରେ ଆରମ୍ଭ କରିଦେଲା । ଫଲ୍‌ମନ୍ ମଧ୍ୟ ପୂର୍ବପରି ହୋସେନ୍ ଖାଁକୁ ସାହାଯ୍ୟ କରିବାକୁ ଲାଗିଲା ।

ପୋଷ୍ଟ ଅଫିସ୍‌କୁ ବ୍ୟବସାୟୀମାନେ ଟଙ୍କା ନେବାକୁ ଆସନ୍ତି । ଡାକଘରୁ ଟଙ୍କା ଉଠାଇ ସେମାନେ ନିଜନିଜର ଗନ୍ତବ୍ୟ ପଥରେ ଆଗେଇଯାଆନ୍ତି । ସେମାନଙ୍କ ଖବର ଫଲ୍‌ମନ୍ ସଙ୍ଗେ ସଙ୍ଗେ ହୋସେନ୍ ଖାଁଙ୍କୁ ଜଣାଇଦିଏ । ସେଇ ସୁଯୋଗରେ ହୋସେନ୍ ଖାଁ କଳେ-ବଳେ କୌଶଳେ—ସ୍ଥଳପଥରେ ହେଉ ଅବା ଜଳପଥରେ ହେଉ, ଯାତ୍ରୀମାନଙ୍କ ଧନ ଓ ଜୀବନ ଏକ ସଙ୍ଗରେ ହରଣ କରିନିଏ । ଏହିପରି ଭାବରେ ହୋସେନ୍ ଖାଁର ବେପାର ଖୁବ୍ ଭଲଭାବରେ ଚାଲିଲା । ସେ ମାଲମାଲ୍ ହେବା ସଙ୍ଗେ ସଙ୍ଗେ ଫଲ୍‌ମନ୍ ତା' ଭାଗରେ ବେଶ୍ ମୋଟା ଟଙ୍କା ଆଦାୟ କଲା ।

ଏହା ମଧ୍ୟରେ ହୋସେନ୍ ଖାଁ ନିଜ ବେଉସାରେ ମନଦେଇ ଲାଗିପଡ଼ିଲା । ତା'ର ଧାରଣା ଥିଲା—କିଛିଦିନ ପରିଶ୍ରମ କରି ବେଶ୍ ଦି'ପଇସା ହାତପାଆନ୍ତ କରିନେଲେ, ସେ ଆଉ ଏ ବିପଦପୂର୍ଣ୍ଣ ଧନ୍ଦା କରିବନାହିଁ । କାରଣ ଧୀରେ ଧୀରେ ଶ୍ଳୀମାନ୍ ସାହେବର ନଜର ଦସ୍ୟୁମାନଙ୍କ ଉପରେ କଠୋରରୁ କଠୋରତର ହୋଇଉଠୁଛି—ଆଉ ସୁରୁଖୁରୁରେ ବେଉସା ଚଳାଇବା ସମ୍ଭବ ହେଉନାହିଁ । ତେଣୁ ଏ ବ୍ୟବସାୟଟାକୁ ବନ୍ଦ କରିଦେବା ଆଗରୁ ହୋସେନ୍ ଖାଁ ଗୁରିଆଡ଼େ ମେଲିଯାଇଥିବା ତା' କାରବାରଟିକୁ ଗୋଟେଇବାକୁ ବେଶ୍ କିଛିଦିନ ଅକ୍ଳାନ୍ତ ପରିଶ୍ରମ କଲା । ତେଣୁ ସେଇ କାମରେ ବ୍ୟସ୍ତ ରହି, ସେ କିଛିଦିନ ଘରକୁ ଫେରିପାରିଲା ନାହିଁ । ଏଇ ସୁଯୋଗର ଠିକ୍ ଖବର ରଖିଥିଲା ଫଲ୍‌ମନ୍ । ଲକ୍ଷୋଠାରୁ ମେଦିନୀପୁର ଯାଏଁ ସେ ଯେଉଁ ଜାଲ୍ ପାରିଥିଲା, ବେଳକାଳ ଜାଣି ଠିକ୍ ଗୋଲିଆପାଣିରୁ ମାଛ ଧରିବାକୁ ପଛେଇଲାନାହିଁ ।

ଦିନେ ସେ ଶାକିନା ବେଗମ୍‌କୁ ମୁହଁ ଖୋଲି କହିଲା, "ଶାକିନା, ତୋର ସେହି ଫୁଲବାଲ୍ଲୀ ଚେହେରା ଦେଖିବାକୁ ଏ ଆଖି ତରସି ଉଠୁଛି । ତୋର ସେ ଚେହେରା ଆଉ ଏବକାର ଚେହେରାରେ ଆକାଶ-ପାତାଳ ଫରକ୍ ହୋଇଗଲାଣି । ଲକ୍ଷୋର ଫୁଲ ବଜାରରେ ତୋର ମିଠା ମିଠା ହସ, ତୋ ସୁର୍ମାବୋଳା ଆଖିର ଇସାରା ଲୁଦ୍ଧଟାକୁ କରିଥ ଦେଉଥିଲା । କିନ୍ତୁ···"

ବାରଘାଟରେ ପାଣି ପିଇଥିବା ଶାକିନା ଫଲ୍‌ମନ୍‌ର ଇସାରାକୁ ବେଶ୍ ହୃଦୟଙ୍ଗମ କରି, ଇଶାରାର ଜବାବ୍ ଇଶାରାରେ ଦେଇ ଓଠ ଫାଙ୍କରେ ହସର ଢେଉ ଖେଳାଇଦେଲା ।

ଫଲ୍‌ମନ୍ ଶାକିନାର ଇଶାରା ପାଇ ମନେ ମନେ ଫୁଲିଉଠିଲା । ସେ ଆହୁରି ଟିକିଏ ପାଖକୁ ଆଗେଇଯାଇ କହିଲା—"ଶାକିନା, ତୋ' ମୁହଁର ଏଇ ମିଠା ମିଠା ହସ ଦେଖିବାକୁ କେତେଦିନରୁ ମୋ' ଆଖି ହାଉଁପାଉଁ ହେଉଥିଲା । କିନ୍ତୁ ଲକ୍ଷୋର ବଜାରର ସେଇ ମନମତାଣିଆ ହସ ଅପେକ୍ଷା ଆଜି ମୋତେ ଖୁବ୍ ଭଲ ଲାଗିଲା ତୋର ଏଇ ହସ ହସ ମୁହଁଟି । କିନ୍ତୁ ମୋର ଗୋଟିଏ ଦୁଃଖ, ହୋସେନ୍ ତୋ' ହସ ହସ ମୁହଁରୁ ଝରିପଡ଼ୁଥିବା ମହୁ ଚାଖି ଭାବରେ ବିଭୋର ହୋଇଯିବାକୁ ସମୟ ପାଉନି । ତା' ଆଖିରେ ଲାଖିରହିଛି କେବଳ ପଇସାର ଝକ୍‌ଝକିଆ ଜିନିଷ । ସେଇ ଜିନିଷ ସ୍ବାଦରେ ତା' ଆଖି ଝଲସିଯାଇଛି । ସେ ଆଉ ତୋର ଏ' ହସରୁ ମଜା ପାଇବାର ମତଲବ୍‌ରେ ନାହିଁ ।

ବେଶ୍ କିଛିଦିନ ଫଲ୍‌ମନ୍ ଶାକିନାର ହୃଦୟ ତେଉରେ ଉଦ୍‌ବେଳିତ ହୋଇ ହୋଇ ସମୟ ବିତାଇବାକୁ ଲାଗିଲା । ଆଉ ଫଲ୍‌ମନ୍ ଯାହା ଅନେକ ଦିନରୁ ଆଶା କରି ରହିଥିଲା, ତା'ର କଳକଉଶଳରେ ସେ ଆଶା ପରିପୂର୍ଣ୍ଣ ହେବାକୁ ଲାଗିଲା ।

ନୂତନ ଆଲୋକର ଝଲକରେ ଶାକିନାର ମନଗହନରେ ଖେଳିଗଲା ଅଲୌକିକ ଭାବଧାରା । ସେ କିଛିଦିନଧରି ସେହି ଧାରାରେ ନିଜକୁ ଭସେଇଦେଇ ନିଜର ରଙ୍ଗିନ୍ ମନଟାକୁ ଆହୁରି ତୀବ୍ରବେଗରେ ଅଧିକ ରଙ୍ଗେଇନେଲା । ଦୁର୍ଦ୍ଦାନ୍ତ ହୋସେନ୍ ଖାଁର ଅନୁପସ୍ଥିତିର ସୁଯୋଗ ନେଇ ବେଶ୍ ହସଖୁସିରେ ମାତିଗଲେ । ସେଇ ହୃଦୟର କୁଞ୍ଜରେ ଭଙ୍ଗା ପଡ଼ିଯାଏ ହୋସେନ୍ ଖାଁର ଆଗମନରେ ।

ଲାହୋରଠାରୁ ଆରମ୍ଭକରି ଫଲ୍‌ମନ୍ ଯେଉଁ କମିଅ ଚଳାଇ ଆସିଥିଲା ସେଷକୁ ଦେଇ କମିଆରେ ତାକୁ ବିଜୟଶ୍ରୀ ହାତପାହାନ୍ତାରେ ମିଳିଗଲା । ସେ ବୁଲ୍‌କିର ଫାନ୍ଦ ବସେଇ ଶାକିନା ବିବିର ରଙ୍ଗିନ୍ ମନଟାକୁ ଅକ୍ଲେଶରେ ଜୟ କରିନେଲା । ଶାକିନାର ରଙ୍ଗିନ୍ ଗୋଲାପ ପରି ନରମ ବୁକୁ ଫଲ୍‌ମନ୍‌ର ଯାଦୁର ନିଶାରେ କେତେଦିନ ମଧ୍ୟରେ ଘାଉ ହୋଇଗଲା ।

ଫଲ୍‌ମନ୍ ନାନା ପ୍ରକାର କୌଶଳ କରି ହୋସେନ୍ ଖାଁକୁ ନୂଆ ନୂଆ କାମରେ ଲଗାଇଦେଇ ବାହାରକୁ ପଠାଇଦେଲା ଏବଂ ସେଇ ସୁଯୋଗରେ ଏକୁଟିଆ ଘରେ ଶାକିନା ସହିତ ଅବାଧରେ ଚାଲିଲା ତା'ର ରଙ୍ଗରହସ୍ୟ । ତା'ପରେ ଶାକିନା ବିବି ବଦୂର୍ଗିରୁ ବେଗମ୍ ବନିଗଲା ସେଇ କେତୋଟି ଦିନ ।

କିନ୍ତୁ ପ୍ରେମର ନିଶାରେ ମଶଗୁଲ୍ ଫଲ୍‌ମନ୍ ଓ ଶାକିନା ବାହାରର ଗତିବିଧି ପ୍ରତି ଆଦୌ ସଜାଗ ହେଲେ ନାହିଁ । କାରଣ, ପ୍ରେମିକ ଓ ପ୍ରେମିକାଙ୍କ ଅନ୍ତରରେ ଯେତେବେଳେ ପ୍ରେମର ଆଲୋକ ଜଳିଉଠେ, ସେତେବେଳେ ତାଙ୍କ ଚକ୍ଷୁରୁ ଦୃଷ୍ଟିଶକ୍ତି ଅପହୃତ ହୋଇଯାଏ । ବୃକ୍ଷ ଉପରେ ପକ୍ଷୀଯୁଗଳ ଯେତେବେଳେ ଆନନ୍ଦରେ ନିମଗ୍ନ ହୋଇ କଳକୂଜନରେ ମାତିଥାଆନ୍ତି, ଠିକ୍ ସେତିକବେଳେ ବ୍ୟାଧର ତୀକ୍ଷ୍ଣ ଶର ତାଙ୍କର ହୃଦୟକୁ ଭେଦକରେ ।

ହୋସେନ୍ ଖାଁ ଥିଲା—ଏକ ଅସଲ ଶିକାରୀ । ଜଳ ଓ ସ୍ଥଳପଥରେ ସେ ଅନେକ ମୂଲ୍ୟବାନ୍ ଜୀବନକୁ ଅଖିପିଛୁଡ଼ାକେ ଶିକାର କରି ଚିରଦିନ ଲାଗି ଧରାପୃଷ୍ଠରୁ ସେମାନଙ୍କ ନାମ ନିଶାଣ ଉଠେଇ ଦେଇଛି । ନିଜ ଘର ଭିତରର ବେଇମାନ୍ ଚଢ଼େଇଟିକୁ ତା'ର ଜାଲରେ ପକାଇ ଚିରଦିନଲାଗି ସଂସାରରୁ ଉଡ଼ାଇ ଦେବାପାଇଁ ସେ ଆରମ୍ଭ କରିଦେଲା ତା'ର ଯୋଜନା । ତା'ର ବ୍ୟାଧଜୀବନର ଏହାହିଁ ହେବ ଶେଷ ଶିକାର । ଏହା ପରେ ଚିରଦିନଲାଗି ଏଇ ଶିକାରୀ ଜୀବନରୁ ମୁକ୍ତ ହୋଇ ଏକ ସଭ୍ୟ ସମାଜର ସଦସ୍ୟ ହୋଇ ରହିବାକୁ ସେ ମନସ୍ଥ କଲା । ତେଣୁ ଯେଉଁ ଚଢ଼େଇଟିକୁ ସେ ଆଦରରେ ଲାହୋରରୁ ଧରିଆଣି ସୁନାପଞ୍ଜୁରିରେ ଥୋଇଥିଲା, ତା'ର ବେକ ମୋଡ଼ିଦେବାଲାଗି ହୋସେନ୍ ଖାଁର ହାତ ବ୍ୟତିବ୍ୟସ୍ତ ହେବାକୁ ଲାଗିଲା ।

ସେଇ ମତଲବରେ ସେ ଦିନେ ପ୍ରସ୍ତାବ କଲା ଶାକିନା ଆଗରେ—ଆଗାମୀ ପୂର୍ଣ୍ଣିମା ଦିନ ଆମେ ଯିବା ଗୋଟିଏ ନୂତନ ସ୍ଥାନକୁ । ସେ ସ୍ଥାନଟି ହେଉଛି ଦରିଆପୁରର ବାଲିଚର । ନଦୀ ଓ ସମୁଦ୍ରର ସେଇ ମିଳନ ସ୍ଥଳରେ ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନୋମୁଗ୍ଧକର । ସେଠାକାର ପ୍ରାକୃତିକ ସୌନ୍ଦର୍ଯ୍ୟ ଥରେ ଯେ ଦେଖିଛି ତା'ର ଜୀବନରେ ସେ ଦୃଶ୍ୟ ଅପାସୋରା ହୋଇ ରହିଛି । ଆମେ ଦୁହେଁ ଯିବା ସେଇ ଆନନ୍ଦର ଉପଭୋଗ ଲଗି । ଏହା ହେବ ଆମ ପ୍ରେମମୟ ଜୀବନର ସର୍ବଶ୍ରେଷ୍ଠ ନିଶାଣ । ପ୍ରକୃତିର ସେଇ ଅପାସୋରା ଜଗତରେ ଆମେ ଦୁହେଁ ହେବା ଆନନ୍ଦରେ ବିଭୋର ।

ହୋସେନ୍ ଖାଁ ନିଜର ପ୍ରଣୟିନୀ ଶାକିନା ବେଗମକୁ ଏତିକି କହିଦେଇ ଭାବିଲା—ଏଇଠି ପଡ଼ିବ ମୋ' କୁତ୍ସିତ ଜୀବନର ଶେଷ ଦୃଶ୍ୟର ଯବନିକା । ବିଶ୍ୱାସଘାତକତାର ତୋଟି ଚିପି ଚିରଦିନଲଗି ସାଗର ଜଳରେ ସମାଧି ଦେବ ।

ସ୍ୱାମୀର ମନ ରଖିବା ପାଇଁ ବାଧ୍ୟହୋଇ ଶାକିନା ଛଳନାର ଏକ ମନ୍ତ୍ରବଡ଼ ଅଭିନୟ ଆରମ୍ଭ କରିଦେଲା । ସତେ ଯେପରି ସେ ଏହିପରି ଏକ ପ୍ରସ୍ତାବକୁ ଅପେକ୍ଷା କରି ରହିଥିଲା ! ଶାକିନାର କୃତ୍ରିମ ସୋହାଗ ମଧ୍ୟ ହୋସେନ୍ ଖାଁ ଆଖିରେ ଛପି ରହିଲା ନାହିଁ । ତେଣୁ ନିର୍ଦ୍ଦିଷ୍ଟ ଦିନ ହଳଦୀ ନଦୀରେ ତୀବ୍ରବେଗରେ ଛୁଟିଚାଲିଲା ହୋସେନ୍‌ର ନଉକା ।

ନୌକା ଚାଳନାରେ ସିଦ୍ଧହସ୍ତ ହୋସେନ୍ କ୍ଷିପ୍ରବେଗରେ ଆହୁଲା ମାରି ତା'ର ବିଶ୍ୱାସଘାତିନୀ ପ୍ରଣୟିନୀକୁ ନେଇଆସି ପହଞ୍ଚିଗଲା ଦରିଆପୁରର ସେଇ ଅପାସୋରା ମନୋମୁଗ୍ଧକର ସଙ୍ଗମସ୍ଥଳୀରେ ।

ଚାନ୍ଦର ଚାନ୍ଦନୀଠାରୁ ଆହୁରି ସ୍ୱଚ୍ଛ ତଥା ସୁଷମାମୟ ହୋଇଉଠିଲା ଶାକିନାର ମନର ଆନନ୍ଦ । ସେ ଦରିଆପୁରର ସେଇ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇଉଠିଲା । ଆନନ୍ଦର ମୌନଝଙ୍କାରରେ ତା'ର ହୃଦୟତନ୍ତ୍ରୀଟି କଳକଳ ରବରେ ଝଂକୃତ ହୋଇଉଠିଲା । ଛଳନାମୟୀ ଶାକିନା ମୁଖମଣ୍ଡଳରେ ଛଳନାର ଅଭିମାନ ଭରିଦେଇ, ଦରଦ କଣ୍ଠରେ କହିଲା—"ଦିଲ୍ ଜାନ୍, ଏତେଦିନଯାଏଁ ମୋତେ ଏଡ଼େ ସୁନ୍ଦର ଜାଗାଟିକୁ ଆଣି ନଥିଲ କାହିଁକି ? ତୁମେ ଯଦି ମୋତେ ସତରେ ଭଲପାଉଥାଆନ୍ତ, ତା'ହେଲେ ଆଜିଯାଏଁ ଏଡ଼େ ସୁନ୍ଦର ଜାଗାଟି ମୋତେ ଦେଖାଇ ନଥିଲ କାହିଁକି ?"

ହୋସେନ୍ ଖାଁ ଥିଲା ଦସ୍ୟୁ ଦଳର ସର୍ଦ୍ଦାର । ଛଳନା ତା'ର ଚିର ସହଚର । ସେ ଲୋକମାନଙ୍କୁ ଛଳନାପୂର୍ଣ୍ଣ କାରସାଦିରେ ଆକୃଷ୍ଟ କରିବା ପାଇଁ ଘଣ୍ଟା ଘଣ୍ଟା ଧରି ଗଛମୂଳରେ ବସି ଭଜନ ଗାଇଛି । ଗଡ଼ିସାରି ବୁକ୍ ଫଟାଇ କାନ୍ଦି କାନ୍ଦି ଯାତ୍ରୀମାନଙ୍କ ଦୃଷ୍ଟି ଆକର୍ଷଣ କରିଛି । ତା'ରି ଫଳରେ ସେ ଯାତ୍ରୀଙ୍କୁ ଆପଣାର କରିନେଇ, ତାଙ୍କରି ସାହାଯ୍ୟରେ ଯାତ୍ରା ଶେଷ କରିବାର ଛଳନା କରିଛି । ତା'ର ଛଳନାପୂର୍ଣ୍ଣ ଅଭିନୟରେ ଭାସିଯାଇ କେତେ ଯେ ଭାଗ୍ୟହୀନ ପଥଚାରୀ ସେଇ ତୀକ୍ଷ୍ଣ ଛୁରିକାକୁ ଆଦରର ସହିତ ଅଣ୍ଟିରେ ପୂରେଇ ଦୂର ଦେଶକୁ ଯାତ୍ରା କରିବାର ସାହସ ବାନ୍ଧିଛନ୍ତି, ତା'ର ସଂଖ୍ୟା ଗଣନା କରିବା ସମ୍ଭବ ନୁହେଁ ।

ଶେଷକୁ ସେଇ ଅଣ୍ଡିଚୁର ତଣ୍ଡିଯାଚି ବିଶ୍ରାମ ସ୍ଥାପନ କରିଥିବା ପଥିକଙ୍କୁ ଚିର ନିଦ୍ରାରେ ଶୁଆଇଦିଏ । ଯାର ଜୀବନ ବିଶ୍ୱାସଘାତର ବିଜୟବାନା ଉଡ଼ାଇ ହୋସେ ଖାଁ ଯାଉଛି ଦିଗ୍‌ବିଜୟୀ ସମ୍ରାଟ୍—ତା' ଆଗରେ ଶାକିନା ବେଗମ୍‌ର ଛଳନା କେତେ ମାତ୍ର ! ନାରୀର ପ୍ରହେଳିକାମୟୀ ଛଳନାକୁ ହୋସେନ୍ ଖାଁର ସର୍ବଗ୍ରାସୀ ଛଳନା ଶତ ଗୁଣରେ ବଳିପଡ଼ିଲା । ତେଣୁ ଶାକିନା ହୋସେନ୍ ଖାଁର ଅସଲ ମତଲବ୍‌ଟାକୁ କୌଣସିମତେ ବୁଝିପାରିଲେନାହିଁ ।

ସେଦିନ ନୌକା ଭିତରେ ଖିଚଡ଼ି ଖାତର ଯୋଗାଡ଼ କରିଥିଲେ ହୋସେନ୍ । ଏମିତିକା ସୁନ୍ଦର ଜାଗାରେ ଗୋଟେ ଖାଇବା ପିଇବାର ଆୟୋଜନ ନକଲେ ମଜା ହେବ କିପରି ?

ଅବଶ୍ୟ ହୋସେନ୍‌କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଥିଲେ ଶାକିନା । କିନ୍ତୁ ହୋସେନ୍ ଖାଁ ଛଳନାର ଏକ ଜାଲ ବିଛାଇଦେଇ, ଶାକିନାକୁ ସେଠାରୁ ଦୂରେଇ ଦେଇ କହିଲେ –"ତୁମେ ଏତେ ସୁନ୍ଦର ପ୍ରାକୃତିକ ଶୋଭାପୂର୍ଣ୍ଣ ପରିବେଶଟାକୁ ବେଶ୍ ଆଖି ପୂରେଇ ଦେଖିନିଅ, ଆଉ ମନଭରି ଏ' ଆନନ୍ଦ ଉପଭୋଗ କର । ମୁଁ ଏଇ ଲଗେ ଖାନା ତିଆରି କରି ନେଇଯିବି ତୁମ ପାଖକୁ । ଦୁହେଁଯାକ ପାଖାପାଖି ହୋଇ ବସିବା ଆଉ ଖାନା ହାତରେ ମନଭରି ଉପଭୋଗ କରିବା ଏଇ ସ୍ୱପ୍ନପୁରୀର ଅପରୂପ ସୁଷମା । ଏଠାରେ ଭୟ କରିବାର କିଛି କାରଣ ନାହିଁ । ବହୁବାର ମୁଁ ଏଇ ସ୍ଥାନରେ ବସି ଆନନ୍ଦ ଉପଭୋଗ କରିଛି । ଆଜି ସୁଯୋଗ ମିଳିଛି—ମନଭରି ଏ ଆନନ୍ଦ ଉପଭୋଗ କର । ମୁଁ ସଙ୍ଗେ ସଙ୍ଗେ ଯାଇ ତୁମ ସଙ୍ଗରେ ମିଶିଯିବି ।"

ଶାକିନା ଛଳନାକୁ ସତ ବୋଲି ମଣି ଆଗେଇଗଲେ ସେଇ ବାଲିଚରରେ କେତେ ଦୂର । ଆକାଶରୁ ଝରିପଡ଼ୁଛି ଚନ୍ଦ୍ରର ଅମୃତ କଳସରୁ ଜୋଛନାର ଅମିୟ ଝର । ଜୋଛନାର ଢେଉରେ ନାଚିଉଠୁଛି ଅନନ୍ତ ପାରାବାର—ଅଥଳ ସଙ୍ଗମ ।

ହଲଦୀ ନଦୀ ବିଶାଳବକ୍ଷ ମେଲିଦେଇଛି ସାଗର ପାଖରେ । ତ୍ରିକୋଣଭୂମିର ବିସ୍ତୃତ ଅଞ୍ଚଳ କେବଳ ବାଲିଚର···ବାଲିଚର । ମଝିରେ ମଝିରେ ଝାଁ-ଭାଁ କେଉଁଠି କେମିତି ଗୋଟେ ଅଧେ ଝାଙ୍କଲ ଗଛ ବାଲିଚରର ସୁଷମାକୁ ଦ୍ୱିଗୁଣିତ କରିଦେଉଛି । ତା'ର ଆଖ ପାଖରେ ·ବାଲିସ୍ତୂପ ଗଢ଼ିଉଠିଛି ଗୋଟିଏ ଗୋଟିଏ ଛୋଟ ଛୋଟ ପାହାଡ଼ ପରି । ଜହ୍ନ ଆଲୁଅ ବିଛେଇଦେଇଛି ସେଇ ପାହାଡ଼ ଉପରେ ମେଞ୍ଚାଏ ହେବ ସୁନେଲି କିରଣ । ତେଣୁ ଶୀତଳ ରଶ୍ମିରେ ଝଲସିଉଠୁଛି ବାଲିର ପାହାଡ଼ । ଅଦୂରରେ ମାୟାପୁରୀର ଲୁଚକାଳି ଖେଳ ଖେଳୁଛି । ଛୋଟ ଛୋଟ ନଦୀକୂଳିଆ ଗଛଗୁଡ଼ିକର ଏକତ୍ର ସମାବେଶ । ସତେ ଯେପରି ପ୍ରକୃତିରାଣୀ ଏଇଠି, ଏଇ ପୂନିଆଁ ରାତିରେ ଅଜାଡ଼ି ଦେଇଛି ତା'ର ସୌନ୍ଦର୍ଯ୍ୟ ପସରା । ଆନନ୍ଦରେ ବିଭୋର ହୋଇଉଠିଲା ଶାକିନାର ଆନନ୍ଦ ମଗ୍ନ ମନ । କିନ୍ତୁ ପରକ୍ଷଣରେ ତା'ର ଅନ୍ତରରୁ କ୍ରନ୍ଦନର ରାଗିଣୀଟିଏ କରୁଣ ମୂର୍ଚ୍ଛନା ତୋଳି ଭାସିଉଠିଲା—ଆଃ, ଏଇ ଅପାସୋରା ସୁଖଦ ମୁହୂର୍ତ୍ତରେ ପାଖରେ ଥାଆନ୍ତା କି ସେଇ ମନର ମଣିଷ ସଲିମନ୍ ସାହେବ ! ତା'ର ମନେହେଲା—ସତେ ଯେପରି ଦୂର ଗଗନର ଚନ୍ଦ୍ରଟି ବି ତା'ରି ଦୁଃଖରେ ଝରାଇଚାଲିଛି ସମବେଦନାର ଶିଶିର ବିନ୍ଦୁ ।

ଅଦୂରରେ ନଦୀର ଜଳପ୍ରବାହ ସୃଷ୍ଟି କରୁଛି ସ୍ୱପ୍ନର ଜୁଆର । ପ୍ରାଣପ୍ରିୟ ସାଗରକୁ ହାତପାହାନ୍ତାରେ ପାଇ ଆନନ୍ଦରେ ଫାଟିପଡ଼ୁଛି କଲ୍ଲୋଳମୟୀ ବୁକୁ । ହୁଏତ ତା'ର ଆନନ୍ଦରେ ସ୍ୱର ମିଳାଇ ଦେଉଛି ଗଙ୍ଗେଇ ଡୁବେଇ ଚଢ଼େଇଟି । ଜ୍ୟୋତ୍ସ୍ନାଧବଳିତ ରାତିଟିକୁ ଦିନ ବୋଲି ମନେକରି ତରଙ୍ଗମାଳାର ଠିକ୍ ଉପରେ ଦ' ଡେଣା ମେଲି ଦେଇ ଅପୂର୍ବ କୂଜନରେ ନିସ୍ତବ୍ଧ ରଜନୀକୁ ଚମକେଇଦେଉଛି । ନଈକୂଳିଆ ବତାପରୁ ଭାସି ଆସୁଥିଲା ସୁ···ଉ···ସୁ···ଉ···ସ୍ୱର ।

ଶାକିନା ଆନମନା ହୋଇ ଆଗେଇଗଲା ଅନେକ ଦୂର ଯାଏଁ । କାହିଁ କେଉଁଠି ରହିଲାଣି ହୋସେନ୍ ଖାଁର ନୌକାଟି ! ନୌକାର କଳା ମଟ୍‌ମଟ୍ ଛାଇଟା ଆଉ ଦେଖା ଯାଉନି । ନାକସଳଖା ଆଗେଇଚାଲିଛି ଶାକିନା । ହୋସେନ୍ ଖାଁ ତାକୁ ଲଗାମ୍‌ଛଡ଼ା କରିଦେଇ ଆଗେଇଯିବା ଲାଗି ହସି ହସି ଅନୁମତି ଦେଇଛି । ସାମାନ୍ୟ ଟିକଏ ଫେରୁଡ଼ି ଡ଼ଆରି କରି ହୁଏତ ସେ ଏଇଲିରେ ଆସି ପହଞ୍ଚିଯିବ ।

କିନ୍ତୁ ଆଜିର ଏଇ ଜୋଛନାଧୂଆ ବାଲିଚର ଉପରେ ହୋସେନ୍ ଖାଁର ସାନ୍ନିଧ ତାକୁ ଆଦୌ ଭଲ ଲାଗିଲା ନାହିଁ । ତା'ର ପିଆସୀ ଆଖିଟା ଲାଖିରହିଲା ଫଲ୍‌ମନ୍‌ର ମାହେଜବୀ ଚେହେରା ଉପରେ । ବିବାହିତ ଜୀବନରେ ସେ ବା କେଉଁଟା ଦିନ ପାଇଛି ହୋସେନ୍ ଖାଁକୁ ତା'ର ବାସର ଶେଯରେ ଏକାନ୍ତ ଆପଣାର କରି ଜସ୍ତୋଳା ନରମ ଶେଯରେ ! ତା'ର ଝିଲ୍‌ମିଲ୍ ଚେହେରା ଓ ଗୋଲାପୀ ଅଧରରେ ଅଧର ମିଶାଇ ଦିନେହେଲେ କ'ଣ ସେଇ ମନ୍ତ୍ରଲଗା ପ୍ରେମିକଟା ତା' କାମଧନ୍ଦା ଭୁଲିପାରିଛି ! ସବୁବେଳେ ଖାଲି କାମ ଆଉ କାମ, ଧନ୍ଦା ଓ ଫନ୍ଦା, ଟଙ୍କା ଓ ସୁନା । ଲୋକଟା ଧନରତ୍ନର ତଉଲରେ ତଉଲୁଛି ପ୍ରେମିକାର ପ୍ରଣୟକୁ । ସାରା ଦିନ ଓ ସାରା ରାତି କେବଳ କାମ ଆଉ ଧନ୍ଦା । ସତେଯେପରି, ନଉକା ଚଳାଇ କାମ ଧନ୍ଦାରେ ବାହାରିଯିବା ବ୍ୟତୀତ ସଂସାରରେ ଆଉ କିଛି ହେଲେ କାମ ନାହିଁ !

ଚନ୍ଦ୍ରକିରଣରେ ଆଲୋକିତ ସୁନେଲି ବାଲିଚର ଉପରେ ଏକୁଟିଆ ବୁଲୁବୁଲୁ ଶାକିନାର ମନରେ ଅନେକ ଦିନରୁ ଜମାଟ ବାନ୍ଧିଥିବା କେତେ ଭାବନା ଦୁଆର ଖୋଲି ବାହାରିଆସିଲା । ଲାହୋର୍‌ଠାରୁ ଖେଜୁରି ବନ୍ଦରଯାଏଁ ଦିନଗୁଡ଼ିକ ସବୁ ଗୋଟି ଗୋଟି ହୋଇ ତା'ର ଆଖିଆଗରେ ଝଲେଇ ହୋଇଗଲା । ଅନେକ ଥର ତା' ମନଟା ବିଦ୍ରୋହୀ ହୋଇଉଠିଥିଲା ହୋସେନ୍‌ର ବେପରୁଆ ବ୍ୟବହାରରେ । କିନ୍ତୁ ଆଜିର ଏଇ ଜୋଛନା-ଧୋଆ ସୁନେଲି ରାତିରେ ସେ ଏକାବେଳକେ ଚିଡ଼ି ଉଠିଲା ହୋସେନ୍ ଖାଁ ଉପରେ । ସେ ତା'ର ଆଚରଣ ଉପରେ ଆଜି ପ୍ରଥମଥର ଲାଗି ସନ୍ଦେହ କରିବସିଲା । ସେ ମନେ ମନେ ଭାବିଲା—ନିଶ୍ଚୟ ହୋସେନ୍ ଖାଁ ଚୋରି ବା ଡକାୟତି କରିବାରେ ଲାଗିଛି । ନହେଲେ ସୁନା ସୁନା ଗହଣା, ଥଳି ଥଳି ଟଙ୍କା, ବଣ୍ଡିଲ୍ ବଣ୍ଡିଲ୍ କେତେ ରକମର ଲୁଗା ସେ ଆଣୁଛି କୁଆଡ଼ୁ ? ଘୃଣାରେ ଦେହଟା ତା'ର ଶିରେଇ ଉଠିଲା ଶିର୍ ଶିର୍ କରି ଏବଂ ତା' ସଙ୍ଗେ ସଙ୍ଗେ ତା' ମାନସପଟଳରେ ଭାସିଉଠିଲା ଫଲ୍‌ମନ୍‌ର ପ୍ରେମାତୁର ରୂପ । ତା'ର ରଙ୍ଗିନ୍

ସ୍ୱହାଣିରୁ ଝରିପଡ଼େ ପ୍ରେମର ଅମିୟ ଝର । ସତେ ଅବା ଅମୃତର ଝର ପିଇକି ପଡ଼ୁଛି ତା'ର ମଧୁବୋଳା କଥା କେଉଁପଦରୁ !

ମନେ ମନେ ଆଶ୍ଚର୍ଯ୍ୟ ହୋଇଉଠିଲା ଶାକିନା ବେଗମ୍—ବାସ୍ତବରେ ପରସ୍ପର ବିରୁଦ୍ଧ ମତବାଦର ଲୋକ ଓ'ଙ୍କାଙ୍କ ମଧ୍ୟରେ ପ୍ରୀତି ବନ୍ଧୁତା ହେଲା କିପରି ?

ଶାକିନା ଯେତିକି ଯେତିକି ଭାବନାର ଅତଳ ଦରିଆରେ ବୁଡ଼ିକରି ଉପାଉଥିଲା, ସେତିକି ସେତିକି ତା' ମନରେ ଘୃଣାଭାବ ଜାଗିଉଠିଲା ହୋସେନ୍ ଖାଁର ଗଡ଼ବଧ ଉପରେ । ଭାବନାର ବୋଝରେ ମୁଣ୍ଡଟା ତା'ର ଭାରାକ୍ରାନ୍ତ ହୋଇଉଠିଲା ଏବଂ ସାରା ଦେହଟା ତା'ର ଝିମ୍ ଝିମ୍ କରିଉଠିଲା । ସେ ଆଉ ବେଶି କିଛି ଭାବି ନପାରି ସେଇଠି ହିଁ ବାଲିଚର ଉପରେ ବସିପଡ଼ିଲା ।

( ଚଉଦ )

ଫଲ୍‌ମନ୍‌ର ସୌମ୍ୟରୂପ ଶାକିନାର ମାନସପଟରେ ଭାସିଉଠିଲା । ସେ ତାଙ୍କଘରୁ କାମସାରି ଶୀଘ୍ର ଶୀଘ୍ର ଫେରିଆସେ ତା' ବଙ୍ଗଳାକୁ । ତା'ପରେ ଜଳଖିଆ ଖାଇସାରି, ନିଜର ପୋଷା କୁକୁରଟିକୁ ଧରି ବାଗାନ୍‌ର ଚାରିପଟେ ଘୂରିବୁଲେ ସେଇଠି । ତା'ପରେ ସୂର୍ଯ୍ୟାସ୍ତର କିଛି ସମୟ ପୂର୍ବରୁ ଧଳାଘୋଡ଼ାଟିର ପିଠିରେ ସବାର୍ ହୋଇ ବାହାରିପଡ଼େ ନଈକୂଳ ଆଡ଼େ । ସେତେବେଳେ ମନେହୁଏ ସତେ ଯେପରି ସେ ପକ୍ଷୀରାଜର ରାଜକୁମାର !

ହଠାତ୍ ସେ ରାଗିଉଠିଲା ଫଲ୍‌ମନ୍ ଉପରେ । ତା' ମନରେ ଯଦି ମୋ' ପ୍ରତି ଟିକିଏ ଆକର୍ଷଣ ଥିଲା, ସେ ଆଗରୁ ତା'ର ପ୍ରତିଚ୍ଛବି ପ୍ରକାଶ କଲା ନାହିଁ କାହିଁକି ? ମୋ' ମନ ଗହନର ଫୁଟନ୍ତ ଉଦ୍ୟାନରେ ସେ ଏତେ ବିଳମ୍ବରେ ବସନ୍ତର ମୃଦୁ ସମୀରଣ ପ୍ରବାହିତ କଲା କାହିଁକି ? ଦୁଇଟି ଡଙ୍ଗାରେ ଗୋଡ଼ ଦେଇ ଆଉ କେତେଦିନ ମୋତେ ଏପରି ଦୁଃସହ ଜୀବନ ବିତାଇବାକୁ ପଡ଼ିବ ?

ଶାକିନାର ଭାବନାସୂତ୍ର ହଠାତ୍ ସ୍ଥିର ହୋଇଗଲା । ସେ ସେତେବେଳକୁ ଅନ୍ୟମନସ୍କ ଭାବରେ ଅନେକଦୂର ଆଗେଇ ଯାଇଥିଲା । ଆଗରେ ଥିଲା ସୁନେଲି ବାଲିର ଗୋଟିଏ ପାହାଡ଼ । ଏତେ ସମୟ ଧରି ସେ ସେଇ ସୁନେଲି ପାହାଡ଼ଟିକୁ ଲକ୍ଷ୍ୟ କରି ଆଗେଇ ଚାଲିଥିଲା । ମଝିରେ ମଝିରେ କେଜାଣି କେମିତିକା ଗୋଟିଏ ଶବ୍ଦ ଭାସିଆସୁଥିଲା; କିନ୍ତୁ ଭାବନାର ପ୍ରଖର ସ୍ରୋତରେ ସେ ଭାସିଭାସି ଚାଲିଥିବାରୁ ସେ ଆଡ଼କୁ ତା'ର ଆଦୌ ଖିଆଲ୍ ନଥିଲା । ନଦୀ ଓ ସାଗରର ସଙ୍ଗମସ୍ଥଳରୁ ସେଇ କଳକଳ ଧ୍ୱନି ଭାସିଆସୁଥିଲା । ସେଇ କଳକଳ ଧ୍ୱନି ଶୁଣି ମନେହେଉଥିଲା, ସତେ ଯେପରି ଆବେଗର ଏକ ଉଚ୍ଛ୍ୱସିତ ଢେଉ ବେଳାଭୂମି ଆଡ଼କୁ ମାଡ଼ିଆସୁଛି । ସଙ୍ଗମ ସ୍ଥଳର ଢେଉ ପରି ଶାକିନାର ହୃଦୟ-ସାଗରରେ ଉଠୁଥିଲା ଅସଂଖ୍ୟ ତରଙ୍ଗର ଉଚ୍ଛ୍ୱାସ ।

ଅଦୂରର ଦୃଶ୍ୟ ଦେଖି ଚମକିପଡ଼ି ଚିତ୍କାର କରିଉଠିଲା ଶାକିନା—"କିଏ··· ! କିଏ ସେ !!" ବିସ୍ମୟରେ ବିସ୍ଫାରିତ ହୋଇଉଠିଲା ତା'ର ଢଳ ଢଳ ଉତ୍ପଳଦଳ ପରି ଚକ୍ଷୁ ଦୁଇଟି । ସେ ଆଖି ଦୁଇଟିକୁ ମଳିଚି ଭଲଭାବରେ ନିରୀକ୍ଷଣ କଲା । ନା, କେଉଁଠି ଭୁଲ ହୋଇନାହିଁ ତ ! ଶ୍ରାନ୍ତିଅଳସେ ସେଇ ସ୍ୱପ୍ନକାରର କୁହୁକ ବଳରେ ହୋଇ ପଡ଼ିଛି; ଆଉ ତା' ସାଥିରେ ଦାବନାଭୂତ ପରି ଛିଡ଼ାହୋଇଛି ବାଲିର ସୁନେଲି ପାହାଡ଼ । ପୁଣି ଥରେ ଆଗ ପରି ଆଖି ମେଲାଇ ଚାହିଁଲା ଶାକିନା । ହଁ, ସାମନାରେ ବାଲିର ପାହାଡ଼; ତା'ର ଅଢ଼ୁଆଳରୁ ଫଲ୍‌ମନ୍ ତାକୁ ହାତରେ ଇସାରାଦେଇ ପାଖକୁ ଡାକୁଛି ।

ଶାକିନା ଆନନ୍ଦରେ ପାଗଳିନୀ ହୋଇଉଠିଲା । ସେ ଆନନ୍ଦର ଆତିଶଯ୍ୟରେ କେଇ ପାହୁଣ୍ଡ ଦୌଡ଼ିଗଲା ଆଗକୁ । ତା' ପରେ ସେ ଭୟରେ ଜୁଡ଼ୁବୁଡ଼ୁ ହୋଇ ଦପ୍ କରି ଛିଡ଼ା ହୋଇଗଲା । ପ୍ରାଣଭୟରେ ଧାଇଁ ପଳାଉଥିବା ଜନ୍ତୁଟି ଯେପରି କିଛିଦୂର ଦୌଡ଼ିଯାଇ ଟିକିଏ ଅଟକିଯାଇ ପଛକୁ ମୁହଁ ବୁଲାଇ ଚାହେଁ, କାଳେ ମାରିବାକୁ ପଛେ ପଛେ ଗୋଡ଼ାଉଥିବା ଲୋକଟା ତା' ପଛରେ ଆସୁଛି କି ନାହିଁ—ଠିକ୍ ସେହିପରି ପଛକୁ ଫେରିପଡ଼ି ଚାହିଁଲା ଶାକିନା । ହୋସେନ୍ ଖାଁ କାହିଁ କେତେଦୂରରେ ରହିଲାଣି, ତା'ର ଆଖି ପାଇଲା ନାହିଁ । ଜ୍ୟୋତ୍ସ୍ନାର ରହସ୍ୟଜାଲ ତଳେ କେଉଁଠି ଯାଇ ରହିଲାଣି ତା'ର ନଉକାଟି । ସେଇଠି ତା'ର ଭିତରେ ଚୁଲି ଲଗାଇ ଖିଚୁଡ଼ି ପ୍ରସ୍ତୁତ କରୁଥିବ ସେ ।

ଦ୍ରୁତ ଗତିରେ ପାହୁଣ୍ଡ ପକାଇ ଆଗେଇବାକୁ ଲାଗିଲା ଶାକିନା । ବାଲିପାହାଡ଼ର ପାଦଦେଶରେ ପହଞ୍ଚିବା ବେଳକୁ ସେ କ୍ଳାନ୍ତହୋଇ ହଁ···ଅଁ···ହଁ···ଅଁ କରି ଘନ ନିଃଶ୍ୱାସ ଛାଡ଼ିବାକୁ ଲାଗିଲା । କ୍ଳାନ୍ତହୋଇ ଅସ୍ୱାଭାବିକ ଉତ୍ତେଜନାରେ ଶିହରିଉଠିଲା ତା'ର ତାଳୁରୁ ତଳିପାଯାଏଁ । ବାଲି ପାହାଡ଼ର ବିଶାଳ ପ୍ରତିବିମ୍ବ ଲମ୍ବିଯାଇଛି ନଦୀ ମୁହାଣଯାଏଁ । ସେଇଠୁ ବାଲିଚର ଢାଲୁ ହୋଇ ମାଡ଼ିଯାଇଛି ପାଣିଧାର ପର୍ଯ୍ୟନ୍ତ । ରହସ୍ୟମୟ ସେ ବାଲିଚର, କେଉଁଠି ସୁସ୍ପଷ୍ଟ ଆଉ କେଉଁଠି ସମ୍ପୂର୍ଣ୍ଣ ଅସ୍ପଷ୍ଟ ହୋଇ ମିଶିଯାଇଛି ପାଣିଧାରରେ ।

ସେଇ ଆଲୋକ ଛାୟାର ଲୁଚକାଳି ମଧ୍ୟରେ ପ୍ରାୟ ମୁହାଣର ପାଖାପାଖି—ହାତରେ ଇସାରାଦେଇ ତାକୁ ଡାକୁଛି ତଳକୁ ଓହ୍ଲାଇ ଆସିବା ଲାଗି ଫଲ୍‌ମନ୍ । ସ୍ପଷ୍ଟ ଭାବରେ ସେ ଚିହ୍ନିପାରିଲାନି ଫଲ୍‌ମନ୍‌କୁ । ତେବେ ତା'ର ଟୋପି ଓ ତା'ର ପୋଷାକ ପରିଚ୍ଛଦରୁ ଶାକିନା ତାକୁ ବେଶ୍ ଚିହ୍ନିପାରିଛି । ସେଇତିକି ଚିହ୍ନ ତା'ର । ଯଥେଷ୍ଟ ନିକଟରେ ଥିଲା ଗୋଟିଏ ନୌକା । ସେ ଭାବିଲା—ତା'ହେଲେ କ'ଣ ଫଲ୍‌ମନ୍ ଆଉ ଗୋଟିଏ ନୌକାରେ ବସି ତାଙ୍କରି ଅନ୍ୱେଷଣରେ ଏତେଦୂର ଆଗେଇ ଆସିଛି ? ତଳକୁ ଓହ୍ଲାଇ ଆସିବା ଆଗରୁ ଶାକିନା ଭଲ ଭାବରେ ଥରେ ନିରୀକ୍ଷଣ କରିନେଲା ହୋସେନ୍ ଖାଁର ନୌକା ଆଡ଼କୁ । ନା, ତା'ର କୌଣସି ଚିହ୍ନ ବର୍ତ୍ତି ନାହିଁ ।

ସେ ମନକୁ ଦମ୍ଭ କରିନେଲା—ନା, କେଉଁଠି ଭୁଲ ହୋଇନାହିଁ ତ ! କେଇ ମୁହୂର୍ତ୍ତ ହୁଏତ ସେ ତା'ର ମନର ମଣିଷଟିକୁ ହାତପାହାନ୍ତାରେ ପାଇପାରିବ । ଏଥର ସେ ନିଶ୍ଚିନ୍ତ

ହୋଇ ଧାଉଁବାରେ ଲଗିଲା ଡାଲୁଆ ବାଲୁଚର ଦେଇ 'ପାଣିଧାରର କଳ କଳ ଧ୍ୱନି ମଧ୍ୟରେ । ସେ ପୁଣି କେତେ କ'ଣ ଶୁଣିବାକୁ ପାଉଥିଲା । ତା'ର ମନେହେଲା, ସତେଅବା ଫଲ୍‌ମନ୍ ତା'ର ଅନ୍ତର ମଧ୍ୟରେ କ'ଣ ନାହିଁ କ'ଣ କହିଚାଲିଛି । ବାଲିପାହାଡ଼ର ଗ୍ରୁପ୍ସ୍ ଅଳ୍ପ ଜ୍ୟୋତ୍ସ୍ନାର ଆଲୋକ ସେଠି ସ୍ପଷ୍ଟ ଭାବରେ ଦୃଶ୍ୟମାନ ହୋଇଯାଉଛି । ତା'ର ଉପର ଦେଇ ଶାକନା ଦ୍ରୁତ ପଦକ୍ଷେପରେ ଆଗେଇଚାଲିଲା । ଡାଲୁ ବାଲିଚରଟି କିଛିଦୂର ଆଗେଇଯାଇ ମିଶିଯାଇଛି ଗୋଟିଏ ପ୍ରଶସ୍ତ ତଥା ସମତଳ ବାଲିଚର ପାଖରେ । ସେ ବାଲିଚରଟି ଠିକ୍ ଗୋଟିଏ ଚତ୍ୱର ପରି ସମତଳ । ଟିକିଏ ଦୂରରେ ପୁଣି ଗୋଟିଏ ଉଠାଣିରେ ଛିଡ଼ାହୋଇ ଫଲ୍‌ମନ୍‌ର ଗ୍ରୁପ୍ସ୍‌ମୂର୍ତ୍ତିଟି ତାକୁ ଇଙ୍ଗିତଦେଉଛି ଆଗେଇ ଆସିବା ଲାଗି । ଶାକନାର ପାଦରେ ସତେ ଯେପରି ଯାଦୁର ପର ଲାଗିଗଲା । ସେ ଧାଇଁଲା ପରି ଆଗେଇଗଲା ତୀବ୍ର ବେଗରେ ତା'ର ଆଡ଼କୁ ।

ହଠାତ୍ ଏ କ'ଣ ? ଦେହଟା ତା'ର ସମ୍ପୂର୍ଣ୍ଣ ଶିଥିଳ ହୋଇଗଲା । ସେ ଦେହର ଭାରସାମ୍ୟ ହରାଇବସିଲା । ପାଦ ଉପରକୁ ଦେହଟି ତା'ର ସମ୍ପୂର୍ଣ୍ଣ ଅବଶ ହୋଇପଡ଼ିଲା । ଶାକନା ଉତ୍କଣ୍ଠା ତଥା ଉଦ୍‌ବେଗର ସହିତ ଆଗେଇଯିବାକୁ ସାଧ୍ୟମତେ ଚେଷ୍ଟା କରୁଥିଲା; ମାତ୍ର ସେ ଯାଇ ପାରୁନ ନାହିଁକି ? କିଏ ଯେପରି ତା'ର ସମସ୍ତ ଶକ୍ତି ଓ ସାମର୍ଥ୍ୟକୁ କ୍ଷଣକ ମଧ୍ୟରେ ଶୋଷଣ କରି ନେଇ ତାକୁ ଅବଶ ତଥା ଅଶକ୍ତ କରିଦେଇଛି । ସେ ସମ୍ପୂର୍ଣ୍ଣ ଅସହାୟ । ତଳେଇଯାଉଛି ଧୀରେ ଧୀରେ ତା'ର ପାଦ ଦୁଇଟି । ଧୀରେ ଧୀରେ ଶ୍ୱେତବାଲିର ଗୁପ୍ତ ପାତାଳପୁରୀ ଆଡ଼କୁ କେହିଜଣେ ତା'ର ଟାଣିହୋଇ ଯାଉଛି । ଚିତ୍କାର କରିଉଠିଲା ଶାକନା—ରକ୍ଷାକର ! ରକ୍ଷାକର !! ହାତ ଦୁଇଟିକୁ ସେ ଆବେଗ, ଭୟ ଓ ଉତ୍କଣ୍ଠାର ସହିତ ବଢ଼େଇଦେଲା ଫଲ୍‌ମନ୍‌ର ଗ୍ରୁପ୍ସ୍‌ମୂର୍ତ୍ତି ଆଡ଼କୁ ।

ଆଗେଇଆସୁଛି ଫଲ୍‌ମନ୍‌ର ଗ୍ରୁପ୍ସ୍‌ମୂର୍ତ୍ତିଟି । ସ୍ପଷ୍ଟହୋଇଉଠିଲା ଯେ ଗ୍ରୁପ୍ସ୍‌ମୂର୍ତ୍ତିଟି ଜହ୍ନର ଧୋବଫରଫର୍ ଆଲୁଅରେ । ଅଥଚ ଦ୍ରୁତବେଗରେ ତଳେଇଯାଉଛି ଶାକନା । ବୁକୁଯାଏଁ ତାକୁ ତୀବ୍ରବେଗରେ ଗିଳିବାରେ ଲାଗିଛି—କ୍ଷୁଧାର୍ତ୍ତ ବାଲିଚରଟା । ଶାକନା ବିସ୍ଫାରିତ ଚକ୍ଷୁରେ ଦୃଷ୍ଟି ଦେଖିଲା ସେ ଗ୍ରୁପ୍ସ୍‌ମୂର୍ତ୍ତିଟି ଆଡ଼କୁ । ଜ୍ୟୋତ୍ସ୍ନାର ଧୋବ ଫରଫର୍ ଆଲୁଅରେ ଛିଡ଼ା ହୋଇଛି ମଣିଷଟିଏ । ସେ ତା'ର ମଥାରୁ ଟୋପିଟି ବାହାରକରି ତଳେ ପକାଇଦେଲା ଡାଲୁ ଉପରେ । ବେଶ୍ କିଛି ଦୂରରୁ ରକ୍ଷାକର ମଣିଷଟା ତା'ଦେହରୁ ଖୋଲି-ପକାଇଲା ଗୋଟି ଗୋଟି କରି ଫଲ୍‌ମନ୍‌ର ପୋଷାକଗୁଡ଼ିକ । ତା'ପରେ ଗୋଟାଏ ପୈଶାଚିକ ଅଟ୍ଟହାସ । ସେଇ ଗୁରୁଗମ୍ଭୀର ଅଟ୍ଟହାସରେ ପ୍ରତିଧ୍ୱନିତ ହୋଇଉଠିଲା ବାଲିଚରଟା । ସେ ଆନ୍ତୁରି କୋଲ୍‌ରେ ହୋ ହୋ ହୋଇ ହସି ଉଠି ବିଦ୍ରୂପ କରି ଗର୍ଜିଉଠି କହିଲା—"ଏଥର ଭଲଭାବରେ ଆଖି ମୁଦାଇକରି ଦେଖିଲ ଶାକନାବେଗମ୍—ଏ ମଣିଷଟିକୁ ତୁମେ ଚିହ୍ନିଛ କି ନାହିଁ !"

ହୋହେନ୍ ଖାଁର ଭୟଙ୍କର ମୂର୍ତ୍ତି ଦେଖି ଶାକନାର ଆଖି ଦୁଇଟି ବିସ୍ମୟରେ ଖୋଷି

ହୋଇଗଲା । ତା' ପାଟିରୁ ପଦଟିଏ ହେଲେ ଉଁ କି ଚୁଁ କଥା ବାହାରିଲା ନାହିଁ । କେବଳ ତା'ର ହାତ ଦୁଇଟା ପଡ଼ିରହିଲା ସେଇ ଶ୍ୱେତ ବାଲିଚର ଉପରେ ଶୁଖିଲା ଭଙ୍ଗା ଏକ ତାଳପତ୍ର । ମନେହେଲା ଯେପରି କୌଣସି ଦିନ ସେ ମଣିଷର ଭାଷା ଶିଖିନାହିଁ । କେବଳ ତା'ର ଆଖି ଦୁଇଟି ବେଳକୁ ବେଳ ମ୍ଳାନ ତଥା ଆତ୍ମଗ୍ଳାନିରେ ବିସ୍ତାରିତ ହୋଇଉଠିଲା ।

ହୋସେନ୍ ଖାଁ ତା' ପକେଟ୍‌ରୁ ଖଣ୍ଡିଏ ହଳଦିଆ କନା ବାହାରକଲା । ସେଥିରେ ଏକ ଫାଶ ତିଆରିକରି କୌଶଳରେ ଲଗାଇଦେଲା ଶାକିନାର ବେକରେ ଦୃଢ଼ ରୂପେ । ତାପରେ ସେ ହାଃ ହାଃ କରି ହସିଉଠି କହିଲା—"ଗଲୁ ସବୁଦିନ ଲାଗି, ବେଶ୍ ହୋଇଛୁ ଏ' ଧରଣୀରୁ ତୋ' ନାଆଁ ଲୁଚିଗଲା; ଆଉ ତା' ସଙ୍ଗେ ସଙ୍ଗେ ଲୋପପାଇଲା ମୋର ପୈଶାଚିକ ପ୍ରବୃତ୍ତି ତୋ'ର ସାଥିରେ ସବୁଦିନ ଲାଗି ।

ହୋସେନ୍ ଖାଁ ଛାଡ଼ିଦେଲା ତା' ହାତରୁ ହଳଦିଆ କନାଟିକୁ । ଶୋଷପିଆ କ୍ଷୁଧାର୍ତ୍ତ ଶ୍ୱେତବାଲି ଭିତରକୁ ଧସିଯାଉଥିବା ଶାକିନାର ହାତ ଦୁଇଟି ଆଉ ଥରେହେଲେ ବି ହୋସେନ୍ ଖାଁ ଆଡ଼କୁ ଅଗେଇଲା ନାହିଁ । ଧୀରେ ଧୀରେ ତା'ର ଦମ୍ପୁଣ୍ଡି ଶଙ୍ଖକଣ୍ଟା ବୁଡ଼ିଗଲା ସେଇ ଶ୍ୱେତବାଲିର ଅତଳ ଗର୍ଭରେ । କିଛି କ୍ଷଣ ପରେ ଦେଖାଗଲା ସେଇ ନିର୍ଜନ ବାଲିଚର ଉପରେ ଛିଡ଼ାହୋଇଛି ଗୋଟିଏ ଦୀର୍ଘଦେହୀ ଛାୟାମୂର୍ତ୍ତି ହୋସେନ୍ ଖାଁର । ମୁଖମଣ୍ଡଳରେ ତା'ର କୁଟିଳ ହାସ୍ୟରେଖା । ସେ ନିର୍ନିମେଷ ଦୃଷ୍ଟିରେ ଚାହିଁରହିଛି ଶ୍ୱେତବାଲିର ସେଇ ଜୀବନ୍ତ କବର ଆଡ଼କୁ । ଲାହୋର ଠାରୁ ଆରମ୍ଭ ହୋଇ ଫେଜ୍‌ପୁର ବନ୍ଦର ପର୍ଯ୍ୟନ୍ତ ଛନୋଟି ଜୀବନରେ ଗଢ଼ିଉଠିଥିବା ପ୍ରେମର ଉତ୍ଥାନ ପତନ ଏଇ ଶ୍ୱେତବାଲିର ଗୋପନୀୟ କବରରେ ପୋତିହୋଇଗଲା ।

ଏତିକି କହିବା ପରେ ଆନାର ମୁଖମଣ୍ଡଳ ବ୍ୟଥା ଓ ଅବସାଦର ମ୍ଳାନ ଛାୟାରେ ଆଚ୍ଛାଦିତ ହୋଇଗଲା । ସେ ମୈତ୍ରେୟୀର ହାତ ଧରି ଧୀରେ ଧୀରେ ଓହ୍ଲାଇଆସିଲା ଛାତ ଉପରୁ ତଳ କୋଠରିକୁ ନିଃଶବ୍ଦ ପଦପାତରେ ।

## ପନ୍ଦର

ମୈତ୍ରେୟୀ ଆଉଦିନେ ସୁଯୋଗ ଦେଖି କହିଲା—"ଦିଦି, ତା'ପରେ ହେଲା କ'ଣ ? ଆଉ ଥରେ ପୁଣି କ'ଣ ଫଲ୍‌ମନ୍ ଆଉ ହୋସେନ୍ ଖାଁ ମଧ୍ୟରେ ଦେଖା ସାକ୍ଷାତ ହୋଇଥିଲା ?"

ଆନା ମୈତ୍ରେୟୀର ଉତ୍ସୁକ ଆଖି ଦୁଇଟି ଉପରେ ନିଜର ଦୃଷ୍ଟି ମିଳାଇ କହିଲା—"ତୁ କ'ଣ ଅନୁମାନ କରୁଛୁ କହିଲୁ ?"

"ମୁଁ ଆଦୌ ଭାବିପାରୁନି କିଛି ଦିଦି ।"—ଉତ୍ତର ଦେଲା ମୈତ୍ରେୟୀ ।

ଆନା ଟିକିଏ ନୀରବ ରହିବା ପରେ କହିଲା—"ହିଁ, କେଇବର୍ଷ ପରେ ସେ ଦୁହିଁଙ୍କର ଦେଖାସାକ୍ଷାତ ହୋଇଥିଲା—ଆଉ ଟେକ୍‌ନୁଫ ବନ୍ଦରରେ ନୁହେଁ, ଏଇ ସୁବର୍ଣ୍ଣରେଖା ନଦୀର ତଟଦେଶରେ ।"

"ତା'ପରେ···?" —ବିସ୍ମିତ ହୋଇ ପ୍ରଶ୍ନକଲା ମୈତ୍ରେୟୀ ।

"ସେଇ ନିଃଶବ୍ଦ ରାତ୍ରିରେ ତୀବ୍ର ବେଗରେ ନୌକା ଛୁଟାଇ ସେ ଅଞ୍ଚଳ ଛାଡ଼ି ପଳାଇ ଆସିଲା ହୋସେନ୍ ଖାଁ ।" କହିଲା ଆନା—"ତା' ପରେ ସେ ଗୋଟିଏ ନଦୀଘାଟରେ ନିଜ ନୌକାଟିକୁ ସବୁଦିନ ଲାଗି ବୁଡ଼ାଇ ଦେଇ ସେ ମନେ ମନେ ଭାବିଲା—ଯାଃ, ବହୁଦିନର ପାପର ପୂର୍ଣ୍ଣଚ୍ଛେଦ ଆଜି ଏଇ ନଦୀକୂଳରେ ପଡ଼ିଲା । କେବଳ ସେତିକି ନୁହେଁ, ତା'ପାଖରେ ଥିବା ଟଙ୍କା ପଇସା, ସୁନାରୁପା ଆଉ ଯାହା କିଛି ଥିଲା, ସବୁତକ ସେଇ ନଦୀରେ ବିସର୍ଜନ କରିଦେଇ ମନେ ମନେ ବକ୍‌ବକ୍ ହୋଇ କହିଲା—'ଯାଃ, ସବୁ ପାପଧନ ଏଇ ପବିତ୍ର ଜଳରେ ଚିରଦିନ ଲାଗି ସମାଧି ଲାଭକରୁ ।'

ଅନେକ ଦିନ ପର୍ଯ୍ୟନ୍ତ ଏଣେତେଣେ ନିରୁଦ୍ଦିଷ୍ଟ ଭାବରେ ବୁଲାବୁଲି କରିବା ପରେ, ଶେଷରେ ଆସି ଫର୍ଗୁସନ୍ ସାହେବଙ୍କ ନୀଳକୋଠିର ଲଠିଆଳମାନଙ୍କ ସର୍ଦ୍ଦାର୍ ଭାବରେ ନିଯୁକ୍ତ ହୋଇ, ଏକ ନୂତନ ଜୀବନ ଆରମ୍ଭକଲା ହୋସେନ୍ ଖାଁ ।

ଫଲମନ୍ ହୋସେନ୍ ଖାଁର ହଠାତ୍ ଅନ୍ତର୍ଦ୍ଧାନରେ ଘଟଣାର ଅନୁମାନ କରିନେଇ ତାକୁ ଅନେକ ଖୋଜାଖୋଜି କଲା । ତା'ପରେ ସେ ଚାକିରିରୁ ଇସ୍ତଫା ଦେଇ, ଗୋଟିଏ ଦସ୍ୟୁଦଳର ଅଧିନାୟକ ସାଜି ରାହାଜାନି ଆରମ୍ଭ କରିଦେଲା । ଫଲମନ୍ ଜଳଦସ୍ୟୁ ହାର୍ମାଦ୍-ମାନଙ୍କର ବଂଶଧର । ତା' ରକ୍ତର ପ୍ରତିଟି କଣିକାରେ ମିଶି ରହିଥିଲା ଦସ୍ୟୁବୃତ୍ତିର ବୀଜ । ସେ ଚାକିରି ଛାଡ଼ି ଦେଇ ଯେଉଁ ଦଳଟି ସଙ୍ଗଠିତ କଲା ସେମାନଙ୍କୁ ପ୍ରବୁଣା ପଦ୍ଧତିରେ ଶିକ୍ଷା ନଦେଇ ଫଣ୍ଡା ତରୁଆଳ ଖେଳ ଓ ତୀରନ୍ଦାଜୀରେ ତାଲିମ୍ ଦେବାକୁ ଲାଗିଲା । ଲୁଚିଛପି ଫାଶ ବସେଇ ବାଟୋଇମାନଙ୍କୁ ଲୁଟ୍ କରିବା ଅପେକ୍ଷା, ତଲ୍‌ବାର୍ ଚଳାଇ ପୌରୁଷ ଦେଖାଇବାରେ ଅଧିକ ବାହାଦୁରି ରହିଛି ବୋଲି ଫଲମନ୍ ବେଶ୍ ଅନୁଭବ କଲା । ସେ ନିଜ ଦଳର ଲୋକମାନଙ୍କୁ ଉତ୍ତେଜିତ କରାଇ କହିଲା—ଦେଖ, ତୁମେମାନେ ହେଉଛ ମର୍ଦ୍ଦ ପୁଅ, ମର୍ଦ୍ଦାନ୍‌ଗିରି ଦେଖାଇ କାମ ହାସଲ କରିବାରେ ଆନନ୍ଦ ରହିଛି । ସେଥିରେ ଶକ୍ତି ଓ ସାମର୍ଥ୍ୟ ଦେଖାଇବାର ସୁଯୋଗ ରହିଛି ।

ସେ କିଛିଦିନ ପର୍ଯ୍ୟନ୍ତ ଦଳବଳ ନେଇ ଲୁଟ୍‌ପାଟ୍ ଆରମ୍ଭକରି ଅନେକ ଧନରତ୍ନ ରୋଜଗାର କଲା ସତ, କିନ୍ତୁ ଶାକିନା ପାଇଁ ତା' ମନ ମଧ୍ୟରେ ଦୁଃଖ ରହିଗଲା । ଶାକିନା ତା'ର ହୃଦୟରେ ପ୍ରେମର ଯେଉଁ ନିଆଁ ଜଳାଇଥିଲା, ତାହା ସହଜରେ ଲିଭିଲା ନାହିଁ । ବେଳେବେଳେ ସେ ଦଳର ଜଣେ ବିଶ୍ୱସ୍ତ ଲୋକକୁ ସଙ୍ଗରେ ଧରି, ଶାକିନାର ଅନୁସନ୍ଧାନରେ ବାହାରିଯାଏ । ଅନେକ ଖୋଜାଖୋଜି କରେ ସତ—କିନ୍ତୁ କୌଣସିମତେ ତା'ର ସନ୍ଧାନ ପାଇପାରିଲା ନାହିଁ । ଏହିପରି ଭାବରେ ସାତ୍ ବଙ୍ଗଳା ମୂଲକଟା ଦି'ଜଣ ଯାକ ସାର୍ଣ୍ଣି

ପକାଇଲେ । କିନ୍ତୁ ଫଳ କିଛି ହେଲନାହିଁ । ଦିନେ ହଠାତ୍ ହୋସେନ୍ ଖାଁର ସନ୍ଧାନ ସେ ପାଇଗଲା ଫର୍ଗୁସନ୍ ସାହେବର ନୀଳକୋଠିରେ । ଫଲ୍ମନ୍ ସେତେବେଳେ ମଧ୍ୟ ଜାଣିଥିଲା ଯେ ଶାକିନାବିବି ଏବେବି କେଉଁଠି ବଞ୍ଚିରହିଛି । ସେ ଗୁପ୍ତଚର ଲଗାଇଦେଲା ଶାକିନାବିବିର ସନ୍ଧାନରେ ।"

ଏତିକବେଳେ କଥା ମଝିରେ ମୈତ୍ରେୟୀ ଉତ୍କଣ୍ଠିତା ହୋଇ ପଚାରିଲା—"ବାପା, ଫଲ୍ମନ୍ ଦସ୍ୟୁବୃତ୍ତି କରୁଥିବା ବିଷୟ ତୁମେ ଜାଣିଲ କେମିତି ?"

ଆନା ହସି ହସି କହିଲା—"ତୁ କ'ଣ ଭାବୁଛୁ ଯେ ମୁଁ ଯାହା ଯାହା ସବୁ କହିଗଲି ସେ ସବୁଯାକ ମନଗଢ଼ା ଗପ…!"

"ନା ବାପା ତା' ନୁହେଁ । ମୁଁ କେବଳ ଜାଣିବା ଲାଗି ଏତେ ଖୋଳ ତାଡ଼ ପଚାରୁଛି !"—କହିଲା ମୈତ୍ରେୟୀ ।

"ଯେଉଁ ଲୋକଟି ସେତେବେଳେ ଫଲ୍ମନର ବିଶ୍ୱସ୍ତ ଅନୁଚର ଭାବରେ କାର୍ଯ୍ୟ କରୁଥିଲା, ଏବେ ସେ ଆମ କୋଠିରେ ଘୋଡ଼ାଘଇସ କାମ କରୁଛି । ତା'ର ମୁହଁରୁ ଶୁଣିଛି ମୁଁ ଫଲ୍ମନ୍ର ଦସ୍ୟୁଜୀବନର କାହାଣୀ । ଆଜି ମଧ୍ୟ ଅଜକାଲି ଗୋଟିଏ ନୀଳକୋଠିର ମାଲିକ ହୋଇଯାଇ ଫଲ୍ମନ୍ ଗୋପନରେ ଦସ୍ୟୁବୃତ୍ତି କରିଚାଲିଛି । ତା'ର ପ୍ରମାଣ ତୁ ଜାଣେ ।"

"ତୁମ କଥା ମଝିରେ ମୁଁ ବାରମ୍ବାର ବାଧା ଦେଇ ଚାଲିଛି…" —କହିଲା ମୈତ୍ରେୟୀ ।

"ସେଥିରେ କ'ଣ ଅଛି ? ମନରେ ପ୍ରଶ୍ନ ଜାତ ହେଲେ ପଚାରିବା ସ୍ୱାଭାବିକ"—କହିଲା ଆନା—ଫଲ୍ମନ୍ ଯେଉଁ ଲୋକଟିକୁ ଉତ୍କୋଚ ଦେଇ ଶାକିନାବିବି ବିଷୟରେ ଖବର ସଂଗ୍ରହ କରିବାକୁ ଚେଷ୍ଟା କରିଥିଲା, ସେ ଲୋକଟି ଥିଲା ହୋସେନ୍ ଖାଁର ଡାହାଣହାତ ଅର୍ଥାତ୍ ଅତି ବିଶ୍ୱସ୍ତ ଲୋକ ।

"ଭାଗ୍ୟର କି ବିଡ଼ମ୍ବନା ! ହୋସେନ୍ ଖାଁ ସବୁକଥା ଠିକଣାଠି କରି ଜାଣିଲା ଫଲ୍ମନ୍ ବିଷୟରେ ଏବଂ ଶାକିନାର ମୃତ୍ୟୁ ଖବରକୁ ସେ ଅତି ଯତ୍ନରେ ଫଲ୍ମନ୍ଠାରୁ ଗୋପନରେ ରଖିଲା । ସେ ଖବର ଫଲ୍ମନ୍ କୌଣସିମତେ ପାଇପାରିଲାନାହିଁ ।"

"ଏହିପରି ଭାବରେ ଦୁଇ ଖେଳୁଆଡ଼ଙ୍କ ଭିତରେ କିଛିଦିନ ଧରି ଲୁଚକାଳି ଖେଳ ଚାଲିଲା । ଦିନେ ଦ'ପହରେ ଗୋଟିଏ ଶାଳବଣ ଦେଇ ଚାଲିଲା ଖଣ୍ଡିଏ ଝାଲରଦିଆ ପାଲିଙ୍କି ନଈକୂଳର ସେଇ ଘନ ଜଙ୍ଗଲ ଭିତରକୁ । ସାଥିରେ ଯାଉଥିଲା ଫଲ୍ମନ୍ଦ୍ୱାରା ନିଯୁକ୍ତ ସେଇ ଘୁଷ୍ଖୋର ଲୋକଟା । ହୋସେନ୍ ଖାଁ କେଉଁ ଦୂର ମଫସଲ୍ ଗାଁକୁ ଯାଉଛି ବୋଲି ସେଇ ଲୋକଟା ଫଲ୍ମନ୍କୁ ଖବର ଦେଇଥିଲା । ତା'ର ପରାମର୍ଶରେ ଶାକିନା ସାଥିରେ ଫଲ୍ମନ୍ର ସାକ୍ଷାତ୍ ବ୍ୟବସ୍ଥା କରାଯାଇଥିଲା ।

"ଅନେକ ଦିନ ପରେ ମଧୁମୟ ମିଳନର ଏହି ବ୍ୟବସ୍ଥାରେ ଫଲ୍ମନ୍ ଆନନ୍ଦରେ ଅଧୀର

ହୋଇଉଠିଲା । ତେଣୁ ସେ ବେଶ୍ ମନଲୋଭା ବେଶ ପୋଷାକରେ ସଜ୍ଜିତ ହୋଇ ଘୋଡ଼ାରେ ବସି ବହୁପୂର୍ବରୁ ଯାଇ ଜଙ୍ଗଲ ଭିତରେ ଲୁଚିରହିଥିଲା ।

"ବହୁ ପ୍ରତୀକ୍ଷା ପରେ ପାଲିଙ୍କି ଯାଇ ପହଞ୍ଚିଲା ଜଙ୍ଗଲ ଭିତରେ । ବେହେରାମାନେ ପାଲିଙ୍କି ଥୋଇଦେଇ ସେଠାରୁ ଅଡ଼େଇ ହୋଇଗଲେ । ପାଲିଙ୍କି ସାଥିରେ ଆସିଥିବା ଲୋକଟି ମଧ୍ୟ ସଲାମ୍ କରି ଅଡ଼ହୋଇଯାଉଥିବା ବେଳେ ଫଲ୍ମନ୍ ତା' ଆଡ଼କୁ ସୁନାର ମୋହରଟିଏ ଫିଙ୍ଗିଦେଲା । ଲୋକଟା ମୋହରଟିକୁ ଗୋଟେଇନେଇ ପୁଣି ଥରେ କୁର୍ଣ୍ଣିଶ୍ କରି ସେଇ ଜଙ୍ଗଲ ଭିତରେ ଅନ୍ତର୍ଦ୍ଧାନ ହୋଇଗଲା ।

"ଏହାପରେ ଅନେକ ଦିନର ଆକୁଳ ପ୍ରତୀକ୍ଷାର ବେଳା ଅସହ୍ୟ ହୋଇଉଠିଲା ଫଲ୍ମନ୍ ପକ୍ଷରେ । ପ୍ରଣୟିନୀର ଫୁଟିଲା ପଦ୍ମଫୁଲ ପରି ମୁହଁଟିକୁ ଦେଖିବା ପାଇଁ ଅନେକ ଦିନରୁ ସେ ବ୍ୟାକୁଳ ହେଉଥିଲା । ସେଇ ସୁଯୋଗଟିକୁ ହାତପାହାନ୍ତାରେ ପାଇ ସେ ଆଉ ନିଜକୁ ଆୟତ୍ତ କରିପାରିଲା ନାହିଁ । ତେଣୁ ଲଇଁପଡ଼ି ଧୀରେ ପାଲିଙ୍କିର ଝାଲରଟି ଉଠାଇ-ଦେଇ, ହଠାତ୍ ଚମକିପଡ଼ି ପଛକୁ କେତେ ପହଣ୍ଡ ଡେଇଁପଡ଼ିଲା । ସେତେବେଳକୁ ହୋସେନ୍ ଖାଁ ପାଲିଙ୍କିର ପଛପଟ ଝାଲର ଉଠାଇ ହାତରେ ତରୁଆଲ୍ ଧରି ବାହାରି ଆସି ସାରିଥିଲା ।

"ଫଲ୍ମନ୍ ଯଦି ଏହାର ସୂଚନା ଟିକିଏ ହେଲେ ପାଇଥା'ନ୍ତା, ତା'ହେଲେ ସେଦିନର ଘଟଣା ଅନ୍ୟପ୍ରକାରର ହୋଇଥା'ନ୍ତା । ଦୁହେଁଯାକ ଥିଲେ ମସ୍ତ ଶିକାରୀ । ଖଣ୍ଡା ତରୁଆଲ ଚଳାଇବାରେ ଦୁହେଁ ଥିଲେ ଓସ୍ତାଦ୍ । ନୋହିଲେ ଦୁହିଁଙ୍କ ମଧ୍ୟରେ ଗୋଟାଏ ଦ୍ୱନ୍ଦ୍ୱଯୁଦ୍ଧ ଲାଗି ସେଦିନ କିଛି ଗୋଟାଏ ଘଟିଯାଇଥା'ନ୍ତା । କିନ୍ତୁ ଫଲ୍ମନ୍ ସମ୍ପୂର୍ଣ୍ଣ ଭାବରେ ସେଇ ଲୋକଟାର କଥା ଉପରେ ଭରସିଯାଇଥିଲା । ଶାହଜାଦୀର ପ୍ରଣୟ ତା'ର ବିବେକ ଓ ବୁଦ୍ଧିକୁ ସମ୍ପୂର୍ଣ୍ଣ ଭାବରେ ଅଣାୟତ୍ତ କରିଦେଇଥିଲା । ସେ ଆଦୌ ପ୍ରସ୍ତୁତ ନଥିଲା । ଏପରି ଗୋଟାଏ ଅସ୍ୱାଭାବିକ ଘଟଣା ଘଟିବ ବୋଲି ତା'ର ଭୁଲେହେଲେ ଧାରଣା ନଥିଲା ।

"କିନ୍ତୁ ମେହେର..." ଟିକିଏ ରହିଯାଇ କହିଲା ଆନା—"ଫଲ୍ମନ୍ ଥିଲା ଅସାଧାରଣ ବୁଦ୍ଧିସମ୍ପନ୍ନ ଏକ ଜାନୁଆର । ସେ ତା'ର ଦସ୍ୟୁ ଜୀବନରେ ବହୁ ଆକସ୍ମିକ ବିପଦର ମରଣ ମୁହଁରୁ ନିଜ ବୁଦ୍ଧି ବଳରେ ଉଦ୍ଧାର ପାଇଥିଲା । ତାହାହିଁ ଥିଲା ତା'ର ବାହାଦୁରୀ । ବିପଦ ସମୟରେ ଧୈର୍ଯ୍ୟହରା ହେବା ତା'ର ଜାତକରେ ନଥିଲା । ସେ ଭଲ ଭାବରେ ଜାଣିଥିଲା ଯେ ଆକସ୍ମିକ ବିପଦ ସମୟରେ ଧୈର୍ଯ୍ୟ ହରାଇ ବସିଲେ ସେ ସବୁକିଛି ହରାଇ ବସିବ । ତେଣୁ ସେ ହଠାତ୍ ହୋ' ହୋ' ହୋଇ ହସିଉଠିବା ସଙ୍ଗେ ସଙ୍ଗେ ଜୋର୍‌ରେ ଦୁଇଗୁଣଟା ତାଳି ମାରି ହୋସେନ୍ ଖାଁକୁ ଚମକାଇଦେଲା ।

ଏଇ କୃତ୍ରିମ ହସ ଓ ତା'ର ହାତ ତାଳିରେ ହୋସେନ୍ ଖାଁ ହଠାତ୍ ଅନ୍ୟମନସ୍କ ହୋଇଉଠିଲା । ସେ ମନେ ମନେ ଭାବିଲା—ନିଶ୍ଚୟ ଫଲ୍ମନ୍‌ର ଦସ୍ୟୁମାନେ ସେଇଠି କେଉଁଠି ଲୁଚିରହିଛନ୍ତି । ହୋସେନ୍ ଖାଁର ଏଇ ସାମାନ୍ୟ ଅନ୍ୟମନସ୍କତା ସେଦିନ ଫଲ୍ମନ୍‌କୁ

ବଞ୍ଚିବାର ସୁଯୋଗ ଦେଲା । ସେ ଆଖିପିଛୁଡ଼ାକେ ପାଖରେ ଛିଡ଼ାହୋଇଥିବା ତା'ର ଘୋଡ଼ା ଉପରକୁ କୁଦିପଡ଼ିଲା ।

ମୁହୂର୍ତ୍ତି ମାତ୍ରର ଅନ୍ୟମନସ୍କତା ସେଦିନ ହୋସେନ୍ ଖାଁକୁ ବୋକା ବନାଇ ଦେଇଥିଲା । ମାତ୍ର ସେ ବି ସାମାନ୍ୟ ଜନ୍ତୁ ନଥିଲା । ସେ ତୀବ୍ର ବେଗରେ ଧାଇଁଯାଇ ଫଲ୍‌ମନ୍ ଉପରେ ତରୁଆଲ ପ୍ରହାରକଲା । ସେଇ ପ୍ରହାର ହୁଏତ ତା'ର ଗଣ୍ଡିରୁ ମୁଣ୍ଡଟାକୁ ଅଲଗା କରିଦେଇ-ଥାଆନ୍ତା; କିନ୍ତୁ ସେ ବାଆଁ ହାତରେ ଘୋଡ଼ାର ଲଗାମଟିକୁ ଧରି ତୀବ୍ର ବେଗରେ ଘୋଡ଼ା ଛୁଟେଇଦେଲା ପରେ; କିନ୍ତୁ ତାର ଡାହାଣ ହାତର କିଛି ଅଂଶ ଦୋ'ଗଡ଼ ହୋଇ ସେଇଠି ଭୂମିରେ ଲେଟିଗଲା । ପ୍ରାଣାନ୍ତକ ଯନ୍ତ୍ରଣା ହେଉଥିଲେ ମଧ୍ୟ ଫଲ୍‌ମନ୍ ଆଖିବୁଜି, ଦାନ୍ତ-କାମୋଡ଼ି ଘୋଡ଼ାର ପିଠି ଉପରେ ଏକାବେଳକେ ମିଶିଯାଇ ମୁହୂର୍ତ୍ତିକ ମଧ୍ୟରେ ହୋସେନ୍ ଖାଁର ଆଖି ଆଗରୁ ଉଭେଇଗଲେ ।

( ଷୋହଳ )

"ମଜା କଥାଟାରେ ହଠାତ୍ ତୁମେ ପୂର୍ଣ୍ଣଚ୍ଛେଦ ପକାଇଦେଲ ଦଦା ।"—ଉତ୍କଣ୍ଠିତା ହୋଇ କହିଲା ମୈତ୍ରେୟୀ ।

"ଯାଃ ବୋକୀଟା—ଆଉ ରହିଲା କ'ଣ ? ଘୋଡ଼ାଟା ତା' ମାଲିକକୁ ବିଦ୍ୟୁତ୍ ବେଗରେ ପିଠିରେ ପକାଇ ଦୁମୁଦୁମିଆ ଦ'ପହରବେଳେ ଝାଉଁମରି ଖରାରେ ବଣ, ଜଙ୍ଗଲ, ଖାଲ, ଢିମା ଓ ଅଗମା ପାର ହୋଇ ନଈ ସେପଟର ଜନବସତି ପାଖ ସୁବର୍ଣ୍ଣରେଖା ସୁଅ ଭିତରକୁ କୁଦିପଡ଼ିଲା । ତା' ପରବର୍ତ୍ତୀ ଘଟଣା ମୁଁ ତୋତେ ସେଦିନ କହି ନଥିଲି ?"—ଏତିକ କହି ଖିଲ୍ ଖିଲ୍ ହୋଇ ହସିଉଠିଲା ଆନା ।

ମୈତ୍ରେୟୀ ଘଡ଼ିଏ କାଳ ଆନାର ମୁହଁକୁ ବଲ୍‌ବଲ୍ କରି ଅନାଇ, ମୁଖମଣ୍ଡଳରେ ବୀଭତ୍ସ ଭାବ ଫୁଟାଇ କହିଲା—"ଦଦା, ଅଦ୍ଭୁତ ଜାନୁଆର୍ ଟେ ଏ' ଫଲ୍‌ମନ୍ ! ଲୋକ ଠିକଲେ ଶିଖନ୍ତି । କିନ୍ତୁ ଫଲ୍‌ମନ୍ ନିଜ ହାତଟିକୁ ହରାଇଥିଲେ ମଧ୍ୟ ତା'ର ଦସ୍ୟୁବୃତ୍ତି ଅଦୌ ଛାଡ଼ି ପାରିଲାନି ।"

"ଅରେ ପାଗଳୀ ! ମଣିଷ ପ୍ରକୃତି ମଲେ ଯାଏ । ଫଲ୍‌ମନ୍ ତା' ହାତଟିକୁ ହରାଇବା ପରେ ଆହୁରି ଅଧିକ ଦୁର୍ଦ୍ଦାନ୍ତ ହୋଇଉଠିଲା । ଏବେ ସେ ଗୋଟିଏ ନୀଳକୋଠିର ମାଲିକାନା ପାଇ ତା'ର ଦସ୍ୟୁବୃତ୍ତିଟାକୁ ଘୋଡ଼ାଇଦେବାପାଇଁ ଅନେକ ଚେଷ୍ଟା ଚଳାଇଛି । ତଥାପି ସେଇ ଭଦ୍ରଖୋଳ ଭିତରେ ଲୁଚିରହିଛି ତା'ର ଦୁର୍ଦ୍ଦାନ୍ତପଣିଆ । ଆଜି ହୁଏତ ଗୋଟିଏ ସଭ୍ୟ ତଥା ସୁସଂସ୍କୃତ ସମାଜରେ ଜଣେ ମାତ୍ବର୍ ଲୋକ ଭାବରେ ପରିଚିତ ହେବା ତା' ପକ୍ଷରେ ଅତି ସହଜ । କିନ୍ତୁ ସେ ଲୋକଟାକୁ ମୁଁ ହାଡ଼େ ହାଡ଼େ ଚିହ୍ନିଛି ।"

ଆନାର ବିଦ୍ରୂପଭରା କଥା ଶୁଣି ମୈତ୍ରେୟୀର ମୁଖମଣ୍ଡଳରେ ଝଲକାଏ ହସ

ଝରିପଡ଼ିଲା । ସେ ଆଖିର ଇସାରାରେ ହସର ଫୁଆର ଛୁଟାଇ କହିଲା—"ଅଚ୍ଛା ଦଦା, ଏପରି ଗୋଟାଏ ଜାନୁଆର୍‌କୁ ତୁମ ପରି ପଥର କଲିଜାର ଝିଅ ପୁଣି ଭଲପାଇବସିଥିଲା କପରି ? ଏହା କପରି ସମ୍ଭବ ହେଲା କହିଲ ?"

"ସତରେ ମେଘ···" କହିଲା ଆନା—"ସେଦିନ ଘୋଡ଼ାଦୌଡ଼ରେ ତା'ର ବିଜୟ, ବିଶେଷତଃ ତା'ର ଗୋଟିଏ ହାତ ନଥିବାରୁ ମୁଁ ତା' ପ୍ରତି ମନେ ମନେ ଆକୃଷ୍ଟ ହୋଇଥିଲି । ଏହି ଦୁଇଟି କାରଣରୁ ସେ ମୋ' ମନକୁ କିଣିନେଇଥିଲା ।"

ମୁହଁରେ ଦୁଷ୍ଟାମିର ହସ ଫୁଟାଇ କୌତୁକଭରା କଣ୍ଠରେ କହିଲା ମୈତ୍ରେୟୀ—"ଅଚ୍ଛା ଦଦା, ଯଦି ତୁମର କିଛି ଆପତ୍ତି ନଥାଏ ତେବେ କହିବକି ଏହି ଫଲ୍‌ମନ୍ ସାଙ୍ଗରେ ତୁମେ କେତେଦୂର ଆଗେଇଥିଲ ଏବଂ ପୁଣି କେଉଁ କାରଣରୁ ତୁମେ ଫେରିଆସିଲ ନିଜର ସ୍ଥିତିକୁ ?"

ମୈତ୍ରେୟୀର କୌତୁକିଆ କଥାରେ ହସି ହସି ଫାଟିପଡ଼ିଲା ଆନା । ଶେଷରେ ସେ ନିଜର ହସକୁ ରୋକିନେଇ କହିଲା—" ଏହି ସୁବର୍ଣ୍ଣରେଖାର ସୁଅରେ ପ୍ରାୟ ବୁଡ଼ି ମରିବା ପାଇଁ ଯାଇଥିଲି; କିନ୍ତୁ ଶେଷରେ ଗୋଟିଏ ପ୍ରଚଣ୍ଡ ଢେଉ ମୋତେ ଉଠାଇ ଆଣି କୂଳରେ ପକାଇଦେଲା, ଆଉ ମୁଁ ସେଇଥିରେ ନିଜକୁ ସମ୍ଭାଳିନେଲି ।"

ଆନାର ଶୁଭ୍ରବର୍ଣ୍ଣ ହାତ ଦୁଇଟିକୁ ନିଜ ହାତରେ ଧରି ହସି ହସି କହିଲା ମୈତ୍ରେୟୀ —"ସେ ମନଭୁଲାଣିଆ କଥା ଛାଡ଼ । ଟିକିଏ ଖୋଲିକରି କହନ୍ତୁ କ'ଣ କ'ଣ ଘଟିଥିଲା ତୁମ ଜୀବନ ଜୁଆରରେ ? ସବୁକଥା ଜାଣିବାକୁ ମୁଁ ଖୁବ୍ କୌତୁହଳୀ ।"

"ଓଃ···! ଏ' ସବୁ କଥା ଜାଣିବାକୁ ତୋ'ର ଖୁବ୍ ଆଗ୍ରହ ଜାତ ହେଉଛି ନା ? ମୁହଁରେ କୌତୁକର ହସ ଫୁଟାଇ, ମୈତ୍ରେୟୀର ମୁହଁକୁ ଚାହିଁ କହିଲା ଆନା ।

ଆନାର କଥା ଶୁଣି ଗମ୍ଭୀର ହୋଇଗଲା ମୈତ୍ରେୟୀ । ଆଖିରୁ ତା'ର ଝରିପଡ଼ିଲା ଅଜାଣ ଲୁହର ଧାର । ସେ ଆନାର ହାତ ଦୁଇଟିକୁ ସେହିପରି ନିଜ ହାତରେ ଧରିରଖିଥିଲା । ଆନା ଅନ୍ୟମନସ୍କ ଭାବରେ ସୁବର୍ଣ୍ଣରେଖାର ଝଲ୍‌ମଲ୍ କରୁଥିବା ଜଳଧାର ଆଡ଼କୁ ଚାହିଁରହିଥିଲା । ହଠାତ୍ ତା' ହାତରେ ଦୁଇଟୋପା ତାତିଲା ଲୁହ ଝରିପଡ଼ିବାରୁ, ସେ ଚମକିପଡ଼ି ମୈତ୍ରେୟୀକୁ ଚାହିଁ ତାକୁ ଗୋଟିପଣେ ଭିଡ଼ିଧରିଲା । ତା' ଝାଉଁଳିଆ ମୁହଁଟିକୁ ନିଜ ହାତରେ ଉପରକୁ ଟେକି ଧରି କହିଲା ଆନା—"ତୁ ମନେ ମନେ ଏତେ ଦୁର୍ବଳ ମେଘ ! ସାମାନ୍ୟ ଟିକିଏ ଥଟ୍ଟା କରିଦେଲି, ସେଥିରେ ତୁ ଆଖିରୁ ଧାରଶ୍ରାବଣ ଝରାଇଦେଲୁ ? ତୁ ଜାଣିଛୁ, ତୋ' ମନରେ ଆଘାତ ଦେବାଭଳି ମୁଁ କୌଣସିଦିନ କିଛି ହେଲେ କରିନି । ଅଜି ଟିକିଏ କୌତୁକ କରିଦେଲି ଯେ ତୁ କାନ୍ଦି ପକାଇଲୁ···।"

ମୈତ୍ରେୟୀ ଆଖିରୁ ଲୁହ ପୋଛିଦେଇ କହିଲା—"ନା ନା···ଦଦା ! ତୁମ କଥାରେ ମୁଁ ଆଦୌ କାନ୍ଦିନି । ମୋ·· "

ଆନା ବେଶ୍ ବୁଝିପାରିଲା ମୈତ୍ରେୟୀର ମନୋଭାବ । ତା' ଜୀବନ ଓ ଯୌବନର ପ୍ରଥମ କଳିକାଟି ପ୍ରସ୍ଫୁଟିତ ହୋଇଥିବା ବେଳେ, ତାହା ଦଳାଚକଟାରେ ଅତି ନିଷ୍ଠୁର

ଭାବରେ ନଷ୍ଟହୋଇଯାଇଥିବାରୁ, ତା'ର ସେଇ ଅତୀତ ସ୍ମୃତିକୁ ମନେପକାଇ ସେ ବିଚଳିତ ହୋଇପଡ଼ୁଛି । ସେଇ ଦାରୁଣ ଆଘାତ ଫଳରେ ତା' ଆଖିରୁ ଝରିପଡ଼ୁଛି ତାତିଲି ଲୁହ । ତା' ସ୍ମୃତିର ସେଇ ରୁଦ୍ଧ କୋଠରିର ଦ୍ୱାରକୁ ହଠାତ୍ ବାକ୍ୟବାଣରେ ଖୋଲିଦେଇ ଆନା ଭୁଲକରିଛି ବୋଲି ବେଶ୍ ଅନୁଭବ କଲା । ଦୁର୍ବିପାକ କେଇ ମୁହୂର୍ତ୍ତ ନୀରବରେ ବିତାଇବା ପରେ ମୈତ୍ରେୟୀ ପୁନଶ୍ଚ ସୁସ୍ଥ ହୋଇ, ମୁଖମଣ୍ଡଳରେ ଭରିଯାଇଥିବା କଳା ବାଉଦ ଫାଙ୍କରେ ଦପ୍‌କରି ଜେନାଏ ହସର ବିଜୁଳି ଝଲିଯାଇଦେଲା । ମୈତ୍ରେୟୀର ହସ ହସ ମୁହଁ ଦେଖି ଆନା କୁଳୁରି ଉଠି କହିଲା—"ଶୁଣିବୁ ଆମ ଦଦିଙ୍କ ପ୍ରେମ କାହାଣୀ···?" ମୈତ୍ରେୟୀ କିଛି ଉତ୍ତର ନଦେଇ କେବଳ ମୁଣ୍ଡ ନୁଆଇଁ ମୁହଁରେ ହସର ଫୁଆରା ଛୁଟାଇ ଦେଲା ।

ମୈତ୍ରେୟୀର ହସରୁ ତା'ର ମନକଥା ଜାଣିପାରି କହିଲା ଆନା—"ଶୁଣ ତା' ହେଲେ ମୋର ସେବା ଓ ଯତ୍ନରେ ଫଲ୍‌ମନ୍ ଦିନ କେତୋଟା ମଧ୍ୟରେ ସୁସ୍ଥ ହୋଇଗଲା । ସତରେ ମେରି, ମୁଁ ତା'ର ସେବାଶୁଶ୍ରୂଷାରେ ତିଳେହେଲେ ଅବହେଳା କରିନଥିଲି । ତା' ଫଳରେ ସେ ମଧ୍ୟ ମୋ' ପ୍ରତି ଅତ୍ୟନ୍ତ କୃତଜ୍ଞ ବୋଲି ତା' ହାବଭାବରୁ ମୁଁ ବେଶ୍ ଜାଣିପାରିଲି । ବିଶେଷତଃ ଗୋଟିଏ ହାତ ହରାଇ ଥିବାରୁ ତା' ପ୍ରତି ମୋ' ମନରେ ସହାନୁଭୂତି ଜାତହୋଇଥିଲା । ମୁଁ ସେବା ଶୁଶ୍ରୂଷା ମାଧ୍ୟମରେ ତା'ର ମନୋଭାବକୁ ଅତ୍ୟନ୍ତ ଆପଣାର କରିନେବାକୁ ଚେଷ୍ଟା କଲି । ତାକୁ ନାନାଭାବରେ ସାନ୍ତ୍ୱନା ଦେଇ, ତା'ର ଆଘାତପ୍ରାପ୍ତ ମନଟାକୁ ହାଲୁକା କରିବାକୁ ମୁଁ ମୋର ସାଧ୍ୟମତେ ଚେଷ୍ଟାକଲି । ତାକୁ ସଙ୍ଗରେ ନେଇ ଆମ ବଗିଚାରେ ଘଣ୍ଟା ଘଣ୍ଟା ଧରି ଘୂରିଫେରି କରେ ଏବଂ ହାସ କୌତୁକ ତଥା ମଜାଳିଆ କଥା କହି ତା'ର ଭାରାକ୍ରାନ୍ତ ମନଟାକୁ ହାଲୁକା କରିବାକୁ ସବୁବେଳେ ଚେଷ୍ଟାକରେ ।

ଦିନେ ଅସ୍ତାଚଳଗାମୀ ଅରୁଣାଭ ସୂର୍ଯ୍ୟର ସୁନେଲି କିରଣରେ ସାରା ବଗିଚାର ଲତା, ପତ୍ର ଓ ଫୁଲ ଚହଟିଉଠୁଥିଲା ଏବଂ ସୁବର୍ଣ୍ଣରେଖାର ଜଳଧାରା ସତେ ଯେପରି ତରଳସୁନା ପରି ଝଲ୍‌ମଲ୍ ହେଉଥିଲା । ମନେହେଉଥିଲା ପ୍ରତି ବୃକ୍ଷଲତାରୁ ସୂର୍ଯ୍ୟଙ୍କର ଅରୁଣ କିରଣଧାରା ଝରିପଡ଼ୁଛି । ସେଇ ଏକାନ୍ତ ଅରୁଣାଭ ମୁହୂର୍ତ୍ତରେ ବଗିଚାର ଗୋଟିଏ କୋଣରେ ପଡ଼ିଥିବା ଶ୍ୱେତମର୍ମର ପଥରର ଚଟାଣ ଉପରେ ବାଁ ହାତର ପାପୁଲି ଉପରେ ନିଜ ଚିନ୍ତାକ୍ଲିଷ୍ଟ ମୁହଁଟିକୁ ରଖି ଅର୍ଦ୍ଧଶାୟିତ ଅବସ୍ଥାରେ ବସିରହିଥିଲା ଫଲ୍‌ମନ୍ । ତା' ଚାରିପଟେ ବେଢ଼ିରହିଥିଲା ମାଳତୀ ଲତାର ନୀଳାଭ ବିତାନ । ବାହାରୁ ଆଉ କୌଣସି ସ୍ଥାନରୁ ସେ ସ୍ଥାନଟି ଦେଖାଯାଉନଥିଲା । କେବଳ ଏଇ କୋଠିର ଉପର ମହଲାର ଗୋଟିଏ ଗମ୍ବୁଜର ଝରକାରୁ ସେଇ ନିରୋଳା ଥାନଟି ବେଶ୍ ସ୍ପଷ୍ଟ ଭାବରେ ଦେଖାଯାଉଥିଲା ।

ସେତେବେଳେ ଦିଗନ୍ତ ବିସ୍ତୃତ ସ୍ୱର୍ଣ୍ଣାଭ କିରଣର ଶେଷଛଟା ପୃଥିବୀ ଉପରେ ଝରିପଡ଼ୁଥିଲା । ସେଇ ସୁଖଦ ମୁହୂର୍ତ୍ତରେ ଚିନ୍ତାର ଅତଳ ସାଗରରେ ବୁଡ଼ିରହିଥିବା ସେହି

ମଣିଷଟି ଜାଣିନଥିଲା ଯେ, ଆଉ ଜଣେ କେହି ତା' ଅନ୍ତରର ଦୁଃଖକୁ ସହାନୁଭୂତିର ଦୃଷ୍ଟିରେ ଲକ୍ଷ୍ୟ କରୁଛି ଅତି ନିକଟରୁ । ତା' ଅନ୍ତରର ସକଳ ଦୁଃଖ ଓ ବ୍ୟଥାକୁ ଦୂରକରିବା ପାଇଁ ବିଧାତା ଏ' ସଂସାରରେ ଗୋଟିଏ ମାତ୍ର ଝିଅକୁ ଜନ୍ମଦେଇଛନ୍ତି ।

"ସତ କହୁଛି ମେଗି, ସେତେବେଳେ ଫଲ୍‌ମନ୍ ପ୍ରତି ମୋ' ଅନ୍ତରର ସ୍ନେହ, ଶ୍ରଦ୍ଧା ଓ ଆନ୍ତରିକତା ସବୁକିଛି ଅଜାଡ଼ି ହୋଇ ପଡ଼ୁଥିଲା । ତେଣୁ ତା'ର ସେଇ ଏକାନ୍ତ ମୁହୂର୍ତ୍ତରେ ସାଥୀ ହେବାପାଇଁ ଯାଇ ସେଠାରେ ପହଞ୍ଚି ଯିବାକୁ ସ୍ଥିରକରି, ମୁଁ ଗୋଲାପ କୁଞ୍ଜପାଖ ଦେଇ-ଦେଇ ଚାଲିଲି ଓହ୍ଲାଇଲେ ।

ତା'ର ସେଇ ଏକାନ୍ତ ମୁହୂର୍ତ୍ତରେ ମୋତେ ଦେଖିବ ବୋଲି ସେ ଆଦୌ ଧାରଣା କରି-ନଥିଲା । ସାଧାରଣତଃ ଆମେ ଦୁହେଁ ପ୍ରତିଦିନ ସକାଳେ ବଗିଚାରେ ବୁଲିବାର ଯୋଜନା କରିଥିଲୁ—କାରଣ ଉପରଓଳି ମୁଁ ପ୍ରାୟ ପିରଷ୍ଟାର କାମରେ ମୋ ବାପାଙ୍କୁ ସାହାଯ୍ୟ କରୁଥିଲି । ତେଣୁ ସେ ସମୟରେ ମୁଁ ବାହାରକୁ ବାହାରେ ନାହିଁ ।

"ସେଦିନ ମୁଁ ଅନ୍ୟାନ୍ୟ ସବୁ କାମ ପକାଇ ଦେଇ ସେଇ ଅବେଳା ସନ୍ଧ୍ୟାରେ ଯାଇ ହାଜର ହୋଇଗଲି ଫଲ୍‌ମନ୍ ପାଖରେ । ମୁଁ ଲକ୍ଷ୍ୟ କଲି—ହଠାତ୍ ସେ ମୋତେ ସେଠାରେ ଦେଖି ବିବ୍ରତ ହୋଇଉଠିଲା । ମୋତେ ଦେଖିବାକ୍ଷଣି ସେ ହଡ଼ବଡ଼େଇ ଚଳିପରି ହାତଭରା ଦେଇ ଉଠିପଡ଼ିବାକୁ ଚେଷ୍ଟା କରିବା ମାତ୍ରେ ତା' ଦେହର ଭାରସାମ୍ୟ ରକ୍ଷା କରିନପାରି ପୁଣି ଗଡ଼ିପଡ଼ିଲା । ମୁଁ ସଙ୍ଗେ ସଙ୍ଗେ ତାକୁ ଦୁଇ ହାତରେ ଗୋଟିପଣେ ଜାବୁଡ଼ି ଧରିଲି ପରି ଟେକି ଉଠାଇ ଠିକ୍‌ଭାବରେ ବସାଇଦେଲି । ମୁଁ ଏପରି ଭାବରେ ତାକୁ ଉଠାଇ ଦେବି ବୋଲି ସେ ଆଦୌ ଧାରଣା କରିନଥିଲା । ତେଣୁ ସେ ଅପ୍ରତିଭ ହେବାପରି ଓଠ ଫାଙ୍କରେ ମ୍ଳାନ ହସଟିଏ ଚେନାଏ ବିଛୁରିଦେଇ ମୁହଁ ତଳକୁ କରିନେଲା ।

ସତରେ ମେଗି, ମୁଁ ସେତେବେଳେ ମୋର ଆୟତ୍ତରେ ନଥିଲି । ଫଲ୍‌ମନ୍‌ର ଅସହାୟ ଅବସ୍ଥାରେ ମୁଁ ଏକାବେଳକେ ସହାନୁଭୂତିଶୀଳ ହୋଇଉଠିଥିଲି । ତେଣୁ ମୋ' ଚକ୍ଷୁ ଦୁଇଟି ଆର୍ଦ୍ର ହୋଇଉଠିଲା । ମୁଁ ମଧ୍ୟ ସଙ୍ଗେ ସଙ୍ଗେ ମୁହଁ ବୁଲାଇନେଇ ମୋ' ମନର ଭାବ ଗୋପନ କରିବାକୁ ଚେଷ୍ଟାକରିଥିଲି ।

ଫଲ୍‌ମନ୍ ଥିଲା ପ୍ରଖର ବୁଦ୍ଧିମାନ୍ । ସେ ସମୟରେ ମୋ' ମନର ଅବସ୍ଥା ତା ପାଖରେ ଅଛପା ରହିଲା ନାହିଁ । ସେଇ ସୁବର୍ଣ୍ଣ ସୁଯୋଗଟିକୁ ହାତଛଡ଼ା ନକରିବାକୁ ସେ ଥରେହେଲେ ପଛେଇଲାନାହିଁ ।

ସେ ତା'ର ଦରଦଭରା ମୁହଁମେଣ୍ଟାକରେ ଶୁଖିଲା ହସଟିଏ ଖେଳାଇଦେଇ ଅପେକ୍ଷାକୃତ ନରମ ସ୍ୱରରେ କହିଲା—"ଏ ଅସହାୟ ଓ ପଙ୍ଗୁ ହୀନ ଲୋକଟି ପ୍ରତି ଆପଣଙ୍କର ଅଶେଷ କରୁଣା ମିସ୍ ଆନା । ଆପଣଙ୍କର ଅପରିସୀମ ଦୟା ମୋତେ ନୂତନ ଭାବରେ ବଞ୍ଚିବାର ପ୍ରେରଣା ଯୋଗାଇଛି ।"

ଟିକଏ ରହିଯାଇ ସେ ଆହୁରି ଦରଦଭରା କଣ୍ଠରେ କହିଲା—"ମିସ୍ ହେମ୍‌ବାର୍ନ, ଏଇ

ଅକ୍ଷମ ମଣିଷଟି ଉପରେ ତୁମର ଭାର ଲଦିଦେଇ ତାକୁ ଆହୁରି ଋଣୀ କରୁଛ କାହିଁକି ?"

ମୋ' ସୁନା ଭଉଣୀଟି, ପ୍ରକୃତରେ ମୁଁ ସେତେବେଳେ ତା'ଠାରେ କେବଳ ଅବସ୍ଥାର ଛରିଥିଲି ଗୋଟିଏ ଅସହାୟ ତଥା ଅଙ୍ଗହୀନ ମଣିଷର ମଣିଷତ୍ୱ । ତା' ମନର ଛଳ କପଟ ଓ କ୍ରୁର ଭାବ ମୋ' ନିକଟରେ ଥିଲା ସମ୍ପୂର୍ଣ୍ଣ ଅଜ୍ଞାତ । ତେଣୁ ମୁଁ ଭାବନାର ଦୋଳାରେ ଆନ୍ଦୋଳିତ ହୋଇ କହିଲି—"ବିବ୍ରତ ହେଉଛ କାହିଁକି ? ଏ' ସମୟରେ ମୁଁ ତୁମର ଯେତିକି ସେବା କରିପାରୁଛି, ସେଇଥିରେ ମୋର ପରମ ତୃପ୍ତି । ତୁମେ ମୋତେ ଏ ସେବାର ସୁଯୋଗ ଦେଇନଥିଲେ, ହୁଏତ ଜୀବନରେ ଏପରି ତୃପ୍ତି ମୁଁ ପାଇପାରି ନଥା'ନ୍ତି ।

"ଏହାପରେ ହଠାତ୍ ସେ ତା' ବାଆଁ ହାତରେ ମୋ ଡାହାଣ ହାତଟିକୁ ଉଠାଇ ନେଇ, ପାପୁଲି ଉପରେ ସରୁ ଚୁମ୍ବନଟିଏ ଆଙ୍କି ଦେଲା ଏବଂ ତା'ପରେ ମୋର ସେଇ ହାତଟିକୁ ଅନେକ ସମୟ ପର୍ଯ୍ୟନ୍ତ ତା' ବୁକୁରେ ଚାପିଧରିଲା ।

"ମୁଁ ସେତେବେଳେ ତା' ମନର ଉତ୍ତେଜନା ବେଶ୍ ଅନୁଭବ କରୁଥିଲି । ଅବଶ୍ୟ ମୋ' ଅନ୍ତରରେ ସେ ସମୟରେ ଯେ ଉତ୍ତେଜନା ସୃଷ୍ଟି ହୋଇନଥିଲା ତା' ନୁହେଁ । ତେଣୁ ମୁଁ ମୋ ହାତଟିକୁ ତା' ହାତରୁ ହଠାତ୍ ଟାଣି ଆଣି ପାରିଲି ନାହିଁ । ମୁଁ ଯେମିତି ବସିଥିଲି, ଠିକ୍ ସେଇମିତି ନିଶ୍ଚଳ ଓ ନିସ୍ପନ୍ଦ ହୋଇ ବସିରହିଥିଲି ।

ଏହିପରି ଭାବରେ ଆମ ଦୁହିଁଙ୍କର କିଛି ସମୟ ଆନନ୍ଦରେ କଟିଗଲା । ଏହା ମଧ୍ୟରେ ସୂର୍ଯ୍ୟଙ୍କର ସୁନେଲି କିରଣଧାରା ଧରାପୃଷ୍ଠରୁ ସମ୍ପୂର୍ଣ୍ଣ ପୋଛିହୋଇଗଲା । ଆମ ବଗିଚାର ଗଛ, ଲତା, ପତ୍ର ଓ ପୁଷ୍ପ ଉପରୁ ସୂର୍ଯ୍ୟଙ୍କ ସୁନେଲି କିରଣ ଅପସାରିତ ହୋଇଯିବା ମାତ୍ରେ ସନ୍ଧ୍ୟାର କଳାମେଘୀ ପାଟ ଧୀରେ ଧୀରେ ଆଚ୍ଛାଦିତ ହୋଇଗଲା ଧରଣୀରାଣୀ ବକ୍ଷଦେଶରେ । ଫଲ୍‌ମନ୍ ବୁଦ୍ଧିର ସେଇ କଳାମେଘୀ ଶାଢ଼ି କାନିରେ ମୋତେ ବାନ୍ଧି ରଖିବାକୁ ଚେଷ୍ଟା କରିଥିଲା । ହଠାତ୍ ତା'ର ନଗ୍ନ ପ୍ରସ୍ତାବରେ ମୁଁ ଚମକିପଡ଼ିଥିଲି । ତା'ପରେ ମୁଁ ନିଜକୁ ନିଜେ ପଚାରିଛି—ଏଥିପାଇଁ ମୁଁ ନିଜେ ତାକୁ ପ୍ରଶ୍ରୟ ଦେଇନାହିଁ କି ?

"ମେଘା, ତୁ ହୁଏତ ଭାବୁଥିବୁ ମୁଁ ନିଜକୁ ସତୀସାଧ୍ୱୀ ବୋଲି ପ୍ରମାଣିତ କରିବାପାଇଁ ତୋ' ଆଗରେ ଏପରି ବାହାଦୁରି ଦେଖାଇ କହୁଛି; ତା ନୁହେଁ । ପ୍ରକୃତରେ ମୁଁ ସେଦିନ ନିଜକୁ ଅନେକ ସଂଯତ କରି, ଫଲ୍‌ମନ୍‌ର ଇଙ୍ଗିତର ପ୍ରତ୍ୟୁତ୍ତର ନଦେଇ ସେଠାରୁ ଉଦ୍ଧାର ପାଇ ଫେରିଆସିଛି ।

"ମେଘା, ଆଜି ମଧ୍ୟ ମୋର ସେଦିନର କଥା ମନେପଡ଼ିଗଲେ ନିଜର ଆତ୍ମବଳ ଉପରେ ମୋର ଅନେକ ଶ୍ରଦ୍ଧା ଜାଗିଉଠେ । ତୁ ହୁଏତ ଜାଣିଛୁ, ଆମ ସମାଜରେ ମିଳାମିଶାର ସେପରି ବାଧା ଓ ବନ୍ଧନ ନାହିଁ । ଆମେ ସ୍ୱାଧୀନ ଭାବରେ ଯେକୌଣସି ଲୋକ ସହିତ ମିଳିମିଶିପାରୁଁ । ତା'ପରେ ସେଦିନର ପ୍ରାକୃତିକ ପରିବେଶ ତଥା ସାନ୍ଧ୍ୟ ସମୀରଣରେ ଅବଗୁଣ୍ଠନ ଯେପରି ଭାବରେ ଆମ ଦୁହିଁଙ୍କୁ ଆଚ୍ଛାଦିତ କରି ରଖିଥିଲା, ସେଥିରେ ଯେକୌଣସି-

ମତେ ଅବାଟକୁ ଗୋଡ଼ ଖସାଇଦେବା ଆଦୌ ଅସ୍ୱାଭାବିକ ନଥିଲା । ସେତେବେଳେ ମୋ ଶରୀରର ନବୀନ ତାରୁଣ୍ୟ ମୋତେ ଅଦ୍ଭୁତ ଉତଳା କରିଦେଇଥିଲା । ପ୍ରକୃତିର କୋମଳ ତଥା ଶୀତଳ ଅବଗୁଣ୍ଠନ ତଳେ ସମ୍ମୁଖରେ ଜଣେ ବଳିଷ୍ଠ ଯୁବକର ପ୍ରଣୟ ଇଙ୍ଗିତ କ'ଣ ଗୋଟିଏ ନବଯୌବନାକୁ ଅବାଟକୁ ଓଟାରି ନେବାପାଇଁ ଯଥେଷ୍ଟ ନୁହେଁ ? ସେଥିରେ ପୁଣି ମନଟା ଯାହା ମୋର ସକରୁଣ ହୋଇଉଠିଥିଲା, ତା'ର ସକାତର ପ୍ରେମ ନିବେଦନର ଆହ୍ୱାନରେ ମୋର ଉଚ୍ଛ୍ୱସିତ ମନ ଏବଂ ନବତାରୁଣ୍ୟଭୋଳା ଦେହଟିକୁ ତା'ର ହାତରେ ସମର୍ପି ଦେବା ଆଦୌ ଅସମ୍ଭବ କିମ୍ବା ଅସ୍ୱାଭାବିକ ନଥିଲା । କିନ୍ତୁ ସେଦିନ କିପରି କେଜାଣି, କେଉଁ ଶକ୍ତିର ପ୍ରବଳତା ମୋ'ଠାରେ ଜାଗିଉଠିଥିଲା, ମୁଁ କହିପାରିବି ନାହିଁ । ମୁଁ ଫଲ୍‌ମନ୍‌ର ପ୍ରଣୟ ଇଙ୍ଗିତକୁ ଅତ୍ୟନ୍ତ ଦୃଢ଼ତାର ସହିତ ଏଡ଼ାଇ ଦେଇପାରିଥିଲି । ନୋହିଲେ ସେଦିନ ମୁଁ ମୋର ସର୍ବସ୍ୱ ଲୁଟାଇ ଦେଇଥା'ନ୍ତି ସେହି ଦୁର୍ଦ୍ଧାନ୍ତ ପ୍ରବଞ୍ଚକଟା ପାଖରେ । ମୁଁ ଶତଶତ ଧନ୍ୟବାଦ ଜଣାଉଛି ପରମେଶ୍ୱରଙ୍କ ପ୍ରଦତ୍ତ ମନୋବଳକୁ, ଯେଉଁ ଶକ୍ତିବଳରେ ମୁଁ ନିଜକୁ କୌଣସିମତେ ରକ୍ଷାକରିପାରିଥିଲି ।

ତା'ର ପ୍ରସ୍ତାବ ସତେ ଯେପରି ମୁଁ କିଛି ଶୁଣିପାରିନାହିଁ, ଠିକ୍ ସେହିପରି ଛଳନା କରି, ମୁଁ ତାକୁ କିଛି ନ ଜାଣିଲା ପରି କହିଲି—"ଦେଖ, ତୁମେ ଧୀରେ ଧୀରେ ସୁସ୍ଥ ହୋଇ-ଆସିଲଣି । ତେଣେ ସୂର୍ଯ୍ୟ ଦେଖିଲ, କାକର ପଡ଼ିବା ଆରମ୍ଭ ହୋଇଗଲାଣି, ଆଉ ଏଠାରେ ଗୋଟିଏ ମୁହୂର୍ତ୍ତ ପୁଣି ରହିବା ଉଚିତ ହେବ ନାହିଁ ।"

ଗୋଟାଏ ଅଦମ୍ୟ କାମନାର ପଥ ହଠାତ୍ ରୁଦ୍ଧ ହୋଇଗଲେ ମଣିଷ ଯେପରି ଭାଙ୍ଗି-ପଡ଼େ, ଫଲ୍‌ମନ୍‌ର ଅବସ୍ଥା ଠିକ୍ ସେହିପରି ହୋଇଥିଲା । ସେ ଏକ ହତାଶ ପ୍ରେମିକ ପରି ଚିନ୍ତାର ଅତଳ ସାଗରରେ ବୁଡ଼ିଗଲା ।

ତା'ର ଅନେକଦିନ ପରେ ମୁଁ ବେଶ୍ ଜାଣିପାରିଲି—ଧୂର୍ତ୍ତ ଫଲ୍‌ମନ୍ ସେଦିନ ଯେପରି ଭାବରେ ହତାଶ ପ୍ରେମିକର ଅଭିନୟ କରିଥିଲା, ତା'ର ଏକମାତ୍ର ଉଦ୍ଦେଶ୍ୟ ଥିଲା ମୋ ସହାନୁଭୂତିର ଅନ୍ତରାଳରେ ମୋ ମନଟିକୁ ସମ୍ପୂର୍ଣ୍ଣ ଭାବରେ ଜୟ କରିବା । ସେ ଭଲ ଭାବରେ ଜାଣିଥିଲା, ତା'ର କାମନା ବାସନାର ଜାଲରେ ମୋତେ ବନ୍ଦୀ କରିବା ପରେ ସେ ପାଇଯାଇଥା'ନ୍ତା ଆମ ଜେଲକୋଠିର ମାଲିକ । ସେହି ଗୂଢ଼ ଉଦ୍ଦେଶ୍ୟ ନେଇ ସେଦିନ ମୋତେ ସେ ଜାଲରେ ଛନ୍ଦିଦେବାକୁ ବସିଥିଲା । କିନ୍ତୁ ମୋର ଅଶେଷ ସୌଭାଗ୍ୟ ବଳରୁ ମୁଁ ସେଦିନ ତାର ଜାଲରେ ଧରାନଦେଇ ନିରାପଦରେ ଖସିଆସିପାରିଲି ।

"ମୋଟ, ସେଦିନ ଫଲ୍‌ମନ୍‌ର ଜଘନ୍ୟ ଉଦ୍ଦେଶ୍ୟ କୌଣସି ପ୍ରକାର ପୂରଣ ନହେବାରୁ ସେ ବିଷଣ୍ଣ ମନରେ କିଛି ସମୟ ସେଇଠି ବସିରହିଲା । ଅବଶ୍ୟ ତା'ପରି ଗୋଟେ ଛନ୍ଦ କପଟିଆ ଦୁର୍ବୃତ୍ତ ପକ୍ଷରେ ମୋ' ପ୍ରତି ବଳ ପ୍ରୟୋଗ କରିବା ଆଦୌ ଅସମ୍ଭବ ନଥିଲା । କିନ୍ତୁ ନାରୀର ପ୍ରେମ ଅପେକ୍ଷା ଧନଦୌଲତ ଥିଲା ତା'ର ଜୀବନର ଏକମାତ୍ର କାମ୍ୟ ଓ ଲକ୍ଷ୍ୟ । ତା'ପରେ ଅବଶ୍ୟ ସେ ଆମ କୋଠିରୁ ପଳାଇ ଯାଇ ପାରିଥା'ନ୍ତା । କିନ୍ତୁ ଜାଣିଶୁଣି ସେ ସେପରି ପଦକ୍ଷେପ

ନନେଇ, ପରବର୍ତ୍ତୀ ପଦକ୍ଷେପ ପାଇଁ ଅପେକ୍ଷା କରି ରହିଲା; କାରଣ ପ୍ରଥମ ପଦକ୍ଷେପ ଫଳରେ ସେ ତା'ର ଶିକାରର ଶକ୍ତି ପରୀକ୍ଷା କରିନେଲା ସତ; କିନ୍ତୁ ଆଦୌ ନିରାଶ ହେଲା ନାହିଁ । ସେ ତା'ର ପରବର୍ତ୍ତୀ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଗୋଟିଏ ସୁବିଧାପିଲା ପରି ମୋ' ହାତଧରି ଉଠିଆସିଲା ତା' କୋଠରୀକୁ ।

ତା' ପରେ ପରେ ମୁଁ ଫଲ୍‌ମନ୍‌ର କାର୍ଯ୍ୟକଳାପ ଓ ଚରିତ୍ର ସମ୍ପର୍କରେ ଅନେକ ତଥ୍ୟ ସଂଗ୍ରହ କରିଥିଲି । ସେଇଥିରୁ ମୁଁ ଜାଣିଲି, ସେ ମୋର ପ୍ରଣୟପ୍ରାର୍ଥୀ ନଥିଲା; ବରଂ ଆମ ଜମିଦାରୀର ନାରୀ ମାନଙ୍କୁ ମାତାଲ୍ କରିଦେଇଥିଲା । ସେ ନରପିଶାଚଟା ନାରୀକୁ ଗୋଟିଏ ଭୋଗବିଳାସର ସାମଗ୍ରୀ ବୋଲି ମନେକରୁଥିଲା । ଯେ କୌଣସି କୁତ୍ସିତ ଉପାୟରେ ଧନ ରୋଜଗାର କରିବା ଥିଲା ତା' ଜୀବନର ଏକମାତ୍ର ଧ୍ୟେୟ । ନାରୀକୁ ସେ ସବୁବେଳେ ତା' କାମ ବାସନା ଚରିତାର୍ଥର ଗୁଚ୍ଛବସ୍ତୁ ବୋଲି ମନେକରୁଥିଲା ଏବଂ ଏବେ ମଧ୍ୟ ତା'ର ସେହି ବଦଭ୍ୟାସ ରହିଛି । ମୁଁ ଭଲଭାବରେ ଜାଣିଛି ମେରୀ, ଫଲ୍‌ମନ୍‌ଟା ଗୋଟାଏ ମନୁଷ୍ୟ ନାମଧାରୀ ଦୁର୍ଦ୍ଦାନ୍ତ ଜାନୁଆର୍ । ଭଲପାଇବା ତା' ନିକଟରେ ଗୋଟେ ନିଛକ ପ୍ରତାରଣା ଏବଂ ଅର୍ଥ ତା' ଜୀବନର ଚରମ ଲକ୍ଷ୍ୟ ।

"ଫଲ୍‌ମନ୍‌କୁ ଆଣି ତା' କୋଠରୀରେ ଗ୍ରୁଣ୍ଡିଦେଇ ଲକ୍ଷ୍ୟ କଲି—ଦୁଃଖ, ଲଜ୍ଜା ଓ ଅନୁତାପରେ ତା'ର ମୁହଁଟି କଳାକାଠ ପଡ଼ିଯାଇଛି । ତା' ଫଳରେ ସେ ମୋ' ଆଗରେ ଆଉ ଗୋଟିଏ ସଫଳ ଅଭିନୟ କରିପାରିଥିଲା । ସେ ହୁଏତ ଭାବିଥିଲା—ତା'ର ସେଦିନର ହୀନ ପ୍ରସ୍ତାବ ମୁଁ ବାପାଙ୍କ ପାଖରେ ଖୋଲିଦେଲେ ଅସହାୟ ଭାବରେ ଆମ କୋଠିରୁ ବିଦାୟ ନେବାପାଇଁ ତାକୁ ଡେରି ହବ ନାହିଁ । ତା'ର ସେଇ ଛଳନାଟି ମଧ୍ୟ ବେଶ୍ ଆଶାଜନକ ଭାବରେ ଫଳବତୀ ହୋଇଥିଲା ।

"ମେରୀ, ସେଦିନ ମୁଁ ତା'ର ମନୋଭାବକୁ ଆଦୌ ଠଉରେଇ ପାରିନଥିଲି; ବରଂ ତା'ପ୍ରତି ଆନ୍ତରିକ ସହାନୁଭୂତି ଦେଖାଇ ତାକୁ କୌଣସି ଗୋଟିଏ କାମରେ ଲଗାଇଦେବା ପାଇଁ ମୁଁ ବାପାଙ୍କ ପାଖରେ ସୁପାରିଶ୍ କରିଥିଲି ।

"ବାପା, ପିଲାଟି ଦିନରୁ ଦିନେହେଲେ ମୋ' ଅନୁରୋଧ ଟାଳି ନଥିଲେ, ତେଣୁ ସେଦିନ ମଧ୍ୟ ଫଲ୍‌ମନ୍‌କୁ କାମରେ ଲଗାଇ ଦେବାକୁ ଆଦୌ ଅସ୍ୱୀକାର କଲେ ନାହିଁ । ଏହା ପୂର୍ବରୁ କେତେଥର ଫଲ୍‌ମନ୍ ସହିତ ଆଲୋଚନା କରି, ତା' ବୁଦ୍ଧିମତ୍ତାର ପରିଚୟ ସେ ପାଇଥିଲେ । ତେଣୁ ମୋ' କହିବା ଅନୁସାରେ ପରଦିନ ବାପା ତାକୁ ଡକାଇ ଆଣି ଗୋଟିଏ ଗୁଦାମରେ ନିଯୁକ୍ତ କରିଦେଲେ । ସେ ହୁଏତ ଭାବିଥିଲା—ମୋ' ପାଖରେ ପ୍ରଣୟ ନିବେଦନର ଦଣ୍ଡସ୍ୱରୂପ ହୁଏତ ତାକୁ କୌଣସି କଠିନ ଦଣ୍ଡ, ତିରସ୍କାର ଅଥବା କୋଠିରୁ ବହିଷ୍କାର ଆଦେଶ ମିଳିବ; କିନ୍ତୁ ତା' ପରିବର୍ତ୍ତେ ଅଶାତୀତ ପୁରସ୍କାର ପାଇଥିବାରୁ ସେ ମନେ ମନେ ହୁଏତ ଭାବିଥିବ, ତାହାଥିଲା ତା' ପଦକ୍ଷେପର ପ୍ରଥମ ଉନ୍ନତିକର ତଥା ଆଶାଜନକ ସ୍ୱର୍ଣ୍ଣମୟ ସୋପାନ ।"

( ସତର )

"ଆଖପାଖରେ ଯେତେ ଜମିଦାରୀ ଓ ବ୍ୟବସାୟକେନ୍ଦ୍ର ଥିଲା, ସେମାନଙ୍କ ସହିତ ଆମର ପ୍ରାୟ ମାମଲାମକଦ୍ଦମା ଲାଗିରହୁଥାଏ—କାରଣ ସେମାନେ ନୀଳକୋଠିର ମାଲିକଙ୍କୁ ଆଦୌ ଭଲ ଦୃଷ୍ଟିରେ ଦେଖନ୍ତି ନାହିଁ । ତେଣୁ ସେମାନଙ୍କ ସହିତ ବାଦବିସମ୍ବାଦ ଫଳରେ ବାପାଙ୍କୁ ପ୍ରାୟ କୋର୍ଟ କଚେରିରେ ମାମଲାମକଦ୍ଦମା କରିବାକୁ ପଡ଼ୁଥିଲା । ବାପା ଜମିଦାରୀର ଅନ୍ୟାନ୍ୟ କାର୍ଯ୍ୟ ସହିତ ମାମଲାମକଦ୍ଦମାଗୁଡ଼ିକୁ ମଧ୍ୟ ତଦାରଖ୍ କରୁଥିଲେ । ସେ ବେଳେ-ବେଳେ ପରିଶ୍ରମ କାତର ହୋଇ ମନେମନେ ଜଣେ ବିଚକ୍ଷଣ ପାରିବାର ଲୋକ ଖୋଜୁଥିଲେ । ସେ ଫଲ୍‌ମନ୍‌କୁ ପ୍ରଥମେ ପରୀକ୍ଷାମୂଳକ ଭାବରେ ସେହି କାମରେ ନିଯୁକ୍ତ କରିଦେଲେ ।"

ମୈତ୍ରେୟୀ ଅନା କଥାରେ ବାଧାଦେଇ କହିଲା—"ଦାଦା, ତୁମେ ଯଦି ସେ ନର-ରାକ୍ଷସଟାକୁ ଅପମାନିତ କରି, ତା' ଚରିତ୍ର ସମ୍ବନ୍ଧରେ ପଦାରେ ପକାଇ ଦେଇଥା'ନ୍ତ, ତେବେ ହୁଏତ ସେ ଆଜି ତୁମର ବିଶେଷ କିଛି କ୍ଷତି କରିପାରି ନଥା'ନ୍ତା ।"

"ଆରେ ପାଗଳି, ତୁ ହିନ୍ଦୁ ପଣ୍ଡିତ ଘରର ଝିଅ । ଆମ ଅପେକ୍ଷା ଭାଗ୍ୟ ଉପରେ ତୁମେମାନେ ବେଶି ବିଶ୍ୱାସ କର । ତେଣୁ ମୁଁ କହିବି, ତା' ଭାଗ୍ୟରେ ଗୋଟିଏ ନୀଳକୋଠିର ମାଲିକ ହେବାର ଲେଖାଅଛି । ଯେଉଁଦିନୁ ଆମେ ତାକୁ ବାହାର କରିଦେଇଥିଲେ, ତା' ଭାଗ୍ୟ ତାକୁ ଆଜି କୁଆଡ଼େ ଟାଣି ନେଇ ନଥା'ନ୍ତା ?

"ସେ ଯାହାହେଉ···" କହିଲା ଅନା—"ଫଲ୍‌ମନ୍ ଥିଲା ଅତ୍ୟନ୍ତ ବୁଦ୍ଧିମାନ୍ । ସେ ଆମ ମାମଲମକଦ୍ଦମାଗୁଡ଼ିକୁ ଖୁବ୍ ତତ୍ପରତାର ସହିତ ତଦାରଖ୍ କଲା । ବିଶେଷତଃ ଏଠାକାର ଗୁମାସ୍ତାମାନଙ୍କ ତୁଳନାରେ ବିଦେଶୀ ହାକିମହୁକୁମାମାନଙ୍କୁ ଫଲ୍‌ମନ୍ ନିଜର ବାକ୍‌ଚାତୁରୀ ବଳରେ ବିମୁଗ୍ଧ କରାଇ ଆମ ମକଦ୍ଦମାଗୁଡ଼ିକୁ ଜିତାଇନେଲା । ତା'ର କାର୍ଯ୍ୟଦକ୍ଷତାରେ ମୁଗ୍ଧ ହୋଇ ବାପା ଶାନ୍ତିରେ ନିଃଶ୍ୱାସ ମାରିଲେ । ଏତେଦିନଧରି ଏକୁଟିଆ କଠିନ ପରିଶ୍ରମ କରି ସେ ଏଡ଼େବଡ଼ ଜମିଦାରୀର ମାଲିକ ହୋଇପାରିଲେ । ତା'ରି ଫଳରେ ସେ ଦିନେ ହେଲେ ସୁଖଭୋଗ କରିବାର ସୁଯୋଗ ପାଇନଥିଲେ । ବିଶେଷତଃ ମୋ' ମାଆଙ୍କ ମୃତ୍ୟୁପରେ ସେ ଆହୁରି ଅଧିକ ହଇରାଣ ହେଉଥିଲେ । ଫଲ୍‌ମନ୍ ପରି ଜଣେ ଚତୁର ଓ ଦକ୍ଷ ଲୋକଙ୍କୁ ସାହାଯ୍ୟକାରୀ ଭାବରେ ପାଇବା ଫଳରେ ତା'ରି ଉପରେ ଧୀରେ ଧୀରେ ସମସ୍ତ ଦାୟିତ୍ୱ ଅର୍ପଣ କରିଦେଇ ବାପା ପ୍ରାୟ ନିଶ୍ଚିନ୍ତ ହୋଇ-ପଡ଼ିଲେ ।

"ମୁଁ ତୋତେ ଆଗରୁ କହିଛି ଜଣେ ଭଦ୍ରମହିଳାଙ୍କ ବିଷୟ, ଯାହାଙ୍କୁ ନେଇ ବାପା ବର୍ତ୍ତମାନ ଆମ ଦେଶରେ ଅଛନ୍ତି । ସେଇ ମହିଳାଙ୍କୁ ନେଇ ବାପା ବିଭିନ୍ନ ସହର,

ଶୈଳକବାସ ଓ ଅନ୍ୟାନ୍ୟ ସ୍ଥାନକୁ ବାହାରିଯିବାର କିଛିଦିନ ଆଗରୁ ଫଲମନ୍ ସାହେବଙ୍କୁ ଆମ ଜମିଦାରୀରେ ମେନେଜର୍ କରିଦେଲେ। ଏହି ଘଟଣା ଉପରେ ସମସ୍ତ ଦାୟିତ୍ୱ ଲଦିଦେଇ ବାପା ଏକାବେଳକେ ନିଶ୍ଚିନ୍ତ ହୋଇ ଶ୍ୱେତହିଲାସରେ ମାତିଗଲେ। ମୁଁ ଅବଶ୍ୟ ପ୍ରଥମେ ପ୍ରଥମେ ବାପାଙ୍କ ବ୍ୟବହାରରେ ମନେ ମନେ ବିରକ୍ତ ହେଉଥିଲି; କିନ୍ତୁ ତାଙ୍କର ମୋ ପ୍ରତି ସ୍ନେହ ଓ ଶ୍ରଦ୍ଧାରେ ତିଳେମାତ୍ର ଅବହେଳା ନଥିଲା; ବରଂ ପୂର୍ବ ଅପେକ୍ଷା ଅଧିକ ଯତ୍ନ ନେଇ ସେ ମୋର ସମସ୍ତ ବିଷୟ ବୁଝୁଥିଲେ। ତେଣୁ ମୁଁ ମୋ ବାପାଙ୍କୁ କୌଣସିମତେ ଦୋଷ ଦେଇପାରିବ ନାହିଁ।

"ମେଷ୍ଟ୍ର! ତୁ ଦେଖୁଛୁ, ଆମର ଏହି ଯେଉଁ ବିପୁଳ ସମ୍ପତ୍ତି ତାକୁ ବାପା ମୋ'ରି ହାତରେ ଅର୍ପଣ କରିଯାଇଛନ୍ତି। ତେଣୁ ମୁଁ ତାଙ୍କ ଆଚରଣକୁ ଆଦୌ ଦୋଷ ଦେଇପାରିବ ନାହିଁ। ଏହି ସୁଦୂର ଦେଶ, ସାତସମୁଦ୍ର ତେରନଦୀର ଏ'ପଟରେ ଥାଇ ମଧ୍ୟ ମୁଁ ପ୍ରାୟ ପ୍ରତିଦିନ ମୋ ବାପାଙ୍କ ଉଦ୍ଦେଶ୍ୟରେ ମଙ୍ଗଳ କାମନା କରିବାକୁ ଭୁଲିଯାଏନାହିଁ।

"ହିଁ ଫଲମନ୍‌ର ପୈଶାଚିକ ବୃତ୍ତି ବିଷୟରେ କହୁଥିଲି ନା; ଶୁଣ। ମେନେଜର ପଦରେ ରହିବା ପରେ ଫଲମନ୍ ଯାଦୁମନ୍ତ କଲା ପରି ମୋ ବାପାଙ୍କୁ ବଶ କରିନେଲା। ସେ ତା'ର କାର୍ଯ୍ୟଦକ୍ଷତାର ଆଳ ଦେଖାଇ, ବାପାଙ୍କଠାରୁ ସମସ୍ତ କ୍ଷମତା ଆପଣା ହାତକୁ ନେଇ ମନୋମୁଖୀ ଶାସନ ଚଳାଇଲା।"

ମୈତ୍ରେୟୀ ଆନାର କଥା ମଝିରେ ପୁଣି ବାଧାଦେଇ କହିଲା—"ତୁମେ କ'ଣ ଦିଦି ଏ ସବୁ ଜାଣିଶୁଣି ସେତେବେଳେ ନୀରବ ରହିଥିଲ ?"

"ମୁଁ ହୁଏତ ଯୁଝିଥିଲେ ସବୁକିଛି ଓଲଟ ପାଲଟ ହୋଇଯାଇଥାଆନ୍ତା। କିନ୍ତୁ ମୁଁ ଜାଣିଶୁଣି ବାପାଙ୍କ ଅବସର ଆରାମରେ ବ୍ୟାଘାତ ଘଟାଇବାକୁ ଇଚ୍ଛା କରିନଥିଲି। ସାରାଜୀବନ ଯେଉଁ ଲୋକ କଠୋର ପରିଶ୍ରମ କରି ଏତେବଡ଼ କଳକୋଠିର ମାଲିକ ହୋଇପାରିଛନ୍ତି, ତାଙ୍କର ବିଶ୍ରାମରେ ବ୍ୟାଘାତ ଘଟାଇବାକୁ ମୁଁ ଆଦୌ ଇଚ୍ଛା କରିନଥିଲି। ଅବଶ୍ୟ ତା ଫଳରେ ବାପାଙ୍କ ସୁନାମରେ ଅନେକ ଅଞ୍ଚ ଆସିଲା··· ।"

"ସେପରି ହେଲା କାହିଁକି ?"—ପଚାରିଲା ମୈତ୍ରେୟୀ।

"ମୋ ବାପାଙ୍କ ଅମଳରେ ପ୍ରଜାମାନେ କହିଁକାଲେ ଯେଉଁ ଅସୁବିଧା ଭୋଗ କରିନଥିଲେ, ଫଲମନ୍‌ର ଶାସନ ବ୍ୟବସ୍ଥାରେ ସବୁକିଛି ଓଲଟ ପାଲଟ ହୋଇଗଲା। ବାପା ଆମ ଜମିଦାରୀରେ ପ୍ରଜାମାନଙ୍କ ସୁଖ-ସୁବିଧାଲାଗି ସମସ୍ତ ପ୍ରକାର ସୁବ୍ୟବସ୍ଥା କରିଥିଲେ। ଯାହାଫଳରେ ସେ ଆଖପାଖର କଳକୋଠି ମାଲିକମାନଙ୍କ କୁଦୃଷ୍ଟିରେ ପଡ଼ିଥିଲେ। ମୋ ବାପାଙ୍କର ସେହି ସଦୁଦ୍ଦେଶ୍ୟ ମୂଳରେ ଫଲମନ୍ କୁଠାରଘାତ କଲା। ତା' ମତରେ ଜମିଦାର ଓ ପ୍ରଜାଙ୍କ ମଧ୍ୟରେ ସଦାସର୍ବଦା ବିରୋଧଭାବ ଜାଗ୍ରତ ହୋଇ ରହିବା ଏକାନ୍ତ ଆବଶ୍ୟକ। ପ୍ରଜାମାନଙ୍କୁ ଗାଈଗୋରୁ ପରି ବାଡ଼େଇ, ଲାଠିଆଳଙ୍କ ଜୋର୍‌ରେ ତାଙ୍କ ମାନ ମହତ ନଷ୍ଟ କରିବାରେ ଅସଫଳ ହେଲେ ଜମିଦାରକୁ ବାତ ମାରେ। ତେଣୁ

ଜମିଦାରୀ ଇଲାକାରେ ସବୁବେଳେ ଉତ୍ତେଜନା ଲାଗିରହୁ—ଏହାହିଁ ଥିଲା ଫଲ୍‌ମନ୍‌ର ଏକାନ୍ତ ଇଚ୍ଛା ।

"ମଝିରେ ମଝିରେ ଫଲ୍‌ମନ୍‌ର ଅନୁପସ୍ଥିତିରେ ପ୍ରଜାମାନେ ଆସି ମୋ ପାଖରେ ଗୁହାରି କରି ସେମାନଙ୍କ ଦୁଃଖ ଜଣାନ୍ତି—କାନ୍ଦିକାଟି ସେମାନଙ୍କ ଉପରେ ଚାଲିଥିବା ଅତ୍ୟାଚାରର କାହାଣୀ ଶୁଣାନ୍ତି । ମୁଁ କେବଳ ସେମାନଙ୍କୁ ମୌଖିକ ସାନ୍ତ୍ୱନା ଦେବା ସଙ୍ଗେ ସଙ୍ଗେ ବାପା ଫେରିଆସିବା ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ଉପଦେଶ ଦିଏ । ତା ବ୍ୟତୀତ ନାଏବ ମହାଶୟ ପ୍ରଜାମାନଙ୍କ ଦୁଃଖର କାହାଣୀ ଓ ଫଲ୍‌ମନ୍ ସାହେବର ଅତ୍ୟାଚାର ବିଷୟ ଲେଖି ବାପାଙ୍କ ନିକଟକୁ ଗୋପନରେ ପତ୍ର ଲେଖନ୍ତି । କିନ୍ତୁ ମୁଁ ବାପାଙ୍କ ଶାନ୍ତିରେ ବ୍ୟାଘାତ ନ ଘଟାଇବା ପାଇଁ, ତାଙ୍କୁ କେବଳ ମୋ ଖବର ବ୍ୟତୀତ ଆଉ ପଦେହେଲେ କିଛି ଲେଖେନାହିଁ । ମୋର ଧାରଣା ଥିଲା—ସେ ନିଜେ ଆସି ସ୍ୱଚକ୍ଷୁରେ ସବୁ ଦେଖିଲେ ବେଶ୍ ବୁଝିପାରିବେ । ତେଣୁ ମଝିରେ ମଝିରେ ତାଙ୍କ ମନରେ କଷ୍ଟ ଦେବାଭଳି ଚିଠି-ପତ୍ର ଲେଖିବାକୁ ମୁଁ ଉଚିତ ମନେକରୁନଥିଲି ।"

ପୁଣି ମୈତ୍ରେୟୀ ଆନାର କଥା ମଝିରେ କହିଲା—"ଅଚ୍ଛା ଦିଦି, ସେତେବେଳେ ଫଲ୍‌ମନ୍‌ର ଅତ୍ୟାଚାରର କୌଣସି ନା କୌଣସି ଜଘନ୍ୟ ଘଟଣା ତୁମ ଆଖିରେ ନିଶ୍ଚୟ ପଡ଼ିଥିବ । ତୁମପରି ସରଳା, ଦୟାବତୀ ଓ ପରୋପକାରିଣୀ ସେସବୁ ଘଟଣା ଦେଖି ସହ୍ୟ କରୁଥିଲ କିପରି ?"

ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ କହିଲା ଆନା—"ମେରି, ମଣିଷ ଅବସ୍ଥାର ଦାସ । ଅବସ୍ଥାଚକ୍ରରେ ପଡ଼ି ମଣିଷକୁ ବେଳେ ବେଳେ ଅନେକ କିଛି ସହିବାକୁପଡ଼େ । ପ୍ରତିବାଦ ବା ପ୍ରତିକାର କରିବାକୁ ଇଚ୍ଛା ଓ ସାମର୍ଥ୍ୟ ଥିଲେ ମଧ୍ୟ ସେ ତାହା କରିପାରେ ନାହିଁ ।

ହଁ, ତେବେ ଫଲ୍‌ମନ୍‌ର ଦୌରାତ୍ମ୍ୟ ସମ୍ପର୍କୀୟ ଘଟଣାରୁ ଗୋଟିଏ ମାତ୍ର ତୋ ଆଗରେ କହୁଛି—ତୁ ଶୁଣିଲେ ନିଶ୍ଚୟ ଦୁଃଖରେ ଭାଙ୍ଗି ପଡ଼ିବୁ । ବାପା କୋଠିରେ ଥିଲେ, ତାଙ୍କ ପରିଶ୍ରମ ଲାଘବ କରିବା ପାଇଁ ମୋତେ ଅନେକ କାମ କରିବାକୁପଡ଼େ । କିନ୍ତୁ ସେ ଦୂରକୁ ଚାଲିଗଲେ—ମୋର ସେତେକିଛି କାମ ନଥାଏ । ତେଣୁ ମୁଁ ପ୍ରାୟ ଉପରଓଳି ଆମ ବାଡ଼-ବଗିଚା ଓ ତା'ର ଆଖପାଖରେ ବୁଲାବୁଲି କରି ସମୟ କଟାଇଦିଏ । ଦିନକର ଘଟଣା; ମୁଁ ଆମ ଝାଉଁବଗିଚାର ଆଖପାଖରେ ବୁଲୁଥାଏ । ଉତ୍ତରପବନର ଆଘାତରେ ଝାଉଁବଣରୁ ସୁ···ହୁ···ସୁ···ହୁ···ପବନ ଭାସିଆସୁଥାଏ । ସେତିକିବେଳେ ଦୂର ଆକାଶରେ ଦଳେ ପକ୍ଷୀ ଅର୍ଦ୍ଧଚନ୍ଦ୍ରାକାରରେ ଉଡ଼ିଯାଉଥିଲେ । ମୁଁ ସେ ଦୃଶ୍ୟ ଦେଖି ମନେ ମନେ ହୁଲୁସି ଉଠୁଥିଲି । ଠିକ୍ ସେତିକିବେଳେ, ପ୍ରାୟ ମୋ'ର ଆଖପାଖରେ କଇଁ କଇଁ ହୋଇ କାନ୍ଦଣାର ଶବ୍ଦ ଭାସିଆସିଲା । ସେତେବେଳେ ମୋ' ଆଖି ଯୋଡ଼ିକ ଲାଗିରହିଥିଲା ଆକାଶରେ ଉଡ଼ିଯାଉଥିବା ପକ୍ଷୀମାନଙ୍କ ଉପରେ । ହଠାତ୍ କାନ୍ଦଣାର କରୁଣ ଶବ୍ଦ ମୋର ଧ୍ୟାନ ଭଙ୍ଗ

କରିଦେଲି । ଅପରାହ୍ନ ସନ୍ଧ୍ୟାର ଗ୍ଲାନିଗ୍ରସ୍ତ ଝାପ୍‌ସା ଆଲୁଅରେ ମୁଁ ଚାରିଆଡ଼କୁ ଆଖି-ବୁଲାଇ କାନ୍ଦୁଥିବା ଲୋକଟିର ସନ୍ଧାନ ନେବାକୁ ଚେଷ୍ଟାକଲି ।

ଖୁବ୍ ବେଶି ଖୋଜିବାକୁ ପଡ଼ିଲାନାହିଁ । ନଈ ଆଡ଼କୁ ଥିବା ବୃକ୍ଷଲତାର ଗହଳିଆ ସ୍ଥାନରେ ସେ ଛିଡ଼ାହୋଇଥିଲା । ସେଇଠୁ ହିଁ ହାଡ଼ରୁ ଛୁଇଁଆସୁଥିଲା କଇଁ କଇଁ ହୋଇ କାନ୍ଦଣାର ସ୍ୱର । ସେ ସ୍ଥାନଟି ମୋ ଛିଡ଼ାହୋଇଥିବା ସ୍ଥାନରୁ ବେଶି ଦୂରରେ ନଥିଲା । ମୁଁ ତାକୁ ଦେଖିପାରି ତା'ରି ଆଡ଼କୁ ଆଗେଇଗଲି । ଦେଖିଲି ଆଠଦଶ ବର୍ଷ ବୟସର ଝିଅଟିଏ ନୁଖୁରିବାଳ ଫର୍ ଫର୍ ଉଡ଼ାଇ ଘୁପାଗଳାରେ ଅଖିରୁ ଲୁହଧାର ପୋଛି ପୋଛି କାନ୍ଦିବାରେ ଲାଗିଛି । ମୁଁ ଧୀରେ ଧୀରେ ଯାଇ ତା ପାଖରେ ଛିଡ଼ାହୋଇଗଲି । ସେ ଝିଅଟି ଗୋଟିଏ ଗଛକୁ ଆଉଜି ଛିଡ଼ାହୋଇଥିଲା । ମୁଁ ତା ପାଖରେ ପହଞ୍ଚିବା କ୍ଷଣି, ତା କାନ୍ଦଣା ପ୍ରାୟ ବନ୍ଦ ହୋଇଗଲା । ସଙ୍କୋଚ ଓ ଭୟମିଶ୍ରିତ ଚକ୍ଷୁରେ ସେ ଅଖି ମଳି ମଳି କାନ୍ଦୁଥିଲା । ମୋତେ ଦେଖିବା ମାତ୍ରେ ସେ ଛଳଛଳ ଆଖିରେ ଏକଲୟରେ ମୋ'ଆଡ଼କୁ କାରୁଣ୍ୟ-ମିଶ୍ରିତ ଚାହାଣିରେ ଚାହିଁରହିଥିଲା । ସୋମାବଳି ଲୁଚିଯାଇଥିବା ସଞ୍ଜସଞ୍ଜିଆ ବେଳେ ମୁଁ ବେଶ୍ ଭଲଭାବରେ ତା'ର କରୁଣ ତଥା ବିଷଣ୍ଣଭରା ଗୋଲ ମୁହଁଟିକୁ ଭଲଭାବରେ ଦେଖିପାରିଲି । ମୁଁ ତା ପାଖକୁ ଆହୁରି ଲାଗିଯାଇ ପଚାରିଲି—"ତୁ କିଏ ? ଏ ସଞ୍ଜ ବେଳଟାରେ ଏଠି ଅନ୍ଧାରିଆ ବେଳେ ଛିଡ଼ାହୋଇ କାନ୍ଦୁଛୁ କାହିଁକି ?"

ତା'ର କନ୍‌କନ୍ ଛନ୍‌ଛନ୍ ଚାହାଣିରୁ ମୁଁ ବେଶ୍ ଅନୁମାନ କଲି ଯେ, ସେ ଭୟରେ ଜଡ଼ବଡ଼ ହୋଇ ମୋ' କଥାର ଉତ୍ତର ଠିକ୍ ଭାବରେ ଦେବାକୁ ସାହସ କରିପାରୁନି । ତେଣୁ ମୁଁ ତା' ପାଖକୁ ଆହୁରି ଲାଗିଯାଇ ପଚାରିଲି—"ଭୟ କରୁଛୁ କାହିଁକି ? ତୋ' ଘର କେଉଁଠି ?"

"ଝିଅଟି ମୁହଁରେ କିଛି ନକହି, କେବଳ ଆଙ୍ଗୁଠିର ଇସାରାରେ ଆମ କୋଠିର ଅଖ ପାଖରେ ଥିବା ଗୋଟିଏ ଗାଆଁ ଆଡ଼କୁ ଦେଖାଇଦେଲା । ମୁଁ ଠିକ୍ ଭାବରେ ବୁଝି ପାରିଲି —ସେ ଆମର ପ୍ରଜା । ତେଣୁ ଧୀରେ ପଚାରିଲି—"ହେଉ, ଏଥର କହିଲୁ, ଏଇ ସଞ୍ଜ ବେଳଟାରେ ଏ' ଝାଉଁବଣ ଭିତରେ ଛିଡ଼ା ହୋଇ ତୁ କାନ୍ଦୁଛୁ କାହିଁକି ?" ଖୁବ୍ ସମ୍ଭବତଃ ସେ ମୋ' କଥାରୁ ମମତା ଓ ସ୍ନେହର ଆଭାସ ପାଇପାରିଲା । ତେଣୁ ହଠାତ୍ ଧାଇଁ ଆସି ମୋ' ପାଦ ପାଖରେ କଚଡ଼ି ହୋଇ ପଡ଼ିଗଲା ।

"ଆରେ...ଏ' କ'ଣ କରୁଛୁ...ଏ କ'ଣ...ବୋଲି କହି ମୁଁ ତାକୁ ତଳୁ ଉଠାଇବାକୁ ଚେଷ୍ଟା କଲି । କିନ୍ତୁ ସେତେବେଳକୁ ସେ ଝିଅଟି ମୋ ପାଦ ଦୁଇଟିକୁ ଜାବୁଡ଼ିଧରି ସାରିଥିଲା । ମୁଁ ତାକୁ ତଳୁ କୌଣସିମତେ ଉଠାଇ ପାରିଲି ନାହିଁ । ସେ ତା'ର ଅଶ୍ରୁଧାରରେ ମୋ' ପାଦ ଦୁଇଟିକୁ ଭିଜାଇଦେଇଥିଲା ।

"ମୁଁ ତାକୁ କୌଣସିମତେ ଜୋର୍‌କରି ତଳୁ ଉଠାଇ ଆଣି ମୋ'ରି ପାଖରେ ଛିଡ଼ା କରାଇଦେଇ, ନରମ ଗଳାରେ ପଚାରିଲି—"ତୋ'ର କ'ଣ ଅସୁବିଧା ହୋଇଛି କହ ।

କେବଳ କାନ୍ଦିଲେ ତ ମୁଁ କିଛି ବୁଝିପାରିବିନାହିଁ । ତା’ ଦ୍ୱାରା ଫଳ ବା କ’ଣ ହେବ ? ତୋର ଦୁଃଖ କଣ ମତେ କହ ।” ଝିଅଟି ଧକେଇ ହୋଇ ତା’ ଅଖିରୁ ଲୁହ ପୋଛି, ମୋ’ ଆଡ଼କୁ ଅତି କରୁଣ ଭାବରେ ଚାହିଁ କହିଲା—“ମୋ’ ମାଆକୁ କୋଠିରେ ଅଟକକରି ରଖାଯାଇଛି···! ମେମ୍‌ସାହେବ !”

“ତୋ’···ମା···ଆ···କୁ ··? କିଏ ରଖିଛି ? କେଉଁଠି ରଖିଛି ??” ଏକାନ୍ତ୍ୟଶ୍ଚାପରେ ମୁଁ ତାକୁ ଏତିକ ପଚାରିଦେଲି । ଅବଶ୍ୟ ମୁଁ ଭଲଭାବରେ ଜାଣିଥିଲି ଯେ ନୀଳକୋଠିର ମାଲିକମାନେ ସେମାନଙ୍କ କୋଠିର ଗୋଷ୍ଟିଗୃହରେ ସ୍ତ୍ରୀ ଓ ପୁରୁଷମାନଙ୍କୁ ଅନେକ ସମୟରେ ଅଟକ ରଖି କାର୍ଯ୍ୟ ହାସଲ କରୁଥା’ନ୍ତି । ସେହି ଅବସରରେ ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ହୋଇଥାଏ । କିନ୍ତୁ ଆମ କୋଠିରେ ଏପରି ଦୁର୍ଘଟଣା କେବେହେଲେ ଘଟିନଥିଲା ।

ଝିଅଟି ଆ ଆ·· ମା···ମା···ହୋଇ କହିଲା—“ସେମ୍‌ସାହେବ, କାଲି ରାତିରେ ଫଲମନ୍ ସାହେବ ମୋ’ ମାଆକୁ ଆଣି ଏଇ କୋଠିରେ ରଖିଚନ୍ତି ।”

“ଅସମ୍ଭବ···! ଏ’ କୋଠିରେ ତୋ’ ମାଆ ଅଛି ? ତୁ ଭୁଲ କହୁନୁ ତ ?”

ଝିଅଟି ମୋ’ ମୁହଁକୁ ଛଳ ଛଳ ଅଖିରେ ଚାହିଁ କହିଲା—“ମୁଁ ମୋ’ ମାଆକୁ ଏଇଲାଗେ ଦେଖିଆସିଲି କୋଠିରେ ।”

“ଏଇ ଆମ କୋଠିରେ···? ଏଇଲେ ଦେଖିଆସିଲୁ ?” ମୁଁ ଦୃଢ଼ସ୍ୱରରେ ପୁଣି ଥରେ ତାକୁ ପ୍ରଶ୍ନକଲି । ମୁଁ ତା’ର କଥାକୁ ଆଦୌ ବିଶ୍ୱାସ କରିପାରିଲିନାହିଁ । ଝିଅଟି ଆଉ କିଛି ନକହି ନୀରବରେ ତଳକୁ ମୁହଁ ପୋତି ରହିଲା । ମୁଁ ତାକୁ ପୁଣିଥରେ ଧମକେଇଲା ପରି ପଚାରିଲି—“ଠିକ୍ କରି କହ ତୋ’ ମାଆକୁ ତୁ କେଉଁ ଘରେ ଦେଖିଛୁ ! ଆମ କୋଠିରେ ବାହାରର ଲୋକମାନଙ୍କୁ ରଖାଯାଏନାହିଁ ।”

ଝିଅଟି ନରମ ଗଳାରେ କହିଲା—“ମେମ୍‌ସାହେବ, ସେଇ ବଡ଼ଘରେ ମୋ ମା’ ନାହିଁ—ହେଇ ସେ ଘରେ ରହିଛି ।” ସେ ଅଙ୍ଗୁଳିରେ ବଗିଚା ପାଖରେ ଥିବା ଘୋଡ଼ାଶାଳ ନିକଟରେ ନୀଳ ରଖାଯାଉଥିବା ଗୋଟିଏ ଗୋଦାମ ଘର ଆଡ଼କୁ ଦେଖାଇଲା ।

ରାଗରେ ମୋ’ ମୁଣ୍ଡକୁ ପିତ୍ତ ଉଠିଗଲା । ଘୃଣା ଓ ଆତ୍ମଗ୍ଲାନିରେ ମୁଁ ଏକାବେଳକେ ଅଣାୟତ୍ତ ହୋଇଉଠିଲି । ମୁଁ ରାଗ ତମତମ ହୋଇ ସେ ଝିଅଟିକୁ ଧରି ଅଗେଇଚଲି ସେଇ ଘରଆଡ଼କୁ । ମୁଁ ସେ ଘର ପାଖରେ ପହଞ୍ଚିବା ମାତ୍ରେ ଲକ୍ଷ୍ୟକଲି ଯେ ଗୋଟିଏ ଗ୍ରାମ୍ୟମୂର୍ତ୍ତି ସେଠାରୁ ଦୂରେଇଯାଉଛି । ମୁଁ ଚଡ଼ାଗଳାରେ ସେହି ଲୋକଟାକୁ କହିଲି—“କିଏ···? କିଏ ତୁ ? ଛିଡ଼ା ହୁଅ···”

ଲୋକଟି ଟିକିଏ ଆଗେଇଯାଇ ସେଇଠି କାଠପିତୁଳାଟାଏ ପରି ଛିଡ଼ାହୋଇ ରହିଲା । ମୁଁ ତା’ ପାଖକୁ ଯାଇ ଦେଖିଲି ଯେ ସେ ଲୋକଟା ଆମ କୋଠିର ଜଣେ ପିଅନ । ମୁଁ ଅତ୍ୟନ୍ତ ରୁକ୍ଷ ସ୍ୱରରେ ତାକୁ କହିଲି—“ତୁ ଏ’ଠି କ’ଣ କରୁଛୁ ?”

“ନା···ନା···କିଛିନା···ମେମ୍‌ସାହେବ !” ଲୋକଟାର ପାଟି ଖନ୍‌ମାରିଗଲା ।

ମୁଁ ଆହୁରି ରାଗିଯାଇ କହିଲି—"ମୋ ଆଗରେ ମିଛ କହି ପାର ପାଇଯିବୁନାହିଁ । ସତକଥା କହ···ତୁ ଏ'ଠି କ'ଣ କରୁଥିଲୁ ?"

ମୁଁ ଲକ୍ଷ୍ୟକରି ଦେଖିଲି—ଲୋକଟା ଏକାବେଳକେ ଥରଥର ହୋଇ କମ୍ପୁଛି । ସେ ନିତାନ୍ତ ଅଶଲ ସ୍ୱରରେ କହିଲା—"···ଏ'ଠି ପହରା ଦବାକୁ ମୋତେ ସାହେବ ହୁକୁମ୍ କରିଛନ୍ତି··· ମୋର···"

ମୁଁ ଜୋର୍‌ରେ ପାଟିକରି କହିଲି—"ଖୋଲ ସେ ଦୁଆର···"

ଲୋକଟା ନିତାନ୍ତ ଭୀତତ୍ରସ୍ତ ଭାବରେ ମୋ' ଆଡ଼କୁ କଣେଇ କଣେଇ ଚାହିଁ, ଧୀରେ ଧୀରେ ଆସି ଦ୍ୱାରଟି ଖୋଲିଦେଇ, ଦି'ହାତ ଯୋଡ଼ି ମୋ' ଆଗରେ ନିତାନ୍ତ ନମ୍ରଭାବରେ କହିଲା—"ମେମ୍‌ସାହେବ୍ ! ମୋର କିଛି ଦୋଷ ନାହିଁ । ସାହେବଙ୍କ ହୁକୁମ ମାନି ମୁଁ ଏ'ଠି ପହରା ଦେଉଥିଲି ।"

ମୁଁ କ୍ଷଣକ ମଧ୍ୟରେ ସବୁକିଛି ଅନୁମାନ କରିନେଲି । ସେ ଲୋକଟା ଉପରେ ମୁଁ ଆଉ ନ ରାଗି କହିଲି—"ବତିଟାଏ ଲଗା···"

ଲୋକଟି କେଉଁଠି ସାଇତି ରଖିଥିବା ଅଧା ମହମବତିଟିଏ ଜଳାଇଦେଲା । ସେତେବେଳକୁ ରାତ୍ରିର ଅନ୍ଧକାର ବେଶ୍ ଘନେଇ ଆସିଥିଲା । ଆଲୁଅ ଜଳିବା ମାତ୍ରେ ମୁଁ ଘରର ଚାରିଆଡ଼େ ଆଖି ବୁଲେଇନେଲି । ମୋ' ଆଖିରେ ପଡ଼ିଗଲା---ଘରର ଗୋଟିଏ କୋଣରେ ସ୍ତ୍ରୀଲୋକଟିଏ ଲାଜରେ ଜଡ଼ସଡ଼ ହୋଇ ଜାକିଜୁକି, ପ୍ରାୟ ମୂର୍ଚ୍ଛିତ ଅବସ୍ଥାରେ କାନ୍ଥକୁ ଆଉଜି ବସିରହିଛି । ମୁଁ ତା' ଆଡ଼କୁ ଆଗେଇଯିବା ମାତ୍ରେ ସେ ଭୟ, ଅପମାନ ଓ ଲଜ୍ଜାରେ ଚିତ୍କାର କରିଉଠିଲା । ମନେହେଲା ସତେ ଯେପରି ସେ ବାହ୍ୟଜ୍ଞାନ ହରାଇ ବସିଛି । ସତରେ ମେରି, ସେ ସ୍ତ୍ରୀଲୋକଟି ଆଡ଼କୁ ମୁଁ ସାହସ କରି ଚାହିଁପାରିଲିନାହିଁ । ମୁଁ ହଠାତ୍ ପଛକୁ ଫେରିପଡ଼ି ସେ ପିଅନଟାକୁ ପଚାରିଲି—"ମେନେଜର୍ ସାହେବ କେତେବେଳେ ଆସିଥିଲେ ଏଠିକି ? ସତ ସତ କଥା କହ···"

ଲୋକଟି ପୂର୍ବପରି ସେଇଠି ଠିଆହୋଇ ଗୋଟିପଣେ ଥରୁଥିଲା । ସେ ଅତି ଅଳ୍ପ କହିଲା —"ମେମ୍‌ସାହେବ, ଟିକିଏ ଆଗରୁ···"

ତା' ପାଟିରୁ କମ୍ପିତ ଉତ୍ତର ଶୁଣି ମୁଁ ଖିଙ୍କାରି ହେଲାପରି ତାକୁ କହିଲି—"ଯା··· ତୁ ଏ'ଠୁ ଚାଲି ଯା······"

ଲୋକଟା ମୋ' ଆଦେଶ ପାଇବା ମାତ୍ରେ ଯାହା ପାଇଗଲା ପରି ସେଠାରୁ ପଳାଇଗଲା ।

ଝିଅଟି ଆଗରୁ ତା' ମାଆକୁ ବୋଧହୁଏ ସେଇ କିଟିମିଟିଆ ଅନ୍ଧାର ଭିତରେ ଦେଖିଥିଲା; ଏଥର ଆଲୁଅରେ ତା' ମାଆର ଅବସ୍ଥା ଦେଖି ସେ ବଡ଼ ବଡ଼ ଆଖିରେ, କିଛି ନ ଜାଣିଲା ପରି ବଲବଲ କରି ଚାହିଁରହିଲା । ମୁଁ ବେଶ୍ ଅନୁମାନ କରିନେଲି—ଝିଅଟି ତା' ମାଆର ଅବସ୍ଥା ଦେଖି ଝାମମରା ହୋଇଯାଇଛି । ମୁଁ ତା'ର ନିତାନ୍ତ ଅସହାୟ ଅବସ୍ଥା ଦେଖି ତାକୁ କଅଁଳେଇ କରି କହିଲି—"ଆଲୁଅଟା ଟେକି ଧରିଲୁ ।"

ଝିଅଟି ଆଗେଇଆସି ମହମବତିଟିକୁ ତା' ମାଆର ମୁହଁ ପାଖରେ ଟେକି ଧରିଲା । ମୁଁ ସେ ସ୍ତ୍ରୀଲୋକଟିର ପାଖକୁ ଅଗେଇ ଯାଇ ଦେଖିଲି—ସେ ଗୋଟିଏ ଦରିଦ୍ର ପରିବାରର ବିବାହିତା ନାରୀ । ସେ ଥିଲା ବେଶ୍ ସୁସ୍ଥ୍ୟବତୀ । ଯଉବନରେ ମେଷ, ତା'ପରି ସୁନ୍ଦରୀ ସ୍ତ୍ରୀଲୋକଟିଏ କୌଣସି ଗରିବ ଘରେ ମୁଁ ସେତେବେଳ ଯାଏଁ ଦେଖିନଥିଲି । ମୁଁ ତା' ଆଡ଼କୁ ଆଉ ଟିକଏ ଆଗେଇ ଯିବାମାତେ ସେ ଅତିକ୍ତି ଚକ୍କାର କରି ଗଛ କାଟିଲା ପରି ମୋର ପାଦ ପାଖରେ ପଡ଼ିଯାଇ କହିଲା—"ମୋତେ ମାରନାଅ ସାହେବ, ମୋତେ ମାରନାଅ । ଏ' ପୋଡ଼ାମୁହଁ ନେଇ ମୁଁ ବଞ୍ଚିବାକୁ ଚାହେଁନା । ମୋତେ ମା···ର···ନା···ଅ ! ମାର··· ନାଅ···!!

ତା'ପରେ ବୁକୁ ଫଟାଇ ସେ କାନ୍ଦିଉଠିଲା । ମାଆର କାନ୍ଦଣାରେ ଖରିଙ୍ଗପନ୍ତି, ମୋ' ପାଖରେ ଛିଡ଼ାହୋଇଥିବା ତାର ଝିଅଟି ମଧ୍ୟ କହିକହିଁ ହୋଇ କାନ୍ଦିବାକୁ ଲାଗିଲା । ମୁଁ ସ୍ତ୍ରୀଲୋକଟିର ପାଖକୁ ଲାଗିଯାଇ କହିଲି—"ମୋତେ ଚାହିଁଲ, ମୁଁ ତୁମକୁ ଏଠାରୁ ନେଇଯିବାକୁ ଆସିଛୁ । ଆଉ ମଧ୍ୟ ଦେଖ, ତୁମ ଝିଅ ମଧ୍ୟ ଆସିଛୁ ।"

ମୋ' କଥା ଶୁଣି ପ୍ରଥମେ ମୋ' ଆଡ଼କୁ ନିତାନ୍ତ ସନ୍ଦେହ ଦୃଷ୍ଟିରେ ମହିଳାଟି ଚାହିଁଲା । ମୁଁ ସ୍ପଷ୍ଟ ଭାବରେ ଲକ୍ଷ୍ୟ କରି ଦେଖିଲି, ସ୍ତ୍ରୀଲୋକଟିର ଆଖି ଦୁଇଟି କାନ୍ଦି କାନ୍ଦି ସିନ୍ଦୂର ଗୁଣ୍ଡି ପରି ଲାଲ ହୋଇଯାଇଛୁ । ସେ ଏକାଲୟରେ ମୋ' ଆଡ଼କୁ କିଛି ସମୟ ଚାହିଁବା ପରେ ସେ ତା' ଝିଅ ଆଡ଼କୁ ଅତ୍ୟନ୍ତ କରୁଣ ଚାହାଣିରେ ଚାହିଁରହିଲା । ତା' ପରେ ତା' ଆଖିରୁ ଝରିପଡ଼ିଲା ଲୁହର ଧାର ।

ମୁଁ ତା ପାଖକୁ ଆହୁରି ଘୁଞ୍ଚିଯାଇ, ତା' ମୁଣ୍ଡରେ ହାତ ରଖିବାମାତେ, ସେ ମୋ' ପାଦ ଉପରେ ତା'ର ମୁଣ୍ଡ ରଖି ଭୋ' ଭୋ' କରି କାନ୍ଦିବାକୁ ଲାଗିଲା । ମୁଁ ତାକୁ ଅନେକ ବୁଝାସୁଝା କରି କୌଣସିମତେ ଜୋର୍‌କରି ତଳୁ ଉଠାଇ, ଧୀରେ ଧୀରେ ତାକୁ ଏକାବେଳକେ କୁଣ୍ଡାଇଧରି ଆମ କୋଠି ଆଡ଼କୁ ଆଗେଇବାକୁ ଲାଗିଲି । ସେ ପ୍ରାୟ ଟଳଟଳ ହୋଇ ମୋ' ଉପରେ ଭରା ଦେଇ ଚାଲିଆସିଲା ମୋ' ଶୋଇବା ଘରକୁ ।

ତା'ପରେ ମୁଁ ତା'ର ଅନେକ ସେବା ଶୁଶ୍ରୂଷା କରି ତାକୁ ସୁସ୍ଥକରିଦେଲି । ସେ ସମ୍ପୂର୍ଣ୍ଣ ଭାବରେ ସୁସ୍ଥ ହେବାମାତେ, ତା' ଝିଅଟିକୁ ଗ୍ରୀବରେ ଭିଡ଼ି ଧରି ଅନେକ ବେଳ ଯାଏଁ କାନ୍ଦିବାକୁ ଲାଗିଲା । ତା'ପରେ ମୁଁ ତାକୁ ଅନେକ ସମୟ ପର୍ଯ୍ୟନ୍ତ ବୁଝାଇବା ପରେ, ସେ ତା'ର ଦୁଃଖର କାହାଣୀ କାନ୍ଦି କାନ୍ଦି ମୋ' ଆଗରେ କହିଲା । ସେଥିରୁ ମୁଁ ଜାଣିଲି —କେତେଦିନ ତଳେ ସେ ତା' ବାପଘର 'କଲମଦାନ' ଗାଆଁକୁ ଆସିଥିଲା—ସ୍ୱାମୀଘର ଠାରୁ । ତା' ଶ୍ୱଶୁରଘର ସେ ଗାଆଁଠାରୁ ଆଉ କେତୋଟି ଗାଆଁ ପରେ ଫର୍ଗୁସନ୍ ସାହେବର ଇଲାକାରେ ଥିଲା । ତା' ସ୍ୱାମୀ ମାଳଗୁଜ କରୁଥିଲା । ଦିନେ ଫର୍ଗୁସନ୍ ଡକାଇ ଆଣି ତା' ହାତରେ ଅନେକ ଟଙ୍କା ଦେଇ ତାକୁ ସାହାଯ୍ୟ କଲା । କିନ୍ତୁ ସେ ସ୍ତ୍ରୀଲୋକଟି ସେଥିରେ ଆଦୌ ଖୁସି ହେଲାନାହିଁ । ସେ ମନେ ମନେ ଅନେକ ପ୍ରକାର ଆଶଙ୍କା କଲା ।

ଶେଷକୁ ସେ ଯାହା ଭାବିଥିଲା ତାହାହିଁ ଘଟିଲା । ଦିନେ ସକାଳେ ତା' ସ୍ୱାମୀ କାମକୁ ବାହାରିଯିବା ମାତ୍ରେ ଫର୍ଗୁସନ୍‌ର ଗୋଟିଏ ଲୋକ ଲୁଗାପଟା, ଖାଇବା ଜିନିଷ ତଥା ଆହୁରି କେତେ କ'ଣ ଜିନିଷ ଧରି ଆସି ତା' ଘରେ ହାଜର ହୋଇଗଲା । କେତେଦିନ ଧରି ତା' ଘରକୁ ସେଇମିତି କେତେ ପ୍ରକାର ଜିନିଷ ବୁହା ଚାଲିଲା । ଦିନେ ସେ ଲୋକଟି ତାକୁ ଫର୍ଗୁସନ୍‌ଙ୍କ ଖାସ୍ କାମରାକୁ ଯିବା ଲାଗି ତାଗିଦ୍ କରିଦେଲା ଏବଂ ସେଦିନ ସନ୍ଧ୍ୟା ବେଳକୁ ତା' ପାଖରେ ସବାରି ପଠାଇବ ବୋଲି ଯେ କହିଗଲା ।

ସେ ଲୋକଟା ଚାଲିଯିବା ପରେ ସ୍ତ୍ରୀଲୋକଟି ତା' ଝିଅଟିକୁ ଧରି ବାପଘରକୁ ପଳାଇ ଆସିଲା—ଅତି ଗୋପନରେ । ଯେହେତୁ ତା' ବାପଘର ଥିଲା ଆମ ଇଲାକାରେ, ତେଣୁ ସେ ସାହସ କରି ପଳାଇଆସିଥିଲା । ତା'ପରେ ଯେ ଆଖିରୁ ଲୁହର ବନ୍ୟା ଛୁଟାଇ କହିଲା—"ମୁଁ ଜାଣିଥିଲି ଯେ ଓଡ଼େନ୍ ସାହେବଙ୍କ ଇଲାକାରେ ଝିଅ ବୋହୂଙ୍କ ଉପରେ ଅତ୍ୟାଚାର ହୁଏ ନାହିଁ, ତେଣୁ ଶାଶୁଘର ଛାଡ଼ି ବାପଘରକୁ ପଳାଇ ଆସି ବେଶ୍ କିଛିଦିନ ନିରାପଦରେ ଥିଲି । କିନ୍ତୁ କିଛିଦିନ ପରେ ମୋର ସେ ଭୁଲଧାରଣା ଦୂରହୋଇଗଲା । ସବୁ ଚୂଲି ମୁହଁ ପଶ୍ଚିମକୁ ମେମ୍ ସାହେବ ! ସବୁ ବାଘଙ୍କୁ ମଣିଷ ମାଉଁସ ସୁଆଦିଆ ଲାଗେ ।

"ଆପଣଙ୍କର ଏଇ ବଗିଚାରେ ପିଲାଦିନେ କେତେ ଖେଳାବୁଲା କରିଛୁ । ଦିନେ-ହେଲେ କେହି ଆମ ଆଡ଼କୁ ଆଡ଼ଆଖିରେ ଚାହିଁନଥିଲେ । ସେତେବେଳେ ଏ ଇଲାକାରେ ଡରଭୟ ନଥିଲା । ବାଘଛେଳି ଗୋଟିଏ ଘାଟରେ ପାଣି ପିଉଥିଲେ ।" କିଛି ସମୟ ନୀରବ ରହିବା ପରେ ପୁଣି କହିଲା ସ୍ତ୍ରୀଲୋକଟି—"ମେମ୍ ସାହେବ, ଦିନକର ଘଟଣା କହୁଛି ଶୁଣନ୍ତୁ । ସେଦିନର ଘଟଣା ଏବେ ସୁଦ୍ଧା ମୁଁ ଭୁଲିପାରିନି । ଦିନେ ଆମେ ଗାଁର କେଇ-ଜଣ ପୁଅଝିଅ ମିଶି ଆସିଥିଲୁ ଆପଣଙ୍କର ଏଇ ପଲାଶ ବଗିଚାକୁ ଫୁଲ ତୋଳିବା ପାଇଁ । ଉପର-ଓଳି ଆମେ ଯେତେ ଫୁଲ ତୋଳିଛୁ ତା' ଅପେକ୍ଷା ବେଶି ଡାଳ ଭାଙ୍ଗିଛୁ । ପୁଅମାନେ ଗଛ ଉପରେ ଚଢ଼ିଥିଲେ—ଆଉ ଆମେ ଝିଅମାନେ ତଳେ ଛିଡ଼ା ହୋଇ ଫୁଲ ଗୋଟାଉ-ଥିଲୁ । ଏତିକିବେଳେ କୋଠିର ଦରୁଆନ୍‌ଟା ହାତରେ ମଣିଷେ ଉଞ୍ଚର ବାଡ଼ିଟାଏ ଧରି ଛୁଟିଆସିଲା ଆମ ଆଡ଼କୁ । ମାର୍ ମାର୍ ଧର୍ ଧର୍ ଡାକଦେଇ ସେ ଧାଇଁଆସିଲା । ଆମେ ଝିଅଗୁଡ଼ାକ ହୁଏତ ଧାଇଁ ପଳାଇଯାଇପାରିଥାଆନ୍ତୁ; କିନ୍ତୁ ଗଛ ଉପରେ ଥିଲେ ପୁଅପିଲା-ଗୁଡ଼ିକ । ସେମାନଙ୍କୁ ଛାଡ଼ିଦେଇ ପଳାଇଥା'ନ୍ତୁ କିପରି ? ଆମେ ସେଇଠି ଛିଡ଼ା ହୋଇ ଭେଁ···ଭେଁ କରି କାନ୍ଦିବାକୁ ଲାଗିଲୁ ।

ହଠାତ୍ ଆମ ଆଖି ପଡ଼ିଗଲା—ଆମରି ଆଡ଼କୁ ଘୋଡ଼ାରେ ବସି ବଡ଼ସାହେବ ଛୁଟି ଆସୁଛନ୍ତି; ଆଉ ତାଙ୍କ ପଛରେ ଆଉ ଗୋଟିଏ ଘୋଡ଼ାପିଠିରେ ଥିଲେ ଆପଣଙ୍କ ମାଆ । ବୋଧହୁଏ ସେ ଦୁହେଁ ବେଳବୁଡ଼େ ନଈଆଡ଼େ ବୁଲିଯାଇଥିଲେ । ସେ ଦୁହେଁ ଆମ ଆଡ଼କୁ ଘୋଡ଼ାଛୁଟାଇ ଆସିବାରୁ ଆମେ ଭାବିଲୁ ଆଉ ରକ୍ଷାନାହିଁ । ସାହେବ ଆମକୁ ବାନ୍ଧିକରି କୋଠିକୁ ନେଇଯିବେ । ତେଣୁ ଆମେ କୋଡ଼ିକରୁଡ଼ି ହୋଇ କାନ୍ଦିବାକୁ ଲାଗିଲୁ ।

''ସାହେବଙ୍କୁ ଦେଖିପକାଇ ଦରୁଆନ୍‌ଟା ଆହୁରି ଜୋର୍‌ରେ ପାଟିକରି ଆମକୁ ଧମକେଇବାକୁ ଲାଗିଲା । ତା' ଧମକାଣିରେ ଆମ ଶୁଖି ପାଣି ହୋଇଗଲା । କିନ୍ତୁ ସତ କହୁଛି ମେମ୍‌ସାହେବ୍‌, ଆପଣଙ୍କ ବାପା ଘୋଡ଼ାରୁ ଓହ୍ଲେଇପଡ଼ି କନାକଣା ନକରିବାକୁ ଆମକୁ ନରମଗଳାରେ ବାରଣ କଲେ ଏବଂ ସୁଅମାନଙ୍କୁ ଗଛଉପରୁ ଓହ୍ଲାଇ ଆସିବା ଲାଗି କହିଲେ । ସୁଅପିଲା କେଇଟା ପ୍ରାଣଭୟରେ ଅରମର ଗଛରୁ ଓହ୍ଲାଇ ଆସିଲେ । ତା'ପରେ ଆମେ ମନେ ମନେ ଭାବିଲୁ ଏଥର ସାହେବ ଆମ ସମସ୍ତଙ୍କୁ ଏକାସାଙ୍ଗରେ ବାନ୍ଧି କୋଠିକି ଦରୁଆନ୍ ହାତରେ ପଠାଇଦେବେ । କିନ୍ତୁ ମେମ୍‌ସାହେବ, ସାହେବଙ୍କ ବ୍ୟବହାରରେ ଆମେ ଆଶ୍ଚର୍ଯ୍ୟ ହୋଇଗଲୁ । ସାହେବ ଦରୁଆନ୍‌ଟିକୁ ଗଛରେ ଚଢ଼ି ଫୁଲ ତୋଳିବାକୁ କହିଲେ । ସେ ଭିତରୁ କ'ଣ କରିବ—ତା' ପାଞ୍ଚହାତିଆ ଲଠିଟାକୁ ସେଇଠି ତଳେ ଥୋଇଦେଇ ପ୍ରାଣପଣେ କସରତ୍ କରି ଗଛକୁ ଚଢ଼ିଲା । ଗଛକୁ ଚଢ଼ିବା ତା'ର ଅଭ୍ୟାସ ନଥିଲା । କାଳେ ସାହେବ ତାକୁ ଅପଦାର୍ଥ ବୋଲି ଭାବିବେ, ତେଣୁ ସେ ମରିପଡ଼ି, ଅଣ୍ଟୁ ଗଣ୍ଠି ଛିଣ୍ଡାଇ ଗଛଉପରକୁ ଉଠି ଫୁଲ ଛିଣ୍ଡାଇ ତଳକୁ ପକାଇଲା । ସେତେବେଳକୁ ଆମର ସାହସ ହୋଇସାରିଥିଲା । ତେଣୁ ଆମେ ଧାଇଁଧୂଇଁ ଦେଇ ଫୁଲ ଗୋଟେଇବାକୁ ଲାଗିଲୁ । ଆପଣଙ୍କ ମାଆ ହସି ହସି ଘୋଡ଼ାରୁ ଓହ୍ଲାଇପଡ଼ି ଆମ ସାଥିରେ ଫୁଲ ଗୋଟାଇ-ବାକୁ ଲାଗିଲେ । ଆମେ ଯେମିତି ଧାଁ-ଧଉଡ଼ କରି ଫୁଲ ତୋଳୁଥିଲୁ, ଆପଣଙ୍କ ମାଆ ମଧ୍ୟ ସେଇମିତି ହସଖେଳରେ ମାତି ଫୁଲ ଗୋଟାଇବାକୁ ଲାଗିଲେ । ଶେଷକୁ ସେ ମେଣ୍ଟାଏ ହେବ ଫୁଲ ମୋ'ର ହାତରେ ଧରାଇଦେଇ ମୋତେ କହିଲେ—''ରୋଜ୍ ତୁମେମାନେ ଆସି ଏଇଠି ଖେଳକୁଦ ଫୁଲ ତୋଳିବ ।'' ସେ ଦରୁଆନ୍ ଆଡ଼କୁ ଚାହିଁ କହିଲେ—''ଆଜିଠାରୁ ଆଉ ତୁମମାନଙ୍କୁ କେହି କିଛି କହିବେ ନାହିଁ ।''

ସେଇଦିନଠାରୁ ଆମେ ରୋଜ୍ ଉପରବେଳା ଆସି ସେଇଠି, ସେଇ ପଳାଶବଣରେ ଖେଳକୁଦ ମନର ଓଉମାନ୍ ମେଣ୍ଟାଇଲୁ । ଆମେ ଦିନେ ଦିନେ ସେଇ ଦରୁଆନ୍‌ଟିକୁ ଆମ ଆଡ଼କୁ ଚାହିଁଥିବାର ଦେଖୁଁ; କିନ୍ତୁ ସେ ଆମକୁ ଦିନେହେଲେ ଆଉ ମୁହଁ ଖୋଲି କିମ୍ବା ଆମ ପାଖକୁ ଭୁଲରେ ସୁଦ୍ଧା ଆସିନି । ହୁଏତ ତା'ର ଭୟଥିବ—କାଳେ ପୁଣି ତାକୁ ଗଛ ଚଢ଼ିବାକୁ ପଡ଼ିବ ।''

ସ୍ତ୍ରୀଲୋକଟି ସେତିକି କହି ଚୁପ ହୋଇଗଲା । ସେତେବେଳକୁ ମୋ' ଆଖିରୁ ଲୁହର ଧାର ଝରିପଡ଼ୁଥିଲା; କାରଣ ତା' କଥା ଶୁଣି ମୋ'ର ମାନସପଟଳରେ ଭାସିଉଠିଥିଲା ମୋ' ମାଆଙ୍କର କମନୀୟ ମୂର୍ତ୍ତି ଏବଂ ଆଖିଆଗରେ ନାଚିଉଠିଲା—ମାଆର ଫୁଲ ଗୋଟାଇବା ଦୃଶ୍ୟ ସାକାର ହୋଇ ।

ତା'ପରେ ସେ ସ୍ତ୍ରୀଲୋକଟି ତା' ଝାଉଁଳା ମୁହଁରେ ଭଦ୍ର ପରି ହସ ଖେଳାଇ କହିଲା—ମେମ୍ ସାହେବ, ସେଇ ଓଡ଼େନ୍ ସାହେବଙ୍କ କୋଠିରେ ମୋତେ ବନ୍ଦୀ ହୋଇ ମାନମହତ ହରେଇବାକୁ ପଡ଼ିଲା । ମୁଁ ଆଉ ବେଶି ଦିନ ଫଲ୍‌ମନ୍ ସାହେବର ନଜରରୁ ନିଜକୁ ଲୁଚାଇ

ପାରିଲିନି । ଗାଆଁ ମୁଣ୍ଡ ପୋଖରୀରୁ ପଦ୍ମ ତୋଳିବାକୁ ଯାଇ ମୋର ଏ ଦଶା ହେଲା । ସେଇ ପଦ୍ମଫୁଲର ପଙ୍କ ମୋର କାଳ ହେଲା । ଆପଣଙ୍କ କୋଠିର ଲଠିଆଳମାନେ ମୋ' ପାଟିରେ ଲୁଗା ଗୁଞ୍ଜି ଦେଇ ମୋତେ ଟେକିଆଣିଲେ ଗୋଟେ ସବାରିରେ ବସାଇ । ଝିଅଟି ମୋର ସେଇ ପାଖରେ ଛିଡ଼ାହୋଇ ସବୁ ଦେଖୁଥିଲା—ତେଣୁ ସେ ଆପଣଙ୍କୁ ଖବର ଦେଇପାରିଲା ତା'ର ଏଇ ହତଭାଗିନୀ ମାଆଟିର ଦୁର୍ଦ୍ଦଶା ବିଷୟରେ । ମେମ୍‌ସାହେବ, ଆଜି ଟିକିଏ ଆଗରୁ ଆପଣ ଆସିଥିଲେ ହୁଏତ ଫଲ୍‌ମନ୍‌ ସାହେବର ହାତରୁ ମୋ ମାନଇଜ୍ଜତ ବଞ୍ଚେଇପାରିଥାଆନ୍ତେ..." ଏତିକି କହି ସେ ସ୍ତ୍ରୀଲୋକଟି ବୁକୁ ଫଟାଇ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା । ମୁଁ ଯେତେ ପ୍ରକାରେ ବୁଝାଇଲେ ବି ସେ ଆଦୌ ବୁଝିଲା ନାହିଁ । ଶେଷରେ ମୁଁ ତାକୁ ଅନେକ ଚେଷ୍ଟା କରି ଆଶ୍ୱସ୍ତ କରାଇଲି । ତା'ପରେ ମୁଁ ତାକୁ କହିଲି—"ତୋର ଉପାୟ ବା କ'ଣ ? ତୋର ସୁନ୍ଦର ଚେହେରା ହେଉଛି ତୋର କାଳ ।"

ସେ ସେହିପରି ଧକେଇ ହୋଇ କହିଲା—"ମେମ୍‌ସାହେବ, ଯଦି ବିଧାତା ମୋତେ ଏ ନିଆଁ ଲଗା ରୂପ ଦେଲା, ତେବେ ବଡ଼ଘରେ ଜନମ ଦେଲା ନାହିଁ କାହିଁକି ?"

ମୁଁ ହସି ହସି ତାକୁ କହିଲି—"ତୁ ପଦ୍ମ ତୋଳିବାକୁ ଯାଇ ଏତେସବ ହୋଇଛୁ ତ—ସେଇଥିରୁ କିଛି ହେଲେ ବୁଝିପାରିଲୁ ନାହିଁ ? ପଦ୍ମ ପଙ୍କରୁ ଜାତ ହୋଇ ସବୁବେଳେ ବଡ଼-ଲୋକଙ୍କ କାମରେ ଲାଗେ । ବଡ଼ଲୋକମାନେ ସେଇ ପଦ୍ମକୁ ତୋଳିନେଇ ନିଜର ପୂଜା ଓ ଉତ୍ସବରେ ଲଗାଇଥାଆନ୍ତି ।"

ସେ ଆଉ କିଛି ଉତ୍ତର ନଦେଇ ନିରବ ରହିଲା । ତା'ପରେ ମୁଁ ତାକୁ ବୁଝାଇ କହିଲି—ଛାଡ଼ ସେ କଥା । ଏବେ ତୁ କ'ଣ ଚାହୁଁଛୁ କହ ! ମୁଁ ତୋତେ ସବୁପ୍ରକାର ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛି । ତୁ ଯଦି ତୋ' ବାପା ପାଖକୁ ଫେରିଯିବାକୁ ଚାହୁଁଛୁ ତେବେ ତୋ' ବାପାକୁ ଡକାଇ ତୋତେ ପଠାଇଦେବି । ନୋହିଲେ ଯଦି ଚାହିଁବୁ ଏଠାରେ ମୋ' ପାଖରେ ଯେତେ ଦିନ ତୋର ଇଚ୍ଛା ତୁ ରହିପାରିବୁ ।"

ସେ ସ୍ତ୍ରୀଲୋକଟି ମୁଣ୍ଡ ତଳକୁ କରି ଅନେକ ସମୟ ପର୍ଯ୍ୟନ୍ତ ଭାବିବାକୁ ଲାଗିଲା । ତା'ପରେ ସେ କହିଲା—"ମେମ୍‌ସାହେବ, ମୁଁ ମୋ ସ୍ୱାମୀଙ୍କ ପାଖକୁ ଫେରିଯିବି ।"

ମୁଁ ତା' ଉତ୍ତରରେ ଆଶ୍ଚର୍ଯ୍ୟ ହୋଇ ପଚାରିଲି—"ପୁଣି ସେଇ ସ୍ୱାମୀଙ୍କ ପାଖକୁ ? ସେଇ ଫର୍ଗୁସନ୍‌ ସାହେବର ଇଲାକାକୁ ?"

ସେ ତା' ମୁଖମଣ୍ଡଳରେ ମ୍ଳାନ ହସଟିଏ ଖେଳାଇ କହିଲା—"ମେମ୍‌ସାହେବ, ନାରୀର ମାନମହତ ଯେତେବେଳେ କେଉଁଠି ହେଲେ ରକ୍ଷା ପାଇବାର ସମ୍ଭାବନା ନାହିଁ, ସେତେବେଳେ ସ୍ୱାମୀ ପାଖରେ ରହିବା ବରଂ ଭଲ । ମାନ ଇଜ୍ଜତର ସୁରକ୍ଷା ଲାଗି ସ୍ୱାମୀକୁ ତ୍ୟାଗ କରାଯାଇପାରେ; କିନ୍ତୁ ସ୍ୱାମୀକୁ ଛାଡ଼ି ଆସି ମାନମର୍ଯ୍ୟାଦା ହରାଇ ବସିବା କ'ଣ ଠିକ୍ ?

ତା'ପରେ ମୁଁ ତାକୁ କହିଲି—"ଦେଖ, ତୋ'ର ଯୁଆଡ଼େ ଇଚ୍ଛା ସେଆଡ଼େ ଯାଅ,

ମୋର ଆପତ୍ତି ନାହିଁ—କିନ୍ତୁ ମନେରଖ, ଆଜି କେବେହେଲେ ଆମ ଇଲାକା ଭିତରେ ତୋ' ଦେହରେ କେହି ଟିପ ବି ଛୁଇଁପାରିବେନାହିଁ । ଏପରି ସାହସ କରିବା ତ ଦୂରର କଥା, କେହି ଆଉ ସେବେହେଲେ ତୋ' ଆଡ଼କୁ ଖରାପ ନଜରରେ ବି ଚାହିଁପାରିବେନାହିଁ ।"

ମୁଁ ତାର ବୁଢ଼ାବାପାକୁ ଡକାଇପଠାଇଲି । ସେ ତା' ଝିଅକୁ ଦେଖି ଖୁବ୍ କନ୍ଦାକଟା କଲା; କିନ୍ତୁ ତାକୁ ଘରକୁ ନେବାପାଇଁ ଆଦୌ ରାଜି ହେଲାନାହିଁ । ସେ ସ୍ତ୍ରୀଲୋକଟିର ଇଚ୍ଛା ଅନୁସାରେ ମୁଁ ତା' ସାଥିରେ ଦୁଇଜଣ ଲୋକ ଦେଇ ତାକୁ ତା' ସ୍ୱାମୀ ପାଖକୁ ପଠାଇ ଦେଲି ।"

ଆନା କିଛି ସମୟ ନୀରବ ରହିବା ପରେ କହିଲା—"ଏଠିକିରେ ସେ ଘଟଣାଟିର ପୂର୍ଣ୍ଣଚ୍ଛେଦ ପଡ଼ିଲା ନାହିଁ । ତା'ର ଅନେକଦିନ ପରେ, ମୁଁ ଦିନେ ଉପରଓଳି ଘୋଡ଼ାରେ ବସି ସେଇ ପଳାଶବଣ ପାଖ ଦେଇ ବୁଲି ବୁଲି ଫେରୁଛି, ହଠାତ୍ ମୋର ଦୃଷ୍ଟି ପଡ଼ିଗଲା ଗୋଟିଏ ଅନ୍ଧୁଣୀ ଭିକାରୁଣୀ ଉପରେ । ସେ ଗୋଟିଏ ବାର ତେରବର୍ଷ ବୟସର ଝିଅର ହାତଧରି ବାଟେ ବାଟେ ଯାଉଛି ।

ମୁଁ ତାଙ୍କ ପାଖକୁ ଆସିଥିବା ମାତ୍ରେ ଝିଅଟି ମୋତେ ହାତଯୋଡ଼ି ନମସ୍କାର କଲା । ମୁଁ ଅବଶ୍ୟ ହଠାତ୍ ତାକୁ ଚିହ୍ନି ପାରିଲି ନାହିଁ; କିନ୍ତୁ ପରେ ପରେ ତା'ର କଣ୍ଢେଇ ମୁହଁଟି ମୋ ପାଖରେ ଅଜଣା ରହିଲା ନାହିଁ । ମୁଁ ତାକୁ କୌତୂହଳର ସହିତ ପଚାରିଲି—ତୁ ଯାଇଥିଲୁ କୁଆଡ଼େ ?"

"ମୋ ମାଆକୁ ନେଇ ଭିକ ମାଗିବାକୁ ଯାଇଥିଲି ମେମ୍ ସାହେବ,"—କହିଲା ତଳକୁ ମୁହଁ ପୋତି ଝିଅଟି ।

ମୁଁ ତା' କଥା ଶୁଣି ହଠାତ୍ ଚମକିପଡ଼ି କହିଲି—"ଇଏ କ'ଣ ତୋ' ମାଆ···?" ତା' ଦେହଟା ନିଆଁରେ ପୋଡ଼ି କଳାକାଠ ପଡ଼ିଯାଇଛି ଏବଂ ତା' ସହିତ ସେ ତା'ର ଆଖି ଯୋଡ଼ିକ ମଧ୍ୟ ହରାଇ ବସିଛି । ତା'ର ବିକୃତ ଚେହେରା ଦେଖି ମୋ' ଦେହଟା ଶିହରି ଉଠିଲା ।

ସେ ଅନ୍ଧୁଣୀଟି ମୋ' ପାଟି ବାରିପାରି ଏବଂ ମୋ' ମନର ଅବସ୍ଥା ସମ୍ବନ୍ଧରେ ଅନୁମାନ କରିନେଇ ସେ ଯେପରି ବୀଭତ୍ସ ଭାବରେ ହସିଲା, ଆଜି ମଧ୍ୟ ସେ ହସ ମୋର ମନେପଡ଼ିଗଲେ ମୋ ଦେହ ଶୀତେଇଉଠେ । ତା' ବିକୃତ ମୁହଁରୁ ମୁଁ ବିଦ୍ରୂପର ହସ ଶୁଣି ଅବାକ୍ ହୋଇ ତା'ରି ଆଡ଼କୁ ଚାହିଁରହିଲି । ତା'ପରେ କ'ଣ ହେଲା ଜାଣୁ ମେସି, ସେ ମୋ' ଆଗରେ ତା' ଜୀବନର ଅବଶିଷ୍ଟ ଘଟଣା ବଖାଣିଗଲା । ମୁଁ ଜାଣିଲି—ସେ ନିଜର ମାନ ଇଜ୍ଜତ୍ ବଞ୍ଚାଇବାକୁ ଯାଇ ଆତ୍ମହତ୍ୟା କରୁଥିଲା ନିଜ ଦେହରେ ନିଆଁ ଲଗେଇଦେଇ । ଅବଶ୍ୟ ଶେଷରେ ସେ ବଞ୍ଚିଗଲା ଗୋଟିଏ ବିକୃତ ଅନ୍ଧୁଣୀ ହୋଇ ।

ତା' କଥା ଶୁଣି ମୋ' ଆଖି ଦୁଇଟି ଛଳଛଳ ହୋଇଗଲା । ମୁଁ ମନେ ମନେ ଭାବିଲି —ସତେ ତ, ଜଗତରେ ସୁନ୍ଦର ରୂପ ଅପେକ୍ଷା ବିକୃତ ଚେହେରାର ସ୍ତ୍ରୀଲୋକମାନେ

କେଉଁଠି ନିର୍ଭୟରେ ଜୀବନଯାପନ କରିପାରନ୍ତୁ !

ମୋ' ଅଙ୍ଗୁଳିରେ ହୀରାର ଦାମିକା ମୁଦିଟିଏ ଥିଲା । ମୁଁ ତାକୁ ବାହାରକରି ସେହି ଅନ୍ଧୁଣୀ ଅଡ଼କୁ ବଢ଼ାଇଦେଇ କହିଲି—"ଏଇଲେ ମୋ' ପାଖରେ ଆଉ କିଛି ନାହିଁ; ଏଇ ମୁଦିଟି ନେଇ ନିଜ ପାଖରେ ରଖ । ଏ ଝିଅର ବାହାଘର ବେଳେ ତାକୁ ପିନ୍ଧାଇ ଦେବ; ତା' ହାତକୁ ଖୁବ୍ ମାନିବ ।"

ସେ ମୋ' କଥା ଶୁଣି ଚମକିପଡ଼ିଲା ପରି କେଇ ମୁହୂର୍ତ୍ତ ପଛେଇ ଯାଇ ମୋତେ ବାରମ୍ବାର ନମସ୍କାର କରି କହିଲା—"ମେମ୍‌ସାହେବ୍, ଆପଣଙ୍କ ଦୟା ମୁଁ ବଞ୍ଚିଥିବା ଯାଏଁ ଭୁଲି ପାରିବି ନାହିଁ । କିନ୍ତୁ ଆପଣଙ୍କ ଅଙ୍ଗୁଠିର ମୁଦିଟି ମୁଁ ନେଇ ପାରିବ ନାହିଁ । ମୋ' ଝିଅର ଅଙ୍ଗୁଳିରେ ନୁହେଁ, ଆପଣଙ୍କ ଅଙ୍ଗୁଳିରେ ହିଁ ତା'ର ଶୋଭା ବଢ଼ିବ । ଆପଣ କେବଳ ଏତିକି କାମନା କରନ୍ତୁ—ସେ ତା'ର ମାନଇଜ୍ଜତ ହରାଇବା ଆଗରୁ ଯେପରି ମୋ'ରି ପରି ତା' ଚେହେରାଟିକୁ ନିଆଁରେ ଜାଳିପୋଡ଼ି କଳାକାଠ କରିଦେବା ଲାଗି ତା'ର ବୁଦ୍ଧି ହେଉ ।"

ଏତିକି କହିବା ପରେ ମାଆ ଝିଅ ଦୁହେଁ ମୋ' ଆଖି ସାମନାରେ ତାଙ୍କ ବାଟରେ ଅଣେଇଗଲେ; ଆଉ ମୁଁ କେବଳ ତାଙ୍କ ଚାଲିବାଟକୁ ଏକଲୟରେ ଚାହିଁ ରହିଥିଲି ଏବଂ ମୋ' ଅଜାଣତରେ ଆଖିରୁ ମୋର ଦୁଇଟୋପା ଲୁହ ଝରିପଡ଼ିଲା ।

## ( ଅଠର )

ମୈତ୍ରେୟୀ ଓ ଆନା ଦୁହେଁଯାକ କିଛି ସମୟ ନିରବ ହୋଇ ବସିରହିଥିଲେ । ତା' ପରେ ମୌନଭଙ୍ଗ କରି କହିଲା ମୈତ୍ରେୟୀ—"ଦିଦୀ, ତୁମେ ଯେତେବେଳେ ଫଲ୍‌ମନ୍ କବଳରୁ ସ୍ତ୍ରୀଲୋକଟିକୁ ଉଦ୍ଧାରକଲ, ସେଥିରେ ତା'ପରି ଗୋଟାଏ କ୍ରୁର ଦସ୍ୟୁ କ'ଣ ସେ ବିଷୟରେ ତୁମକୁ କେବେ କିଛି ପ୍ରଶ୍ନ କଲା ନାହିଁ ?"

"ଏହା କ'ଣ ସମ୍ଭବ ?" କହିଲା ଆନା—"ଶିକାରୀ ମୁହଁରୁ ଶିକାର ଛଡ଼େଇନେଲେ ସେ କିଛି କରି ନପାରିଲେ ବି ଗର୍‌ଗର୍ ନହୋଇ ରହିବ ନାହିଁ । ତେବେ ମୁଁ ତାକୁ ପ୍ରଥମେ ସେ ବିଷୟରେ କିଛି ପଚାରି ନାହିଁ; ସେ ଆପେ ଆପେ ଆସି ଦିନେ ତା' ମନୋଭାବ ମୋ' ଆଗରେ କହିବା ସଙ୍ଗେ ସଙ୍ଗେ ମୋତେ ଡରାଇବା ଲାଗି ଆହୁରି ଅନେକ କଥା କହିଲେ । ମୁଁ ସେ ବିଷୟରେ ତୋତେ ସବୁକଥା କହୁଛି, ଶୁଣ ।"

"ସେଦିନ ଆକାଶର ସ୍ୱରୂପ ଅନ୍ୟପରି ନଥିଲା । ଶୀତକାଳର ଆକାଶରେ କ୍ଳାନ୍ତ ଚନ୍ଦ୍ରର ଆଭା ନିତାନ୍ତ ମଳିନ ହୋଇପଡ଼ିଥିଲା । ମୁଁ ମଧ୍ୟ ସେଇ ନିଷ୍ପ୍ରଭ ଚନ୍ଦ୍ର ପରି ଅତ୍ୟନ୍ତ ମ୍ଳାନ ମୁଖରେ ବସିରହିଥିଲି ଏକ ଛାତ ଉପରେ । ମନ ଭିତରେ ମୋର ଭରିରହିଥିଲା ଅସୁମାରି ଚିନ୍ତା ।

ସେ ସ୍ତ୍ରୀଲୋକଟିକୁ ମୁଁ ବିପଦର କଣ୍ଟାବାଡ଼ ଭିତରୁ ଦୟାରେ କାଢ଼ିଆଣି ଦୟାରେ ଛାଡ଼ିଦେଇ-ଥିବାରୁ ତନ୍ଦ୍ରାରେ ମୋର ମନ ଭାରାକ୍ରାନ୍ତ ହୋଇଉଠିଥିଲା । ଏହି ସମୟରେ ମୋର ଅଦୂରରେ ଆସି ଛିଡ଼ାହୋଇଗଲା ଏକ ଛାୟାମୂର୍ତ୍ତି । ଅବଶ୍ୟ ପ୍ରଥମେ ସେ ଛାୟାମୂର୍ତ୍ତିଟିକୁ ଦେଖି ମୁଁ ଚମକି ଉଠିଥିଲି । ତା' ପରେ ପରେ ମୁଁ ଲୋକଟାକୁ ଚିହ୍ନିପାରି ଆଶ୍ୱସ୍ତ ହେଲି । ଚୁପି ଚୁପି ପାଦ ଚପି ଚପି ମୋ ଶୋଇବା କୋଠରିର ବାରନ୍ଦା ଦେଇ ଛାତ ଉପରକୁ ଉଠିଆସିଥିଲା ଫଲମନ୍ ।

"ଅନେକ ଦିନ ପରେ ଫଲ୍‌ମନ୍‌ର ମୁହାଁମୁହିଁ ହୋଇଥିଲି ମୁଁ । ସେଦିନର ଅସୁସ୍ଥ ଫଲ୍‌ମନ୍‌ର ଛାୟାମୂର୍ତ୍ତି ପରି ମୁଁ ତା' ଚାରିପଟେ ଘୂରିବୁଲୁଥିଲି । ପ୍ରାୟ ସବୁବେଳେ ତା' ବାଆଁ ହାତଟିକୁ ଧରି ମୁଁ ବାଟ କଢ଼େଇ ନେଉଥିଲି । ତା'ର ସାମାନ୍ୟ ଅସୁବିଧାକୁ ଆଦୌ ମୁଁ ସହ୍ୟ କରି ପାରୁନଥିଲି । କିନ୍ତୁ ଏବେ ଫଲ୍‌ମନ୍ ଆଉ ମୋ' ଅନୁଗ୍ରହର ପାତ୍ର ନଥିଲା । ସେ ବେଶ୍ ଗଢ଼ିଜାଣିଥିଲା ତା'ର ସୌଭାଗ୍ୟର ମର୍ମର ସୌଧ । ସେ ଆଉ ଅସହାୟ ଭାବରେ କାହାରି ଆଡ଼କୁ ଅନାଇ ହାତ ପାତିବାର ଲୋକ ନଥିଲା । କାହାରି ଆଡ଼କୁ ଅସହାୟ ଭାବରେ ଚାହିଁବସିବାର ପାତ୍ର ନଥିଲା ଫଲ୍‌ମନ୍ ।

ଫଲମନ୍ ଆହୁରି ଟିକିଏ ଆଗେଇଆସି ମୋତେ ଅଭିବାଦନ ଜଣାଇ କହିଲା—"ମିସ୍ ଆନା, ମୁଁ ତୁମର ଏକାନ୍ତ ବିଶ୍ରାମ ସମୟରେ ଆସି ବାଧା ସୃଷ୍ଟି କରିଥିବାରୁ କ୍ଷମା ପ୍ରାର୍ଥୀ…"

ମୁଁ ହସି ହସି କହିଲି—"ଅନେକଦିନ ହେଲା କୌଣସି ଅତିଥିଙ୍କୁ ନଦେଖି ମୁଁ ନିତାନ୍ତ ବିଷଣ୍ଣ ଭାବରେ ଏକୁଟିଆ ଏଠି ବସିରହିଥିଲି । ହଠାତ୍ ଆପଣଙ୍କୁ ଏଠାରେ ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇଛି ।"

ଚାରିଆଡ଼କୁ ଛକ୍ ଛକ୍ ହୋଇ ଚାହିଁବା ପରେ କହିଲା ଫଲ୍‌ମନ୍—"ମୁଁ କ'ଣ ଏଠାରେ ଟିକିଏ ବସି ତୁମ ସହିତ ଦି'ପଦ କଥା ହୋଇପାରିବି ?"

ଛାତ ଉପରେ ପଡ଼ିଥିବା ଚେୟାର୍‌ଗୁଡ଼ିକ ଆଡ଼କୁ ହାତ ଦେଖାଇଦେଇ ମୁଁ କହିଲି—"ହଁ, ହଁ, ବସନ୍ତୁ ! ନୋହିଲେ ଚାଲନ୍ତୁ ମୋ' ଲାଇବ୍ରେରୀ କୋଠରିରେ ବସି କଥାବାର୍ତ୍ତା ହେବା ।"

"ନା, ଏଇଠି ଠିକ୍ ହେବ"—କହି ଖଣ୍ଡିଏ ଚେୟାର୍ ଟାଣିଆଣି ବସିପଡ଼ିଲା ଫଲ୍‌ମନ୍ ମୁଁ ଭଦ୍ରତା ଖାତିର୍‌ରେ ଖଣ୍ଡିଏ ଚେୟାର୍ ଟାଣିନେଇ ତା' ପାଖାପାଖି ବସିପଡ଼ିଲି । ସେ ଚେୟାରରେ ବସିବା ପରେ ଆରମ୍ଭ କଲା—"ଆଜି ଖୁବ୍ କୁହୁଡ଼ି ହୋଇଛି ନା ? ଦେଖନ୍ତୁ ତ ଏଇ ପାଖରେ ବହିଯାଉଥିବା ସୁନ୍ଦର ନଈଟାର ନିର୍ମଳ ଧାର ମଧ୍ୟ କୁହୁଡ଼ିରେ ଢାଙ୍କି ହୋଇଯାଇଛି ।"

ମୁଁ ଫଲ୍‌ମନ୍ ଆଡ଼କୁ ଟିକିଏ ଆଡ଼ଆଖିରେ ଚାହିଁ ସେହି ମ୍ଳାନ ଚନ୍ଦ୍ରିକା ପରି ଟିକିଏ ଶୁଖିଲା ହସ ଓଠ ଫାଙ୍କରେ ବିଞ୍ଚିଦେଇ କହିଲି—"ହିଁ, ତାହାହିଁ ଦେଖୁଛି ତ ! ଆଜିକାଲି ଏହା ତ ଅତି ସ୍ୱାଭାବିକ ।"

"ତା'ପରେ ଫଲମନ୍ ହଠାତ୍ କଥାର ଧାରା ବଦଳାଇଦେଇ କହିଲା—"ମିସ୍ ଅନା, ମୁଁ ଆଜ ଆସିଛୁ ତୁମକୁ ଅଭିନନ୍ଦନ ଜଣାଇବା ପାଇଁ ।"

"ଅଭିନନ୍ଦନ !"—ବିସ୍ମୟରେ ଚିତ୍କାରିଲା ପରି ମୁଁ କହିଲି—"ମୋତେ ପୁଣି ଅଭିନନ୍ଦନ ! କେଉଁଥିପାଇଁ···?"

"ହିଁ, ଆପଣଙ୍କୁ । ଅଶେଷ କୃପା ଆପଣଙ୍କର···"

ସେ ଯେଉଁ ବିଷୟକୁ ଲକ୍ଷ୍ୟକରି ମୋତେ ଏ କଥା କହିଥିଲା, ତାହା ମୁଁ ବେଶ୍ ଜାଣି ପାରିଥିଲେ ହେଁ, ହଠାତ୍ ବିସ୍ମିତ ହୋଇ କେତେ କ'ଣ ଆକାଶ ପାତାଳ ଭାବିବାର ଛଳନା କରି, ହଠାତ୍ ମନେପଡ଼ିଗଲା ପରି ହସି ହସି କହିଲି—"ଆପଣଙ୍କର ଯେଉଁ ସେବାଶୁଶ୍ରୂଷା ମୁଁ କରିଛି, ସେଥିପାଇଁ ଧନ୍ୟବାଦ ବା ଅଭିନନ୍ଦନର କ'ଣ ଆବଶ୍ୟକତା ଅଛି ? ମୁଁ ତାହାକୁ ନିଜର କର୍ତ୍ତବ୍ୟ ବା ମାନବୀୟ ଦାୟିତ୍ୱବୋଧ ଦୃଷ୍ଟିରୁ କରିଛି ବୋଲି ମୋର ଧାରଣା ! ଆପଣଙ୍କ ପରି ଆଉ ଜଣେ କେହି ଯଦି ସେପରି ଅବସ୍ଥାରେ ପଡ଼ିଥା'ନ୍ତେ, ତାକୁ କ'ଣ ମୁଁ ଏଡ଼ାଇ ଦେଇ ପାରିଥା'ନ୍ତି ? କୁହନ୍ତୁ ତ, ତା' କ'ଣ ମାନବୀୟତା ହୋଇଥାନ୍ତା ?"

ଫଲମନ୍ ମୋତେ ନିତାନ୍ତ ନିର୍ବୋଧ ବୋଲି ମନେକରି କହିଲା—"ନା ନା, ମୁଁ ସେ କଥା କହିବାକୁ ଆସିନାହିଁ । ଆପଣଙ୍କ ସେବା ଓ ଯତ୍ନ ଫଳରେ ମୁଁ ଯେପରି ଭାବରେ ପୁନର୍ଜନ୍ମ ଲାଭ କରିଛି, ସେ ଋଣ କେବଳ କୃତଜ୍ଞତାରେ ପରିଶୋଧ ହେବାର ନୁହେଁ । ସେହି ଉପକାର ପାଇଁ କୃତଜ୍ଞତା ବା ଅଭିନନ୍ଦନ ଜଣାଇ, ମୁଁ ତାହାକୁ ନିତାନ୍ତ ତୁଚ୍ଛ ଘଟଣା ବୋଲି ଦେଖାଇବାକୁ ଚାହେଁନାହିଁ । ମୁଁ ଅନ୍ୟ ଗୋଟିଏ ଘଟଣା ସମ୍ପର୍କରେ ଆଲୋଚନା କରିବାକୁ ଆସିଛି ଏବଂ ସେହି ସମ୍ପର୍କରେ ହିଁ କହୁଛି ।"

ସେ ଉତ୍ତର ଶୁଣି ମୁଁ ନିର୍ବୋଧ ଭାବରେ ତା' ମୁହଁକୁ ଚାହିଁ ରହିଲି କିଛି ବୁଝିପାରି ନଥିବା ପରି । ମୁଁ ତା'ର ପ୍ରଶ୍ନର ଉତ୍ତର ତା'ରି ମୁହଁରୁ ଶୁଣିବାକୁ ଚାହୁଁଥିଲି । ତା'ପରେ ସେ ଟିକିଏ ହସିଦେଇ କହିଲା—"ଆପଣ ନିଶ୍ଚୟ ଜାଣିଛନ୍ତି—ଗୋଟିଏ ପ୍ରବାଦ ରହିଛି— "ଜଳକଳାରୁ ଯାଇ ପୋଡ଼ପୋଡ଼ାରେ ପଡ଼ିବା ।" ସେ ସ୍ତ୍ରୀଲୋକଟିକୁ ଗୋଟିଏ ସାମାନ୍ୟ ବିପଦରୁ ଉଦ୍ଧାରକରି ଆପଣ ତାକୁ ସାଙ୍ଘାତିକ ବିପଦସାଗରକୁ ଠେଲିଦେଇନାହାନ୍ତି କି ?"

ମୁଁ ନିତାନ୍ତ କଠୋର ଭାବ ମୋର ମୁଖମଣ୍ଡଳରେ ଖେଳାଇ ଦୃଢ଼ଭାବରେ କହିଲି— "ଯେତେବେଳେ ମଣିଷ ଚାରିପଟରୁ ଘେରିଯାଇଥିବା ଦାବାଗ୍ନିର କବଳରେ ପଡ଼େ, ସେତେବେଳେ ସେ ପାଖରେ ଥିବା କୌଣସି ଏକ ଗଭୀର ଗର୍ତ୍ତ ମଧ୍ୟକୁ ଡେଇଁପଡ଼ିବାର ଉପକ୍ରମ କରେ; କାରଣ ସେ ବେଶ୍ ଭଲ ଭାବରେ ଜାଣିଥାଏ ଯେ ଦୁଇଟିଯାକ ତା'ର ମୃତ୍ୟୁର କବଳ ଗ୍ରାସ । ତଥାପି ହଠାତ୍ ମୃତ୍ୟୁ ଅପେକ୍ଷା ଗଭୀର ଗର୍ତ୍ତକୁ ଡେଇଁପଡ଼ି ସେ ଉଦ୍ଧାର ପାଇବାର ଏକ ନିଷ୍ଫଳ ଚେଷ୍ଟା କରିଥାଏ ।"

ହଠାତ୍ ଏକ ବକ୍ର ପରି ହାସ୍ୟରେଖା ଫୁଟିଉଠିଲା ଫଲମନ୍‌ର ମୁଖମଣ୍ଡଳରେ । ସେ ଅଟ୍ଟହାସରେ ଘରଟିକୁ କମ୍ପାଇଦେଇ କହିଲା—ଆପଣ କେବଳ କରୁଣାମୟୀ ବୋଲି ମୋର

ଧାରଣା ଥିଲି; ଏବେ ଦେଖୁଛି ଆପଣ ମଧ୍ୟ କମ୍ ବୁଦ୍ଧିମତୀ ନୁହନ୍ତି !''

ଫଲ୍‌ମନ୍‌ର ପ୍ରଶଂସାର ତୀବ୍ର ଛଳନାପୂର୍ଣ୍ଣ ସେ ବାଣ ମୋର ହୃଦୟ ବିଦ୍ଧ ନକରି ଯେ ଲକ୍ଷ୍ୟଭ୍ରଷ୍ଟ ହୋଇଯାଇଛି, ତାହା ମୁଁ ସହଜରେ ତାକୁ ଜଣାଇ ନଦେଇ କହିଲି—''କ'ଣ ଆପଣ କହିବାକୁ ଯାଉଛନ୍ତି, ତାହା ଆଦୌ ମୋର ବୋଧଗମ୍ୟ ହେଉନାହିଁ ।

''କଥା ହେଉଛି, ମୁଁ ଯାହା କରିବା ପାଇଁ ମନସ୍ଥ କରିଥିଲି, ଆପଣ ସେଇ କାମଟି ଆଗତୁରା ବୁଦ୍ଧିମତ୍ତାର ସହିତ ସମାଧାନ କରିଛନ୍ତି ।''

ମୁଁ ଭଲଭାବରେ ବୁଝିପାରିଲି—ସେ ତା'ର ଅନ୍ୟାୟ ଆଚରଣଟିକୁ ଘୋଡ଼ାଇବାକୁ ଯାଇ ଏପରି ବାକ୍‌ଚାତୁରୀର ଆଶ୍ରୟ ନେଇଛି । ତଥାପି ତା' କଥାର ବିନ୍ଦୁବିସର୍ଗ ମୁଁ କିଛି ବୁଝିପାରି ନଥିବାର ଛଳନା କରି କହିଲି—''ଆପଣ କଥାଟିକୁ ଟିକିଏ ଖୋଲିଖୋଲି ଭାବରେ କହିଲେ ଭଲହୁଅନ୍ତା ।''

''ମୁଁ କ'ଣ କହୁଥିଲି କି...'' କହିଲା ଫଲ୍‌ମନ୍—''ଆପଣ ସେଇ ସ୍ତ୍ରୀଲୋକଟିକୁ ଫର୍ଗୁସନ୍ ସାହେବଙ୍କ କୋଠିକୁ ପଠାଇଦେଇଛନ୍ତି—ଏଣୁ ମୁଁ ଆପଣଙ୍କ ବୁଦ୍ଧିମତ୍ତାକୁ ପ୍ରଶଂସା ନକରି ରହିପାରୁନି । ଆଖପାଖରେ ଆମ ଦୁଇ ଜମିଦାରଙ୍କ କୋଠି । ସାମାନ୍ୟ ଗୋଟିଏ ସ୍ତ୍ରୀଲୋକକୁ ନେଇ ଆମ ମଧ୍ୟରେ ଗୋଟାଏ ଅହେତୁକ ବିବାଦ କାହିଁକି ଯେନେଇ ଉଠିବ, ସେଇ ବିଷୟ ଚିନ୍ତା କରି ତା' ଜିନିଷଟିକୁ ଆପଣ ତା'ରି ପାଖକୁ ପଠାଇଦେଇ, ଭଲକାମ କରିଛନ୍ତି । ତା' ଫଳରେ ଦୁଇ ନୀଳକୋଠି ମଧ୍ୟରେ ସହଯୋଗିତା ବୃଦ୍ଧି ପାଇବ ।''

ଟିକିଏ ସମୟ ନୀରବ ରହିବା ପରେ ହସି ହସି କହିଲା ଫଲ୍‌ମନ୍—''ମୁଁ ସେହି କଥା ଚିନ୍ତାକରି, ସେ ସ୍ତ୍ରୀଲୋକଟିକୁ ଧରିଆଣି ଆମ କୋଠିରେ ରଖାଇଥିଲି ।''

ତା'ର କଥା ଶୁଣି ମୋ' ଦେହ ନିଆଁ ହୋଇଗଲା । ମୋ ମୁଣ୍ଡକୁ ପିତ୍ତ ଚଢ଼ିଗଲା । ଭାବିଲି—ମିଥ୍ୟାବାଦୀ ଲମ୍ପଟଟା ଆଗରେ ତା' କୁକର୍ମର ପରଦା ଖୋଲିଦେଇ, ତାକୁ ବେଶ୍ ଭଲଭାବରେ ଅପଦସ୍ଥ କରିଦେବି—କିନ୍ତୁ ମୁଁ ତାହା ଜାଣିଶୁଣି କଲିନାହିଁ । ଭାବିଥିଲି କହିବି ବୋଲି—ଆପଣ ଗୋଟେ ପେଷାଦାର ମିଥ୍ୟାବାଦୀ । ଯଦି ଆପଣଙ୍କ ମନରେ ଏପରି ଏକ ସତ୍ ଉଦ୍ଦେଶ୍ୟ ଥିଲା, ତେବେ ସେ ସ୍ତ୍ରୀଲୋକଟିର ମାନଇଜ୍ଜତ ନେଲେ କାହିଁକି ? ଏହା କହିବା ପାଇଁ ମନସ୍ଥ କରିଥିଲେ ମଧ୍ୟ ମୋ' ଜିଭ ଲେଉଟିଲା ନାହିଁ । କେବଳ ମୁଁ ତା' ଆଡ଼କୁ ଚାହିଁ କହିଲି—''ବାପା ଫେରିଆସିଲେ ମୁଁ ଆପଣଙ୍କ ବିଚକ୍ଷଣ ବୁଦ୍ଧିମତ୍ତାର ଘଟଣା ତାଙ୍କ ଆଗରେ କହିବି । ଏ କଥା ଶୁଣିଲେ ସେ ଆପଣଙ୍କ ବିଜ୍ଞତାର ବୁଦ୍ଧିର ପ୍ରଶଂସା ନିଶ୍ଚୟ କରିବେ ଏବଂ ନିଜେ ମଧ୍ୟ ଖୁସି ହେବେ ।''

ମୋ' କଥା ମଧ୍ୟରେ ଯେଉଁ ଶ୍ଳେଷ ବା ଦ୍ୱିପ୍ରକାର ଅର୍ଥ ରହିଛି, ତା' ଫଲ୍‌ମନ୍ ପାଖରେ ଅଛପା ରହିଲା ନାହିଁ । ତହୁଁ ଫଲ୍‌ମନ୍ ତା'ର ଭଦ୍ର ଆବରଣଟି ଖୋଲିଦେଇ, ଏଥର ତା' ନିଜରୂପ ଧାରଣ କରି କହିଲା—ମିସ୍ ଆନା, ମୁଁ ଦେଖୁଛି ଆପଣ ମୋତେ ବୁଝିବାରେ

ଆଦୌ ଭୁଲ କରିନାହାନ୍ତି । ନା, ଆପଣ ପ୍ରକୃତରେ ବୁଦ୍ଧିମତୀ । ମୁଁ ଯାହା କହିଲି ଆପଣ ସେସବୁ ମୋ' ମନର ଛଳନା ବୋଲି ଆଦୌ ଭାବିବେ ନାହିଁ । ସେ ଯାହାହେଉ, ଆପଣ ମୋତେ ଯେପରି ଭାବରେ ଭାବନ୍ତୁ ନା କାହିଁକି, ମୁଁ ଆଜି ଆପଣଙ୍କ ଆଗରେ ମୋ' ଜୀବନର କୌଣସି ସତ୍ୟ ଗୋପନ ରଖିବିନାହିଁ ।

"ମୁଁ ଜାଣେ, ଆପଣଙ୍କ ବାପା ଫେରିଆସିବା ମାତ୍ରେ ଆପଣ ମୋ ବିରୁଦ୍ଧରେ ବନେଇ-ଚୁନେଇ ତାଙ୍କ ପାଖରେ ଅନେକ ଅଭିଯୋଗ କରିବେ । ତା' ଫଳରେ ମୋତେ ଆପଣଙ୍କ ଇଲାକାରୁ ହୁଏତ ଚାଲିଯିବାକୁ ପଡ଼ିବ । ତଥାପି ସେଦିନ ଯେତେ ନିକଟତର ହୋଇ ଆସୁଥିଲେହେଁ, ଆପଣଙ୍କ ନିକଟରେ ମୋ' ଜୀବନର ଗୋଟିଏ ଦୁଇଟି କଥା କହିବାକୁ ମୁଁ ଆଜି ଏଠାକୁ ସାହସ କରି ଆସିଛି । ଆପଣଙ୍କ ବାପାଙ୍କର ଫେରିଆସିବା ସମୟ ଆସନ୍ନ ହୋଇଆସୁଛି । ସେତେବେଳେ ହୁଏତ ଆପଣଙ୍କ ଆଗରେ ମୁଁ ମୋର ଏହି କଥାକେତେକ କହିବାକୁ ସମୟ ପାଇବି ନାହିଁ । ତେଣୁ ଆଜି ସେହି କଥାଗୁଡ଼ାକରୁ ଗୋଟେଅଧେ ଆପଣଙ୍କ ଆଗରେ କହିଦେବି ।"

ମୁଁ ନିତାନ୍ତ ଶାନ୍ତସ୍ୱରରେ କହିଲି—"ଯାହା ଆପଣ କହିବାକୁ ଚାହାନ୍ତି, ବିନା ସଙ୍କୋଚରେ କହିପାରନ୍ତି ।"

ଫଲ୍‌ମନ୍ ତା' ମୁଖମଣ୍ଡଳରେ ଗୋଟିଏ ମ୍ଳାନ ହାସ୍ୟରେଖା ଟାଣିଦେଇ କହିଲା—"ହୁଏତ ମୋ' କଥାଗୁଡ଼ାକ ଶୁଣିବାକୁ ଆପଣଙ୍କୁ ଭଲଲାଗିନପାରେ । ଆପଣ ତା' ଫଳରେ ମୋତେ ହୁଏତ ଘୃଣାକରିପାରନ୍ତି, ତଥାପି ଆପଣଙ୍କୁ ମୁଁ ମୋ' ମନର କଥାଗୁଡ଼ିକ ନକହି ଆଦୌ ଶାନ୍ତି ପାଇପାରିବି ନାହିଁ । ଏହା ଏକାନ୍ତ ଭାବରେ ମୋ' ମନର କଥା—ତେଣୁ ଆପଣ ଦୟାକରି ଯଦି ମୋ' କଥା ଶୁଣିବାର ଅନୁଗ୍ରହ କରନ୍ତି, ତେବେ ମୁଁ ଅନୁଗୃହୀତ ହେବା ସଙ୍ଗେ ସଙ୍ଗେ କୃତଜ୍ଞତା ପାଶରେ ଚିରଦିନ ବନ୍ଦୀହୋଇ ରହିବି ।"

ମୁଁ ଅତ୍ୟନ୍ତ ଆଗ୍ରହର ଛଳନାକରି କହିଲି—"କୁହନ୍ତୁ, ମୁଁ ଶୁଣିବାକୁ ପ୍ରସ୍ତୁତ ଅଛି ।"

ମୋ'ଠାରୁ ଅଭୟ ପାଇବାମାତ୍ରେ ଫଲ୍‌ମନ୍ ଦୂର ଆକାଶର ଦିଗ୍‌ବଳୟ ଆଡ଼କୁ ଏକଲୟରେ ଚାହିଁରହିଲା । ମନେହେଲା; ସତେ ଯେପରି, ସେ ତା' ମନର କଥାଗୁଡ଼ିକୁ ସ୍ମୃତି-ପଟଳରେ ସଜାଇନେଉଛି ।

"ଆପଣ ଭଲଭାବରେ ଜାଣନ୍ତି······"କହିଲା ଫଲମନ୍—"ମୁଁ ଜାତିରେ ପର୍ତ୍ତୁଗୀଜ୍ । ଆମ ପୂର୍ବପୁରୁଷଙ୍କ ପେଶା ଥିଲା ଦସ୍ୟୁଗିରି । ସେଇ ରକ୍ତ ମଧ୍ୟ ମୋର ପ୍ରତ୍ୟେକ ଶିରା ପ୍ରଶିରାରେ ପ୍ରବାହିତ ହେଉଛି । ଆମେମାନେ ଏଇ ଦେଶର ନଦୀ, ନାଳ, ସାଗର, ଉପସାଗର, ବଣ ଓ ଜଙ୍ଗଲ ମଧ୍ୟରେ ହାତରେ ଖୋଲା ତରୁଆଲ୍ ଧରି ଘୂରିବୁଲିଛୁଁ କେବଳ ଲୁଟ୍‌ତରାଜ ପାଇଁ । ଲୁଣ୍ଠନ କରିବାରେ ଆମେ ଲଜ୍ଜାବୋଧ କରୁନାହିଁ । ନାରୀର ସର୍ବସ୍ୱ ଲୁଣ୍ଠନରେ ଆମେ ନିର୍ବିକାର । ମୁଁ ଆଜି ସଂସାର ମଧ୍ୟରେ ନିଃସଙ୍ଗ ଜୀବନ ଯାପନ କରୁଥିଲେ ହେଁ, ମୋ' ରକ୍ତରେ ମିଶିଛି ଦୁଇଟି ଭିନ୍ନ ଭିନ୍ନ ଧାରା । ମୋ' ପିତାମହ ଥିଲେ—ପର୍ତ୍ତୁଗୀଜ୍

ଓ ଗୋଟିମାଆ ଥିଲେ—ବଙ୍ଗାଳୁଣୀ ।

ମୁଁ ବିସ୍ମୟର ଅତଳ ସାଗରରେ ବୁଡ଼ିଗଲାଭଳି ଏକଲୟରେ ଚାହିଁରହିଲି ଫଲ୍‌ମନ୍‌ର ମୁଖମଣ୍ଡଳକୁ । ସେ ମୋ' ମନର ବିସ୍ମୟତାକୁ ଲକ୍ଷ୍ୟକରି ହସି ହସି କହିଲେ—"ମୁଁ କଲମ୍‌ବାକ ଗାଆଁରୁ ଯେଉଁ ସ୍ତ୍ରୀଲୋକଟିକୁ ଜୋର୍‌କରି ଧରିଆଣିଥିଲି, ଯାହାକୁ ଆପଣ ମୁକ୍ତକରି ଦେଇଛନ୍ତି, ତାହା ହେଉଛି ଆମ ପୂର୍ବପୁରୁଷଙ୍କ ରକ୍ତର ଆହ୍ୱାନ ।"

ମୁଁ ଅତ୍ୟନ୍ତ କୌତୂହଳର ସହିତ ପଚାରିଲି—"ଏ ଘଟଣା ସହିତ ଆପଣଙ୍କ ପୂର୍ବପୁରୁଷଙ୍କ ରକ୍ତର ପୁଣି ସମ୍ପର୍କ କ'ଣ ?"

"ନା" କହିଲେ ଫଲ୍‌ମନ୍—"ଏ' ଘଟଣା ସହିତ କିମ୍ବା ସେ ସ୍ତ୍ରୀଲୋକଟି ସହିତ ଆମ ପୂର୍ବପୁରୁଷଙ୍କ ରକ୍ତର ସେପରି କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନଥିଲେ ମଧ୍ୟ ଆମ ବଂଶର ପୂର୍ବପୁରୁଷମାନଙ୍କ ରକ୍ତରେ ନାରୀହରଣର ଯେଉଁ ଅଦ୍‌ଭୁତ ଖିଆଲ୍ ରହିଥିଲା, ସେହି ସ୍ରୋତରେ ଭାସିଯାଇ ମୁଁ ସେ ସ୍ତ୍ରୀଲୋକଟିକୁ ଧରିଆଣିଥିଲି । ତା' ବ୍ୟତୀତ ମୁଁ ମୋ' ପିତାମହଙ୍କ ସମ୍ବନ୍ଧରେ ଯେଉଁ କାହାଣୀଟି ଆଜି ଆପଣଙ୍କୁ ଶୁଣାଇବାକୁ ଯାଉଛି, ତା' ସହିତ ଏ' ଘଟଣାର ମୂଳବୀଜ ଛପି ରହିଛି । ସେଇଥିପାଇଁ ମୁଁ ଆମ ବଂଶର କାହାଣୀଟି ଆଜି ଆପଣଙ୍କୁ ଶୁଣାଇବାକୁ ପ୍ରୟାସ କରୁଛି ।"

ଏତକ କହି ଫଲ୍‌ମନ୍ ଟିକଏ ନୀରବ ରହିବା ପରେ ପୁଣି ଆରମ୍ଭ କଲେ—ମୋ' ପିତାମହ ଥିଲେ ଗୋଟିଏ ଦସ୍ୟୁଦଳର ଅଧିନାୟକ । ତାଙ୍କ ପାଖରେ ଗୋଟିଏ ବଡ଼ ନୌକା ସହିତ କେଇଖଣ୍ଡି ଦ୍ରୁତଗାମୀ ଶ୍ଲୁଟ ନୌକା ମଧ୍ୟ ଥିଲା । ସେ ଦେଶୀ ଓ ଫିରିଙ୍ଗି ଲୋକମାନଙ୍କୁ ନେଇ ଗୋଟିଏ ଦସ୍ୟୁଦଳ ଗଠନ କରି ଉପକୂଳବର୍ତ୍ତୀ ସମୁଦ୍ରରେ ଦସ୍ୟୁବୃତ୍ତି ଚଳାଇଥିଲେ । ସେହି ଦସ୍ୟୁଦଳଟି ଅନ୍ୟାନ୍ୟ ନୌକାଗୁଡ଼ିକ ଉପରେ ହଠାତ୍ ପଶି ଆକ୍ରମଣ କରି, ନୌକାର ପାଲଗୁଡ଼ିକୁ ଛିଣ୍ଡାଇଦେବା ସଙ୍ଗେ ସଙ୍ଗେ ନୌକାରେ ଧନ ଦଉଲତ ଯାହା କିଛି ଥାଏ ତାକୁ ଅପହରଣ କରିନେଇ ତା'ପରେ ତାଙ୍କୁ ଛାଡ଼ିଦିଅନ୍ତି । ସେମାନଙ୍କ ଦଳବଦ୍ଧ କୌଶଳପୂର୍ଣ୍ଣ ଆକ୍ରମଣର ପ୍ରତିରୋଧ ପାଇଁ କାହାରି ସାହସ ହୁଏନାହିଁ । ଆକ୍ରାନ୍ତ ନୌକାଗୁଡ଼ିକ ଯେତେବେଳେ ପାଲ ଓ ମାସ୍ତୁଲ୍‌ବିହୀନ ହୋଇ ସମୁଦ୍ର ଢେଉରେ ବିକ୍ଷିପ୍ତ ହୋଇ ଉବେଇ-ଟୁବେଇ ହେଉଥା'ନ୍ତି, ସେତେବେଳେ ମୋ' ପିତାମହ ନିଜ ନୌକାର ମଙ୍ଗ ଉପରେ ଛିଡ଼ାହୋଇ ହୋ-ହୋ କରି ହସିଉଠନ୍ତି । ବେଳେବେଳେ ଆଖପାଖ ବା ଦୂରଦୂରାନ୍ତର ଗ୍ରାମରୁ ଦଳ ଦଳ କର୍ମଠ ପୁରୁଷମାନଙ୍କୁ ଧରି ଆଣି ଦୀର୍ଘଦିନ ପର୍ଯ୍ୟନ୍ତ ଅନେକ ଯନ୍ତ୍ରଣାଦେଇ ସେମାନଙ୍କୁ ବାନ୍ଧିରଖନ୍ତି । ଦୀର୍ଘଦିନଧରି ସେମାନଙ୍କୁ ଅଖିଆ ଅପିଆ ଅନ୍ଧକାର ଗହ୍ୱର ମଧ୍ୟରେ ବନ୍ଦୀ କରିବା ପରେ, ସମୟ ଓ ସୁବିଧା ଅନୁସାରେ କ୍ରୀତଦାସ ରୂପେ ବିଭିନ୍ନ ସ୍ଥାନରେ ବିକ୍ରୟ କରି ବେଶ୍ ଦ'ପଇସା ମୁନାଫା କରନ୍ତି ।

"କିନ୍ତୁ ମୋ' ପିତାମହ କେବଳ ଏହି କାମରେ ଆତ୍ମସନ୍ତୋଷ ଲାଭନକରି, କିଛି କିଛି ଦୁଃସାହସିକ କାର୍ଯ୍ୟ କରିବା ପାଇଁ ସବୁବେଳେ ଭଲପାଆନ୍ତି । ଅବଶ୍ୟ ସେ ଧରଣର

ଦୁଃସାହସିକ କାର୍ଯ୍ୟ ସହରେ ଆସି ମିଳେନାହିଁ । ସେଭଳି କାର୍ଯ୍ୟ ଆସିଗଲେ ମଧ୍ୟ ସେ କେବଳ ଧନଦୌଲତ ଲୁଣ୍ଠନ କରି ଆନନ୍ଦ ଅନୁଭବ କରନ୍ତି ନାହିଁ; ବରଂ ଯୁଦ୍ଧ, ନରହତ୍ୟା ଓ ତା' ସହିତ ନାରୀହରଣକୁ ସେ ଅଧିକ ଗୁରୁତ୍ୱ ଦଅନ୍ତି ।

"ଏଥିପାଇଁ ତାଙ୍କର ପାଖ ଗୋଟିଏ ସୁଶିକ୍ଷିତ ଦଳ ତାଙ୍କ ଅଧୀନରେ କାର୍ଯ୍ୟ କରୁଥିଲା । ସେମାନେ ବିଭିନ୍ନ ସ୍ଥାନରେ ଗୁପ୍ତଚର ସାଜି ଖବର ସଂଗ୍ରହ କରିଆଣନ୍ତି । କେଉଁଠି ଇଂରେଜ ସିପାହୀମାନଙ୍କ ତତ୍ତ୍ୱାବଧାନରେ ଟଙ୍କାଖଜଣା ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଛି କିମ୍ବା କେଉଁ ଜମିଦାର ସିନ୍ଦୁକରେ ସୁନାମୋହର ଭର୍ତ୍ତିକରି ଜଳପଥରେ ଯାଉଛନ୍ତି । ଏସବୁ ଖବର ସେମାନେ ଅତ୍ୟନ୍ତ ସାବଧାନତାର ସହିତ ଆଣି ତାଙ୍କୁ ଯୋଗାଉଥିଲେ ।

"ତା' ପରେ ଆରମ୍ଭ ହୋଇଯାଏ ଦଙ୍ଗଲେ ଆକ୍ରମଣ । କିନ୍ତୁ ଯାତ୍ରୀମାନଙ୍କୁ ଭୁଲେଇ ଆଣି ସମୁଦ୍ର ମଝିରେ, ନଦୀପଠାରେ ବା ନିବିଡ଼ ଜଙ୍ଗଲ ମଧ୍ୟରେ ହତ୍ୟା କରିବାକୁ ମୋ ପିତାମହ ନିତାନ୍ତ କାପୁରୁଷୋଚିତ କାର୍ଯ୍ୟ ବୋଲି ମନେକରୁଥିଲେ । ସେ ହାତରେ ତଲ୍‌ଆରୁ ଧରି ଘୋଡ଼ା ପିଠିରେ ସବାର୍ ହୋଇ, ଯୁଦ୍ଧ କରି ବିଜୟୀ ବୀରଙ୍କ ପରି ଲୁଣ୍ଠନ କରିବାକୁ ଅଧିକ ପସନ୍ଦ କରୁଥିଲେ । ଅବଶ୍ୟ ଅନେକ ସମୟରେ ଟଙ୍କା ପଇସାର ମୋହ ଛାଡ଼ିଦେଇ ସିପାହୀମାନେ ପ୍ରାଣଭୟରେ ପଳାଇଯାଆନ୍ତି; କିନ୍ତୁ ଯେଉଁଠି ସଙ୍ଘବଦ୍ଧ ଭାବରେ ସେମାନେ ଯୁଦ୍ଧ ଆରମ୍ଭ କରିଦଅନ୍ତି, ସେ କ୍ଷେତ୍ରରେ ଆନନ୍ଦରେ ଉଲ୍ଲସିତ ହୋଇଉଠନ୍ତି ମୋ' ପିତାମହ । ତାଙ୍କ ଖଡ଼୍‌ଗର ତୀକ୍ଷ୍ଣ ଧାରରେ ଗର୍ଦ୍ଦିରୁ ମୁଣ୍ଡ ଅଲଗା ହୋଇଯାଇ ପିଚ୍ ପିଚ୍ କରି ରକ୍ତର ଫୁଆରା ଛୁଟିଲେ, ସେ ଦୃଶ୍ୟ ଦେଖି ମୋ' ପିତାମହ ହସି ହସି ଫାଟିପଡ଼ନ୍ତି ।

"ମିସ୍ ଆନା, ମୁଁ ଯାହା କହୁଛି, ଏହା ମୋର ମନଗଢ଼ା କାହାଣୀ ନୁହେଁ; ମୁଁ ଏସବୁ ଘଟଣା ମୋ ବାପାଙ୍କ ମୁହଁରୁ ଶୁଣିଛି । ଆଜିକାଲି ସରକାର ଯେପରି ଦୃଢ଼ତାର ସହିତ ଶାସନ ପରିଚାଳନା କରି ଦସ୍ୟୁଦଳଙ୍କୁ କଠୋର ହସ୍ତରେ ଦମନ କରୁଛନ୍ତି, ସେତେବେଳେ ଶାସନ କଳ ସେତେ ଦୃଢ଼ ନଥିଲା । ତେଣୁ ଶାସନକଳର ଅବ୍ୟବସ୍ଥାର ସୁଯୋଗ ନେଇ ଲୁଣ୍ଠନକାରୀମାନେ, ଯେ ଯାହାର କୌଶଳରେ ଶାସନକଳର ଆଖିରେ ଧୂଳି ଦେଇ ନିଜ ନିଜ ଉଦ୍ଦେଶ୍ୟ ସାଧନ କରିବାରେ ସଫଳ ହେଉଥିଲେ । ତେଣୁ ଏ ପ୍ରକାର ଉତ୍ତେଜନାମୟ ଘଟଣା ଥିଲା ସେ କାଳର ନିତ୍ୟନୈମିତ୍ତିକ ବ୍ୟାପାର ।"

"ହଁ..." କହିଲା ଆନା—"ମୁଁ ମଧ୍ୟ ଏ ଧରଣର ଘଟଣା ମୋ ବାପାଙ୍କ ମୁହଁରୁ ଅନେକ ଥର ଶୁଣିଛି ।"

ତା' ପରେ କିଛିଏ ନୀରବ ରହି ଆରମ୍ଭ କଲା ଫଲ୍‌ମନ୍—"ମିସ୍ ଆନା, ଏହା ପରେ ମୁଁ ଯେଉଁ ଘଟଣାଟି ଆପଣଙ୍କ ଆଗରେ କହିବାକୁ ଯାଉଛି, ହୁଏତ ସେପରି ଗୋଟିଏ କୌତୂହଳପୂର୍ଣ୍ଣ ଘଟଣା ଆପଣ ଶୁଣିନଥିବେ ।"

"ସତରେ ମେଷ୍ଟ", କହିଲା ଆନା—"ତା' ମୁହଁରୁ ଏତିକି ଶୁଣିବା ପରେ ମୋ ମନରେ ଖୁବ୍ କୌତୂହଳ ଜାତହେଲା ସେଇ ଦୁଃସାହସିକ ଘଟଣା ଶୁଣିବା ପାଇଁ । ତେଣୁ ମୁଁ

ହିସ୍‌କତାର ସହିତ ତା' ମୂର୍ତ୍ତିକୁ ଅନାଇ ରହିଲି । ମନର ଆଗ୍ରହ ଫୁଟିଉଠିଲା ମୋର ମୁଖମଣ୍ଡଳରେ । ତାଙ୍କୁ ଭଲଭାବରେ ଲକ୍ଷ୍ୟ କରି ଘଟଣାଟିକୁ ବେଶ୍ ବଢ଼େଇ ଚଢ଼େଇ ଆରମ୍ଭ କଲି ଲଲିମନ୍—"ହରିଦାସ ଦତ୍ତ ନାମରେ ଜଣେ ହୀରା ସୁନା ଓ ଅନ୍ୟାନ୍ୟ ଜବାହରାତ୍ ବ୍ୟବସାୟୀ ରୂପେ ସୁପରିଚିତ ଥିଲେ । ତାଙ୍କ ପରି ବିଶାଳ ସମ୍ପତ୍ତିର ଅଧିକାରୀ ସେତେବେଳେ ଏ ଦେଶରେ ପ୍ରାୟ କେହି ନଥିଲେ । ତାଙ୍କର କୌଣସି ପୁତ୍ରସନ୍ତାନ ନଥିବାରୁ, ଏକମାତ୍ର କନ୍ୟା ସୁବର୍ଣ୍ଣମଞ୍ଜରୀ ପିତାର ଅତୁଳନୀୟ ସମ୍ପତ୍ତିର ଅଧିକାରିଣୀ ହୋଇଥିଲେ ।

ପିତାଙ୍କ ଅନ୍ତେ ସୁବର୍ଣ୍ଣମଞ୍ଜରୀ ନିଜ ସ୍ୱାମୀଙ୍କ ସହିତ ବିଳାସ-ବ୍ୟସନରେ କାଳ ଯାପନ କରିବାକୁ ଲାଗିଲେ । ସେ ମଧ୍ୟ ନିଜ ମାତାଙ୍କ ପରି ପ୍ରଥମେ ଗୋଟିଏ କନ୍ୟା ଜନ୍ମ ଦେଇଥିଲେ । ତାଙ୍କ ଅଳଅଳ କନ୍ୟାଟି ପାଞ୍ଚ ବର୍ଷ ବୟସର ହେବାବେଳକୁ ସୁବର୍ଣ୍ଣମଞ୍ଜରୀ ବିଧାତାର ଅକାଳ ଚକ୍ରାନ୍ତରେ ବିଧବା ହୋଇଗଲେ । ସେ ଅତ୍ୟନ୍ତ ତୀକ୍ଷ୍ଣ ବୁଦ୍ଧିମତୀ ଥିବାରୁ ପୈତୃକ ବ୍ୟବସାୟ ଚଳାଇ ନିଜର ଖାନଦାନୀ ବୃନଅଧା ବଜାୟ ରଖିବା ତାଙ୍କ ପକ୍ଷରେ ଆଦୌ ଅସୁବିଧା ହେଲନାହିଁ । କିନ୍ତୁ ଅନ୍ୟଦିଗରୁ ସେ ନିତାନ୍ତ ଅସୁବିଧାରେ ପଡ଼ିଲେ । ବିଧାତାଙ୍କ ବରଦାନ ସ୍ୱରୂପ ସେ ଯେଉଁ ଅନିନ୍ଦ୍ୟ ସୁନ୍ଦର ରୂପ ବିଭବର ଅଧିକାରିଣୀ ହୋଇଥିଲେ, ତାହାହିଁ ହେଲା ତା'ର ଗଳଗ୍ରହ ।

"ମୁଁ ଶୁଣିଛି ମୋ' ପିତାଙ୍କଠାରୁ—ସୁବର୍ଣ୍ଣମଞ୍ଜରୀ ନଥିଲେ ସାଧାରଣ ରୂପବତୀ; ଅନ୍ୟକୁ ପାଗଳ କରିଦେବାଭଳି ରୂପର ସେ ଥିଲେ ଅଧିକାରିଣୀ । ଧନୀ, ଜମିଦାର ଓ ରାଜାମାନେ ଭିଡ଼ଜମାଉଥିଲେ ତାଙ୍କ ନିକଟରେ ହୀରା, ନୀଳା, ମୋତି, ମାଣିକ୍ୟ ଆଦି କିଣିବାଲାଗି । କିନ୍ତୁ ସୁବର୍ଣ୍ଣମଞ୍ଜରୀଙ୍କ ସ୍ୱର୍ଣ୍ଣକଣା ରୂପସୁଷମା ଦେଖି ସେମାନଙ୍କ ଅସଲ ଉଦ୍ଦେଶ୍ୟ ସେମାନେ ଭୁଲିଯାଆନ୍ତି । ତେଣୁ ସେମାନେ କେତେ ଯେ ଅସୁମାରି ଲୋଭଣୀଆ ପ୍ରସ୍ତାବ ତାଙ୍କ ଆଗରେ ରଖିଛନ୍ତି, ତା'ର କଳଣା ନାହିଁ । କିନ୍ତୁ ସେମାନଙ୍କର ସେହି ଲୋଭଣିଆ ତଥା ମନମତାଣିଆ ପ୍ରସ୍ତାବକୁ ସେ ତାଙ୍କର ମନଗହନର ନିଭୃତ କୋଠରିରେ ତାଲା ଦେଇ ବନ୍ଦ କରିଦେଇଥିଲେ । କେବେହେଲେ ଭୁଲରେ ସୁଦ୍ଧା ସେ ଆଡ଼କୁ ସେ ଥରେହେଲେ ଚାହୁଁ ନଥିଲେ କିମ୍ବା ଚାହିଁବାର ଆବଶ୍ୟକତା ଅନୁଭବ କରୁନଥିଲେ । ତାଙ୍କ ସମ୍ମୁଖରେ ଛିଡ଼ା ହୋଇ ସେ ରୂପଜ୍ୱାଳାରେ କିଏ ଯେ ଛଟପଟ ନହୋଇଛି, ଏପରି ଲୋକ ସେ ଯୁଗରେ ପ୍ରାୟ ନଥିଲେ । ସେ ଥିଲେ ଜଣେ ପୋଖତ ବ୍ୟବସାୟୀର କନ୍ୟା । ତେଣୁ ସମସ୍ତଙ୍କୁ ସେ କେବଳ ହସରୁ ଟେନାଏ ଲେଖାଏଁ ବାଣ୍ଟିଦେଇ ଭୁଲାଇଦେଉଥିଲେ । କଟୁ କଥା କହି ସେ କାହାରି ମନରେ କଷ୍ଟ ଦେଉନଥିଲେ ।

"କିନ୍ତୁ ଦିନେ ମୋ' ପିତାମହଙ୍କ କାନରେ ପଡ଼ିଲା ସୁବର୍ଣ୍ଣମଞ୍ଜରୀଙ୍କ ରୂପର ଚହଟ । ରାଶି ରାଶି ହୀରା, ନୀଳା, ମୋତି, ମାଣିକ୍ୟର କାଳ୍ପନିକ କଳ୍ପନାରେ ମୋ' ପିତାମହଙ୍କ ଆଖି ଝଲସିଉଠିଲା । ସେ ସଦାସର୍ବଦା କେବଳ ପାଗଳଙ୍କ ପରି ସେହି ଜବାହରାତ୍‌ର ସ୍ୱପ୍ନ ଦେଖିବାକୁ ଲାଗିଲେ । ସୁବର୍ଣ୍ଣମଞ୍ଜରୀର ଅମାପ ସମ୍ପଦ ତାଙ୍କୁ ନିତାନ୍ତ ଅସହାୟ ଭାବରେ

ପାଗଳ କରିଦେଲା ।

ସେ ଯେଉଁଦିନ ସୁବର୍ଣ୍ଣମଞ୍ଜରୀର ଘର ଉପରେ ଆକ୍ରମଣ କରିବାକୁ ସମସ୍ତ ଆୟୋଜନ କରିଦେଲେ, ସେ ଦିନଟି ଥିଲା—ସୁବର୍ଣ୍ଣମଞ୍ଜରୀର ଏକମାତ୍ର କନ୍ୟାର ବିବାହ ଦିବସ । ହିନ୍ଦୁମାନଙ୍କ ମଧ୍ୟରେ ଗୌରୀଦାନର ପ୍ରଥା ରହିଛି । ନିତାନ୍ତ ଅବୋଧ ବାଳିକାକୁ ବିବାହ ଦେଲେ ମହାପୁଣ୍ୟ ହୁଏ ବୋଲି ସେମାନଙ୍କର ଧାରଣା । ତାଙ୍କ କନ୍ୟା ବେଦବତୀ ଥିଲା ମାତ୍ର ଆଠବର୍ଷ ବୟସର ଝିଅଟିଏ । ସୁବର୍ଣ୍ଣମଞ୍ଜରୀ ସେଇ କନ୍ୟାର ବିବାହ ମହା ଆଡ଼ମ୍ବର ସହକାରେ କରିବାର ଆୟୋଜନ କରିଥିଲେ । ଅମାପ ସମ୍ପତ୍ତି ତାଙ୍କର । ବିବାହ ପରେ ସେ ଜ୍ୱାଇଁ ହେବ ସେଇ ଅକଳନ ସମ୍ପତ୍ତିର ଏକମାତ୍ର ଅଧିକାରୀ ।

ସୁସଜ୍ଜିତ ସଭାମଣ୍ଡପ ନିମନ୍ତ୍ରିତ ଅଭ୍ୟାଗତରେ ପରିପୂର୍ଣ୍ଣ । ରାତ୍ରିର ଆକାଶକୁ ଝିଲ୍‌ମିଲ୍ କରି ଶୋଭାପାଉଥିଲା ଝାଡ଼ଫାନୁସ୍‌ର ସୁସ୍ନିଗ୍ଧ ଆଲୋକ । ପାଇକ ବରକନ୍ଦାଜଙ୍କ ସ୍ୱଜଚକ୍ୟରେ ପରିଉଠିଥିଲା ରାଜଭବନପରି ପ୍ରାସାଦ । ଅନ୍ଦର ମହଲରେ ବସି ବିବାହ ସାମଗ୍ରୀ ତଦାରଖ କରୁଥିଲେ ସୁବର୍ଣ୍ଣମଞ୍ଜରୀ । ତାଙ୍କ ପିତାଙ୍କ ଅମଳର ବିଶ୍ୱସ୍ତ ତଥା ପରିବାରର ରକ୍ଷକ ଜନୈକ ବୃଦ୍ଧ ରଘୁନାଥ ହଠାତ୍ ଦର୍ପଣରେ ପଶିଆସି ଖବରଦେଲା—ସେଇ ଦୁଃସମ୍ବାଦ । ଏ'ଭଳି ଏକ ଅଶୁଭ ସମ୍ବାଦରେ ସୁବର୍ଣ୍ଣମଞ୍ଜରୀଙ୍କ ଅରୁଣାଭ ଚକ୍ଷୁଦୁଇଟି କ୍ଷଣକାଳ ଲାଗି ସ୍ଥିର ହୋଇଗଲା ।

କିନ୍ତୁ ଅତ୍ୟନ୍ତ ବୁଦ୍ଧିମତୀ ମହିଳା ଥିଲେ—ସୁବର୍ଣ୍ଣମଞ୍ଜରୀ । ସେ କାହାରି ଆଗରେ କିଛି ପ୍ରକାଶ ନକରି ରଘୁନାଥକୁ ବାହାରେ ଅପେକ୍ଷା କରିବାକୁ କହି ପଶିଗଲେ ଅନ୍ଦର ମହଲକୁ । ସମରରେ ପାଇତା ଯାଇଥିବା ଖଣ୍ଡିଏ ରକ୍ତବର୍ଣ୍ଣର କୌଶେୟ ତଥା ହୀରାମାଳା, ମଣିମାଣିକ୍ୟ ଭୂଷଣରେ ଭୂଷିତ ହୋଇ ସାକ୍ଷାତ୍ ଦେବୀ ପ୍ରତିମା ପରି ବାହାରିଆସିଲେ ସୁବର୍ଣ୍ଣମଞ୍ଜରୀ । ତାଙ୍କ ଶରୀରରୁ ସତେ ଯେପରି କେହି ବଳପୂର୍ବକ ପୋଛିଦେଇଥିଲା ବୈଧବ୍ୟର ନିରାଭରଣ ବେଶ । ଛଦ୍ମବେଶରେ ସୁସଜ୍ଜିତା ହୋଇ ବାହାରି ଆସିଲେ ସୁବର୍ଣ୍ଣମଞ୍ଜରୀ ।

ବିଶ୍ୱସ୍ତଭୃତ୍ୟ ତାଙ୍କର ସେ ଅପୂର୍ବ ବେଶ ଦେଖି ନିଜ ଆଖିଦୁଇଟିକୁ ଆଦୌ ବିଶ୍ୱାସ କରିପାରିଲା ନାହିଁ । ସେ ଅବାକ୍ ହୋଇ ପଚାରିଲା—"ଏ' କି ବେଶ ମା' ତୁମର ?"

"କାହାରିକୁ କିଛି ନକହି ଚୁପ୍‌ଚାପ୍ ମୋତେ ନେଇଚାଲ ସେଇ ଭୟଙ୍କର ଦସ୍ୟୁ-ସର୍ଦ୍ଦାରର ପାଖକୁ" କହିଲେ ସୁବର୍ଣ୍ଣମଞ୍ଜରୀ ।

"ସେ କେଡ଼େ ଦୁର୍ଦ୍ଦାନ୍ତ ତୁମେ କ'ଣ ଜାଣିଛ ମା" କହିଲା ରଘୁନାଥ—"ମୁଁ ଏକାକୀ ତୁମପାଇଁ ପ୍ରାଣବଳୀ ଦେବାକୁ ପ୍ରସ୍ତୁତ ଅଛି; କିନ୍ତୁ ସେ ଭୀଷଣ ଦସ୍ୟୁଟା ହାତରୁ ମୁଁ ତୁମକୁ ରକ୍ଷା କରିବି କିପରି ? ଏହା ସମ୍ପୂର୍ଣ୍ଣ ଅସମ୍ଭବ ।"

"ସେଥିଲାଗି ଚିନ୍ତା କରନା ରଘୁନାଥ" କହିଲେ ସୁବର୍ଣ୍ଣମଞ୍ଜରୀ—"ସେ ଦାୟିତ୍ୱ ମୋର । କିନ୍ତୁ ତୁ ପ୍ରତିଜ୍ଞା କର, ତୋ' ଜୀବଦଶା ମଧ୍ୟରେ ମୋର ଏ ଦୁଃସାହସିକ ଅଭିଯାନ ବିଷୟ ତୁ କାହାରି ଆଗରେ ପ୍ରକାଶ କରିବୁ ନାହିଁ ।"

ଅବିରାମ ଗତିରେ ଦୁଇଚକ୍ଷୁରୁ ଝରିପଡୁଥିବା ଲୁହଧାରକୁ ଦୁଇହାତର ପାପୁଲିରେ ପୋଛିପକାଇ କହିଲା ରଘୁନାଥ—"ମାଆ ! ସେ କ'ଣ ମୋର ଅପମାନ ନୁହେଁ ?"

ଦୁଇଜଣଯାକ ଚନ୍ଦ୍ରପକ୍ଷର ସେଇ ସଘନ ଜ୍ୟୋତ୍ସ୍ନାରେ ଆଗେଇଗଲେ ଅନ୍ଦର ମହଲର ଗୁପ୍ତଦ୍ୱାର ଦେଇ ପ୍ରାସାଦର ଉଦ୍ୟାନ ଆଡ଼କୁ । ବଗିଚାର ଅରପାଖରେ ନଦୀ । ପ୍ରଥମେ ଉଦ୍ୟାନ ପାରହୋଇ ବାଲିଚର ଦେଇ ତାକେ ଢ'ଡାକ ବାଟ ଆଗେଇଗଲେ ଦୁହେଁଯାକ । କାହାରି ମୁହଁରୁ ହିଁ କି ଚୁଁ ପଦେହେଲେ କଥା ବାହାରିଲା ନାହିଁ । ଦୁହେଁଯାକ ସେହି ନିଶବ୍ଦ ଗତିରେ ଆଗେଇଗଲେ ନଦୀକୂଳ ଅଡ଼କୁ । ଠିକ୍ ନଦୀର ଅତଡ଼ାରେ ବନ୍ଧାହୋଇ ଥିଲା କେଇଖଣ୍ଡି ନୌକା । ରଘୁ ବାଟ କଢ଼ାଇ ସୁବର୍ଣ୍ଣମଞ୍ଜରୀଙ୍କୁ ଆଗେଇନେଲା ସେଇ ନୌକାଗୁଡ଼ିକ ପାଖକୁ ।

ହଠାତ୍ ବୃକ୍ଷର ଅନ୍ଧାରରୁ ବାହାରିପଡ଼ିଲେ ଦୁଇଜଣ ଶ୍ୟାମକାୟ ମଣିଷ । ହାତରେ ତାଙ୍କର ଉନ୍ମୁକ୍ତ ତରବାରି । ସୁବର୍ଣ୍ଣମଞ୍ଜରୀ ନିର୍ଭୟରେ ଆଗେଇଗଲେ ସେହି ଲୋକଦୁଇଟିଙ୍କ ପାଖକୁ । ସୁବର୍ଣ୍ଣମଞ୍ଜରୀଙ୍କ ଦେହର ଆଭରଣରେ ଦସ୍ୟୁ ଦୁହିଁଙ୍କ ଆଖି ଝଲସି ଉଠିଲା । ମନେହେଲା—ଯେତେଯେପରି ସେଇ ସୀମାହୀନ ଆକାଶରେ ବିଚ୍ଛୁରିତ ହୋଇଯାଇଛି ସେଇ ରଶ୍ମିରେଖା ।

ସୁବର୍ଣ୍ଣମଞ୍ଜରୀ ସେ ଦୁହିଁଙ୍କ ପାଖକୁ ଆଗେଇଯାଇ କହିଲେ—"ତୁମ ସର୍ଦ୍ଦାର କେଉଁଠି ? ମୁଁ ତାଙ୍କ ସହିତ ସାକ୍ଷାତ୍ କରିବାକୁ ଚାହେଁ । ମୋତେ ତାଙ୍କ ପାଖକୁ ନେଇଚାଲ ଶୀଘ୍ର ।"

ଇଙ୍ଗିତରେ ସେ ରଘୁନାଥକୁ ସେଇଠାରେ ଅପେକ୍ଷା କରିବାକୁ କହି ଆଗେଇଗଲେ ନୌକା ଆଡ଼କୁ । ପ୍ରଥମେ ଲୋକଦୁଇଟା ସୁବର୍ଣ୍ଣମଞ୍ଜରୀଙ୍କୁ ଆଗେଇନେଲେ ଗୋଟିଏ ଶ୍ରେଷ୍ଠ ନୌକାଆଡ଼କୁ । ମଝିନଈ ଆଡ଼କୁ ଆଗେଇ ଚାଲିଲା ଅନ୍ୟାନ୍ୟ ନୌକାଗୁଡ଼ିକର ଠିକ୍ ମଝାମଝିରେ ରହି ଶ୍ରେଷ୍ଠତରଣୀଟି । ନଈର ମଝାମଝିରେ ଛିଡ଼ା ହୋଇଥିଲା—ଏକ ବିରାଟ ସୁସଜ୍ଜିତ ବଜରା । ଚନ୍ଦ୍ରାଲୋକରେ ଉଦ୍ଭାସିତ ହୋଇଉଠୁଥିଲା—ବଜରାର ଅପରୂପ କାରୁକାର୍ଯ୍ୟ । ଆଉରି ଟିକିଏ ଆଗେଇ ଯିବାପରେ ସୁବର୍ଣ୍ଣମଞ୍ଜରୀଙ୍କ ଦୃଷ୍ଟି ପଡ଼ିଲା—ବଜରାର ଛାତ ଉପରେ ଛିଡ଼ାହୋଇଛି ବିଦେଶୀ ଦସ୍ୟୁସର୍ଦ୍ଦାର୍ ।

ଦୂରରୁ ବେଶ୍ ଜାଣିପାରିଲେ ଲାବଣ୍ୟବତୀ ସୁବର୍ଣ୍ଣମଞ୍ଜରୀ—ନିଶ୍ଚୟ ଦସ୍ୟୁ ସର୍ଦ୍ଦାର ବଜରାର ଛାତ ଉପରେ ଛିଡ଼ାହୋଇ ଲକ୍ଷ୍ୟ କରୁଛି ସେଇ ଆଶ୍ଚର୍ଯ୍ୟକର ଅଦ୍ଭୁତ ଦୃଶ୍ୟ । ବଜରା ପାଖରେ ଶ୍ରେଷ୍ଠ ନୌକାଟି ପହଞ୍ଚିବା ମାତ୍ରେ ଉପରୁ ସିଡ଼ିଟିଏ ତଳକୁ ସାବଧାନତାର ସହିତ ଖସିଆସିଲା । ସୁବର୍ଣ୍ଣମଞ୍ଜରୀ ଅବଲୀଳାକ୍ରମେ ସେହି ସିଡ଼ିରେ ଉଠିଗଲେ ବଜରା ଉପରକୁ । ତା'ପରେ ସାମ୍ନାସାମ୍ନି ଛିଡ଼ାହୋଇ ରହିଲେ ଦୁଇଜଣ—ଜଣେ ଦୁର୍ଦ୍ଦାନ୍ତ ଦସ୍ୟୁ ସର୍ଦ୍ଦାର, ଆଉ ଜଣେ ଅଲୋକସାମାନ୍ୟ ରୂପସମ୍ପନ୍ନା ଘେନ ବହୁମୂଲ୍ୟ ଅଳଙ୍କରଣରେ ଭୂଷିତା ନର୍ତ୍ତକୀ ରମଣୀ । ସୁବର୍ଣ୍ଣମଞ୍ଜରୀଙ୍କ ମନରେ ସେତେବେଳେ କେଉଁ ଭାବନାର ତରଙ୍ଗ ଖେଳୁଥିଲା, ତା' କହିବା ସମ୍ଭବ ନୁହେଁ । କିନ୍ତୁ ମୋ ପିତାମହଙ୍କ ମୁହଁରୁ ଶୁଣି ମୋ' ଦାଦା କହିଛନ୍ତି—ଦସ୍ୟୁ

ଦଳପତିଙ୍କ ଜୀବନରେ ଯେପରି ବିସ୍ମୟକର ଘଟଣା କେବେହେଲେ ଘଟିନଥିଲା ।

ସେଦିନ ମୋର ପିତାମହ ତାଙ୍କ ଲୁଣ୍ଠନକାରୀ ତୀକ୍ଷ୍ଣ ଦୁଇଟି ଚକ୍ଷୁକୁ ବୋଧହୁଏ ହରାଇ ବସିଥିଲେ । ବହୁମୂଲ୍ୟବାନ୍ ହୀରା, ନୀଳା, ମୋତି, ମାଣିକ୍ୟର ଆକର୍ଷଣୀୟ ରଶ୍ମିରେ ତାଙ୍କ ଚକ୍ଷୁ ଝଲସି ଉଠିଲାନାହିଁ । ଗୋଟିଏ ବିସ୍ମୟଭରା ଆତ୍ମବିଶ୍ୱାସରେ ସେ କେବଳ ନିର୍ବାକ୍ ହୋଇ ଚାହିଁରହିଲେ ସେହି ରହସ୍ୟମୟୀ ନାରୀଟି ଆଡ଼କୁ ।

ନିରବତା ଭଙ୍ଗକରି ପ୍ରଥମେ ମୁହଁ ଖୋଲିଲେ ସୁବର୍ଣ୍ଣମଞ୍ଜରୀ—"ଆପଣ ମୋ' ଘରେ ପହଞ୍ଚିବା ଆଗରୁ ମୁଁ ଆପଣଙ୍କ ପାଖକୁ ଚାଲିଆସିଛୁ ସର୍ଦ୍ଦାର । ଆପଣ କେଡ଼େ ବଡ଼ ଅଭିମାନୀ ଲୋକ, ହୁଏତ ବିନା ନିମନ୍ତ୍ରଣରେ ଯାଇଥିଲେ ଆପଣଙ୍କ ମର୍ଯ୍ୟାଦା କ୍ଷୁଣ୍ଣ ହୋଇଥା'ନ୍ତା ତେଣୁ ଅତିଥିଙ୍କ ନିକଟକୁ ମୋତେ ହିଁ ଆସିବାକୁ ପଡ଼ିଲା ।" ମୁକ୍ତାବିନନ୍ଦିତ ଦନ୍ତପଙ୍କ୍ତିରେ ହସର ବିଦ୍ୟୁତ୍ ଝେଲାଇ ବିମୁଗ୍ଧ କରିଥିଲେ ସେ ଦସ୍ୟୁସର୍ଦ୍ଦାରକୁ ।

ଯୌବନର ମଧ୍ୟାହ୍ନରେ ସେତେବେଳେ ପଦାର୍ପଣ କରିଥିଲେ ମୋର ପିତାମହ । ଯେଉଁ ଚକ୍ଷୁରେ ଲାଳସାର ଉଦ୍ଦାମତା ପ୍ରଜ୍ୱଳିତ ହେବାର କଥା, ସେହି ଆଖିଯୋଡ଼ିକ କୋମଳତାରେ ବିନମ୍ର ହୋଇଉଠିଲା । ସେ ଅନୁଭବ କଲେ—କେବଳ ରକ୍ତରେ ଲାଲିମା ନଥାଏ, ଆକାଶରେ ସର୍ବପ୍ରଥମେ ବ୍ରାହ୍ମମୁହୂର୍ତ୍ତର ସୂର୍ଯ୍ୟ ରକ୍ତିମ ଆଭାରେ ଉଦ୍‌ଭାସିତ ହୋଇଥାଏ ଏବଂ ରକ୍ତଗୋଲାପ ମଧ୍ୟ ରଶ୍ମିମାରେ ଉଦ୍ୟାନକୁ ରଙ୍ଗେଇଦେଇଥାଏ । କିନ୍ତୁ ଦସ୍ୟୁର ହୃଦୟ କେଉଁଥିରେ ହେଲେ ଅନୁରାଗର ରଙ୍ଗମାରେ ରଞ୍ଜିତ ହୋଇନଥାଏ । ହେଲେ ସୁବର୍ଣ୍ଣମଞ୍ଜରୀଙ୍କର ମୂଲ୍ୟବାନ୍ ରକ୍ତବର୍ଣ୍ଣର ପରିଧେୟ, ତାଙ୍କର ଅପରୂପ ଚେହେରାର ଲାଲିମା ସେଦିନ ଦସ୍ୟୁ ସର୍ଦ୍ଦାରର ହୃଦୟକୁ ସମ୍ପୂର୍ଣ୍ଣରୂପେ ଅନୁରଞ୍ଜିତ କରିଥିଲା । ତେଣୁ ସେଦିନର ସେଇ ଦୁର୍ଦ୍ଦାନ୍ତ ଦସ୍ୟୁ ବିନୟର ଏକ ଅବତାର ପାଲଟିଯାଇ କହିଲେ, "ଆପଣଙ୍କ ନିମନ୍ତ୍ରଣ ସାଦରେ ଗ୍ରହଣ କଲି; କିନ୍ତୁ ଅନ୍ତମଣ୍ଡକାରୀଙ୍କୁ ସାମାନ୍ୟ ଆପ୍ୟାୟନର ସୁଯୋଗ ଦିଅନ୍ତୁ ।"

ଏହାପରେ ବଜରାର ଏକ ନିଭୃତ କକ୍ଷରେ ଜଣେ ଦୁର୍ଦ୍ଧର୍ଷ ଦସ୍ୟୁ ସହିତ ଅନ୍ୟଜଣେ ଦୁଃସାହସିନୀ ମହିଳାର ଅନେକ ଆଲୋଚନା ହୋଇଥିଲା ।

ସୁବର୍ଣ୍ଣମଞ୍ଜରୀ ବଜରାରୁ ଫେରିଯିବା ବେଳେ ଅନେକ କଥାର ସଙ୍କେତ ସାଥିରେ ନେଇ-ଯିବା ସଙ୍ଗେ ସଙ୍ଗେ ଗୋଟିଏ କଠୋର ତଥା କଠିନ ପ୍ରତିଶ୍ରୁତି ଦେଇ ସେଠାରୁ ବିଦାୟ ନେଇଥିଲେ । ଫିରିଙ୍ଗି ଦସ୍ୟୁ ତା'ର ଜୀବନରେ ଏଇ ପ୍ରଥମ ଲୁଣ୍ଠନରେ ହିଁ ସମ୍ପୂର୍ଣ୍ଣ ପରାହତ ହୋଇଥିଲେ । ସେ ସୁବର୍ଣ୍ଣମଞ୍ଜରୀଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇଥିଲେ—କନ୍ୟାର ଶୁଭ ତଥା ମାଙ୍ଗଳିକ ମୁହୂର୍ତ୍ତକୁ ସେ କୌଣସିମତେ ଅମଙ୍ଗଳର ଆଭାସ ହେବାକୁ ଦେବେନାହିଁ କିମ୍ବା ସେ ବିବାହମଣ୍ଡପରୁ ଅପହରଣ କରିବେ ନାହିଁ ତାଙ୍କର ଏକମାତ୍ର ଅଲିଅଳି କଣ୍ଢେଇ କନ୍ୟାଟିକୁ ।

ନିର୍ବିଘ୍ନରେ ବିବାହ-ଉତ୍ସବ ସମ୍ପନ୍ନହେଲା । ନିମନ୍ତ୍ରିତ ଅତିଥିମାନେ ଯଥାସମ୍ଭବ ପାଇ ସଦଳବଳ ଫେରିଗଲେ କନ୍ୟା ଓ ଜାମାତାଙ୍କୁ ଆଶୀର୍ବାଦଜଣାଇ ।

ଠିକ୍ ତା'ର ପରଦିନ – ବୃଦ୍ଧିକା ଓ ଜାମାତାଙ୍କୁ ପାଖରେ ବସାଇ କହିଲେ ସୁବର୍ଣ୍ଣମଞ୍ଜରୀ —"ମୋର ଯାହା କିଛି ପିତୃଅର୍ଜିତ ସମ୍ପତ୍ତି ସମସ୍ତ କିଛି ତୁମର ହାତରେ ଅର୍ପଣ କରୁଛୁ । ଏହାକୁ ଅତି ଯତ୍ନରେ ରକ୍ଷା କରିବ । ମୋର ପୈତୃକ ସମ୍ପତ୍ତି ଯେପରି ଅଚଳା ରହିବ ସେଥିପାଇଁ ଚେଷ୍ଟା କରିବା ତୁମ ଦୁହିଁଙ୍କର କର୍ତ୍ତବ୍ୟ ।" ତା'ପରେ ଗୋଟିଏ ସୁଦୀର୍ଘ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ ସୁବର୍ଣ୍ଣମଞ୍ଜରୀ—"ବହୁଦିନରୁ, ପ୍ରାୟ ମୋ' ସ୍ୱାମୀଙ୍କ ମୃତ୍ୟୁ ଦିନରୁ, କନ୍ୟା ସମ୍ପ୍ରଦାନ ପରେ କାଶୀଯାତ୍ରା ଲାଗି ମୋର ଆକାଙ୍କ୍ଷା ରହିଛି । ତୁମେ ଦୁହେଁ ନୂତନ ଜୀବନରେ ପଦାର୍ପଣ କରିଛ; ଏଥର ମୋତେ ମୋର କର୍ତ୍ତବ୍ୟ ସମ୍ପାଦନ କରିବାକୁ ଦିଅ ।"

ଅଶ୍ରୁଳଚକ୍ଷୁର କରୁଣ ଦୃଷ୍ଟିରେ ମାଆ ଝିଅ ଦୁହେଁ ଦୁହିଁଙ୍କଠାରୁ ବିଦାୟନେଲେ । ସ୍ଥାବର ଓ ଅସ୍ଥାବର ସମସ୍ତ ସମ୍ପତ୍ତିର ଅଧିକାଂଶ ଆଡ ଜାମାତାଙ୍କ ହସ୍ତ ଖରେ ରଘୁନାଥକୁ ବୁଝାଇଦେଇ କହିଲେ ସୁବର୍ଣ୍ଣମଞ୍ଜରୀ—"ରଘୁନାଥ, ତୁମର କୋମଳ କାଖରେ ମୁଁ ବଢ଼ି-ଆସିଛୁ ପିଲାଟି ଦିନରୁ । ତୁମର ଆଦର ଓ ସୋହାଗରେ ମୁଁ ଅଜି ଏତେ ବଡ଼ ହୋଇଛୁ । ଏଥର ମୋତେ ସତ୍ୟ ରକ୍ଷା କରିବାର ସୁଯୋଗ ଦିଅ…।"

ସୁବର୍ଣ୍ଣମଞ୍ଜରୀଙ୍କ ବ୍ୟାକୁଳତା କଥାରେ ରଘୁ ଆଉ ନିଜକୁ ଅସ୍ୱୀକାର କରିପାରିଲା ନାହିଁ । ସେ କହିଁ କହିଁ ହୋଇ କାନ୍ଦି କାନ୍ଦି କହିଲା—"ପିଲାଟି ଦିନରୁ ତମକୁ ଦେଖିଆସିଛୁ ମାଆ ! ମାଲିକ ସବୁବେଳେ କହୁଥିଲେ—ଏତେ ବିଚକ୍ଷଣ ବୁଦ୍ଧିମତୀ କନ୍ୟା ସହଜରେ ଭାଗ୍ୟରେ ମିଳେନାହିଁ । ଏ' ବିଷୟରେ ମୋତେ କାହିଁକି ପଚାରୁଛ ମାଆ ? ତୁମ ବିବେଚନା ପାଖରେ ମୁଁ ବା କି ଛାର ? କେବଳ ତୁମେ ଆଦେଶ କର ମାଆ—ମୁଁ ତାକୁ ଅକ୍ଷରେ ଅକ୍ଷରେ ପାଳନ କରିବ । ମୋତେ ପ୍ରାଣବଳି ଦେବାକୁ ପଡ଼ିଲେ ମଧ୍ୟ ମୁଁ ତୁମ ଆଦେଶ ଅମାନ୍ୟ କରିବ ନାହିଁ ।"

ସୁବର୍ଣ୍ଣମଞ୍ଜରୀ ପୁଣି କହିଲେ, "ଜୀବନରେ ମୁଁ ଆଉ କେବେହେଲେ ତୁମ ପାଖକୁ ଫେରି ଆସିପାରିବି ନାହିଁ । ମୋ' ଝିଅଟିକୁ ମଧ୍ୟ ତୁମେ ମୋ'ରି ପରି ଲାଳନପାଳନ କରିବ । ମୋ ପାଖରେ ଅଧିକ ସମୟ ରହିବାକୁ ସେ ବେଶି ପସନ୍ଦ କରେନା, ତୁମେ ଭଲ ଭାବରେ ଜାଣିଛ । ତୁମ ବେକ କାବୁଡ଼ି ଧରି ସେ ନାନା ପ୍ରକାର କାହାଣୀ ଶୁଣିବାକୁ ଖୁବ୍ ଭଲପାଏ ।"

ହଠାତ୍ ନୀରବ ହୋଇଗଲେ ସୁବର୍ଣ୍ଣମଞ୍ଜରୀ । ବୋଧହୁଏ ଗଭୀର ଦୁଃଖରେ ତାଙ୍କ ବୁକୁ ଭିତରଟା ଫାଟିପଡ଼ୁଥିଲା; ସେ ତାକୁ ବୁକୁ ଭିତରେ ଚାପିଧରି କହିଲେ – ମୋ ଝିଅ ତୁମକୁ ଲାଗିଲା ରଘୁ । ଘରଦ୍ୱାର, ସମ୍ପତ୍ତିବାଡ଼ି, ଧନରତ୍ନ ସବୁକିଛି ଛାଡ଼ିଗଲି ତୁମରି ଜିମାରେ । ତୁମରି ଉପରେ ଏ ଦାୟିତ୍ୱ ଛାଡ଼ିଦେଇ ମୁଁ ନିଶ୍ଚିନ୍ତ ହୋଇଛୁ ।

ସେହିଦିନ ରାତିର ଶେଷ ପ୍ରହରରେ ରଘୁକୁ ସଙ୍ଗରେ ଧରି ବାହାରିପଡ଼ିଲେ ସୁବର୍ଣ୍ଣ-ମଞ୍ଜରୀ । ସେଦିନ ପରି, ଠିକ୍ ସେହି ସ୍ଥାନରେ ଛିଡ଼ାହୋଇଥିଲେ ଖଡ୍ଗଧାରୀ ଯୁବକ ଦୁଇ

ଜଣ । ସୁବର୍ଣ୍ଣମଞ୍ଜରୀ ନୌକା ଉପରକୁ ଉଠିଯିବା ଆଗରୁ ରଘୁ ଆଡ଼କୁ ବୁଲିପଡ଼ି କହିଲେ—"ରଘୁ, ମୁଁ ବ୍ୟବସାୟୀ ଘରର ଝିଅ । ପିଣ୍ଡରେ ପ୍ରାଣ ଥିବା ପର୍ଯ୍ୟନ୍ତ ମୁଁ ଡକାୟତଙ୍କ ହାତରେ ପିତୃ ଅର୍ଜିତ ଧନ ଅର୍ପଣ କରିପାରିଲି ନାହିଁ । ତା' ବ୍ୟତୀତ ମାଆ ନିକଟରେ ଝିଅର ସମ୍ମାନ ଅନେକ ବେଶୀ । ମୋ'ର ଆଖି ଆଗରେ ସେ ଲାଞ୍ଛିତା ହୋଇଥାଆନ୍ତା ଏହା ମୁଁ ଦେଖି ଧୈର୍ଯ୍ୟ ଧରି ରହିଥା'ନ୍ତି କିପରି ? ଆଜିଠାରୁ ତୁ ମନେକରିବୁ ତୋର ମାଆ ମରିଯାଇଛି ।"

ରଘୁ କହିଁ କହିଁ ହୋଇ କାନ୍ଦିଉଠିଲା ଏବଂ ସୁବର୍ଣ୍ଣମଞ୍ଜରୀଙ୍କର ଚକ୍ଷୁଦ୍ୱୟଟି ମଧ୍ୟ ଛଳ ଛଳ ହୋଇଗଲା । ଏତିକିବେଳେ ନୌକାଟି ତୀବ୍ରବେଗରେ ସୁଅ କାଟି ଅଗ୍ରସର ହେଲା ମଝିନଈରେ ଥିବା ସୁସଜ୍ଜିତ ବଜରା ଆଡ଼କୁ । ସେଦିନ ସୁବର୍ଣ୍ଣମଞ୍ଜରୀଙ୍କ ଅଙ୍ଗରେ ଗୋଟିଏ ହେଲେ ଆଭରଣ ନଥିଲା । ବୈଧବ୍ୟର ଶୁଭ୍ରବେଶରେ ସେ ନିଜକୁ ସଜ୍ଜିତ କରିଥିଲେ । ସେ ନୌକାଉପରୁ ସିଡ଼ିବାଟ ଦେଇ ନିର୍ବିକାର ଭାବରେ ଉଠିଗଲେ ଦଳପତିଙ୍କ ଖାସ୍ କାମରାକୁ ।

ସେ ମୁଖମଣ୍ଡଳରେ ମୃଦୁହାସ୍ୟ ରେଖାଟିଏ ଫୁଟାଇଦେଇ କହିଲେ—"ସାହେବ୍, ମୋର ଆନ୍ତରିକ କୃତଜ୍ଞତା ଗ୍ରହଣକରନ୍ତୁ । ଆପଣ ନିଜର ପ୍ରତିଶ୍ରୁତି ରକ୍ଷା କରିଛନ୍ତି. ଏଥର ମୁଁ ମୋର ପ୍ରତିଜ୍ଞା ପାଳନ କରି ଆପଣଙ୍କ ହଜୁର୍‌ରେ ହାଜିର୍ ହୋଇଛି ।"

ଦଳପତି ମୁଗ୍ଧ ହୋଇଯାଇ କହିଲେ—"ପ୍ରକୃତରେ ତୁମେ ରହସ୍ୟମୟୀ ! ସେଦିନ ତୁମକୁ ସର୍ବାଙ୍ଗ ରତ୍ନାଭରଣ ତଥା ରକ୍ତବସନରେ ସଜ୍ଜିତା ହୋଇଥିବାର ଦେଖିଥିଲି । ତା' ଫଳରେ ମୋ' ଅନ୍ତର ମଧ୍ୟରେ ଜଳୁଛି ଏକ ଅତୃପ୍ତ ଜ୍ୱାଳା । ଆଜି କିନ୍ତୁ ଆକାଶର ସମସ୍ତ ଜ୍ୟୋତ୍ସ୍ନା ତୋଳିହୋଇଯାଇଛି ତୁମର ଅଙ୍ଗ ପ୍ରତ୍ୟଙ୍ଗରେ । କି ବିଚିତ୍ର ! କି ମନୋହାରିଣୀ ତୁମେ !!"

ଅପ୍ରତିଭ ହୋଇ କ୍ଷଣକାଳ ଅବାକ୍ ରହିବା ପରେ ପୁଣି କହିଲେ ଦଳପତି—"ସାରାଜୀବନ ମୁଁ କେବଳ ମଣିଷମାନଙ୍କର ବିତ୍ତ ହରଣ କରିଛି । କିନ୍ତୁ ଆଜି ଦେଖୁଛି, ତୁମର ସୌନ୍ଦର୍ଯ୍ୟର ନିଆଁରେ ମୁଁ ହରାଇ ବସିଛି ମୋର ହୃଦୟଟିକୁ ।"

ସ୍ଥିର ଦୃଷ୍ଟିରେ ଗ୍ରହିଁରହିଥିଲେ ସୁବର୍ଣ୍ଣମଞ୍ଜରୀ ଦଳପତିଙ୍କର ମୁଖମଣ୍ଡଳକୁ ।

ଦଳପତିଙ୍କ ଆଦେଶରେ ନଦୀ ସ୍ରୋତରେ ଭାସିଗଲା ସୁବିଶାଳ ତଥା ସୁସଜ୍ଜିତ ନୌକାଟି ଏବଂ ତା' ସହିତ ସୁବର୍ଣ୍ଣମଞ୍ଜରୀ ନିଜକୁ ଭସାଇଦେଲେ ଜୀବନର କୌଣସି ଏକ ନୂତନ ବନ୍ଦରକୁ ।

କେତେ ସମୟ ପର୍ଯ୍ୟନ୍ତ ପ୍ରଜ୍ୱଳିତ ଦୀପଶିଖାର ଦୁଇପାର୍ଶ୍ୱରେ ପରସ୍ପର ଆଡ଼କୁ ଚାହିଁ ଦୁହେଁଯାକ ବସିରହିଲେ । କାହାରି ମୁହଁରୁ ପଦେହେଲେ କଥା ବାହାରିଲା ନାହିଁ । କେବଳ ଦସ୍ୟୁପତିଙ୍କ ଆଖିରେ ଲାଖିରହିଥିଲା ସୁବର୍ଣ୍ଣମଞ୍ଜରୀଙ୍କ ଅପୂର୍ବ ରୂପ ସୁଷମା ଏବଂ ସେହି ଅପଲକ

ଦୃଷ୍ଟିରେ ଫୁଟିଉଠୁଥିଲା ଭଲପାଇବାର ଏକ ସ୍ନିଗ୍ଧ ସ୍ୱାକ୍ଷର । ତାଙ୍କ ମନଗହନରେ ଉଙ୍କିମାରୁଥିଲା ଏକମାତ୍ର ଜିଜ୍ଞାସା—ଜୀବନରେ ଯୋଉଟିଏ ସର୍ବଶ୍ରେଷ୍ଠ ରତ୍ନର ସନ୍ଧାନ ଏତେ ଦିନ ପରେ ମିଳିଛି—ମୁଁ ତାକୁ ସାଇତି ରଖିବି କେଉଁଠି ? କିପରି ବା ତା'ର ସଦ୍‌-ବ୍ୟବହାର କରିବ ?

ମନେ ମନେ ପ୍ରତିଜ୍ଞାକଲେ ଦସ୍ୟୁ ଦଳପତି—ଆଜିଠାରୁ ମୋ' ଜୀବନର ଯବନିକା ଏଇଠି ଟଳିପଡ଼ୁ । ଆଉ ଲୁଣ୍ଠନ; ଯୌବନର ଯଥାର୍ଥ ଅମୃତ ଆକଣ୍ଠ ପାନ କରିବାକୁ ହେବ ଆଜିଠାରୁ । ଆଉ ଦିଗ୍‌ବିଦିଗ ବୁଲି ସଂହାରର ତାଣ୍ଡବଲୀଳା ରଚିବାକୁ ମୋର ସମୟ କାହିଁ ? ନିର୍ଜନ ତଥା ନିଭୃତ କୁଞ୍ଜରେ ବସି ଆରମ୍ଭକରିବି ମୋର ସୁଖର ସଂସାର ।

ବସି ବସି ଦୁହେଁ ବିତାଇଦେଲେ କିଛି ସମୟ । ପ୍ରଭାତର ଶୁକତାରା ତାଙ୍କୁ ଚାହିଁ ହୋଇ ଜଳିଉଠିଲା । ଦସ୍ୟୁଦଳପତି ସ୍ପଷ୍ଟଭାବରେ ଲକ୍ଷ୍ୟକଲେ—ସୁବର୍ଣ୍ଣମଞ୍ଜରୀର ଆଖି ଦିଓଟି ଆନତ ହୋଇଗଲା । ସେ ହାତଦିଓଟି ଯୋଡ଼ି ବସିପଡ଼ିଲେ ପ୍ରାର୍ଥନା ଭଙ୍ଗୀରେ । କେତେ ସମୟ ପରେ ସେ ପ୍ରଣାମ କରି ଆଖିଦିଓଟି ଖୋଲି ଚାହିଁଲେ ପ୍ରିୟତମଙ୍କୁ ।

ସେ ମୁଖମଣ୍ଡଳରେ ହାସ୍ୟର ଅରୁଣିମା ଖେଳାଇଦେଇ କହିଲେ—"ଆଜି ଆମ ମିଳନର ପ୍ରଥମ ରାତ୍ରି ତ ?"

ଦସ୍ୟୁପତିଙ୍କ ମୁଖମଣ୍ଡଳରେ ପ୍ରଶାନ୍ତ ଅରୁଣିମା ଦୋହଲି ହୋଇଗଲା । ସେ ପ୍ରେମର ଆବେଗଭରା କଣ୍ଠରେ କହିଉଠିଲେ—"ହଁ···ମଞ୍ଜରୀ··· "

ପୁଣି କିଛିକ୍ଷଣ ପାଇଁ ଦୁହେଁ ନୀରବ ହୋଇଗଲେ । ତା'ପରେ ମୁହଁ ଖୋଲିଲେ ତରୁଣ ଦସ୍ୟୁ ଦଳପତି—"ଆଜି ଆମ ଜୀବନର ଏଇ ସର୍ବଶ୍ରେଷ୍ଠ ମୁହୂର୍ତ୍ତରେ, ତୁମେ ମୋ' ନିକଟରେ କିଛି ପ୍ରାର୍ଥନା କରିବ ନାହିଁ ? ମନର ଗଭୀର କୋଣରୁ ସବୁକିଛି ତୁମରି ହାତରେ ଅଜାଡ଼ି ଦେଇ ମୁଁ ନିଃସ୍ୱ ହେବାକୁ ଚାହେଁ···"

ଚକ୍ଷୁଦୁଇଟିରେ ଲୋତକର ବନ୍ୟା ଟଳମଳ ହୋଇଉଠିଲା ମଞ୍ଜରୀର । ସେ ଓଠ-ଫାଙ୍କରେ ଟିକିଏ ହସ ଖେଳାଇଦେଇ କହିଲେ—"ଆଜି ମୋର ପ୍ରାର୍ଥନା ସତେ କ'ଣ ତୁମେ ପୂର୍ଣ୍ଣ କରିବ ପ୍ରିୟ···?"

"ମଣିଷର ଚେଷ୍ଟା ମଧ୍ୟରେ ଯାହାକିଛି ସମ୍ଭବ ତୁମେ ତାହା ନିଃସଙ୍କୋଚରେ ପ୍ରାର୍ଥନା କରିପାର ମଞ୍ଜରୀ ! ମୁଁ ତାହା ନିଶ୍ଚୟ ପୂରଣ କରିବି ।"

"ମୋତେ କାଶୀ ଯିବାପାଇଁ ଅନୁମତି ଦିଅ—ଏହାହିଁ ମୋର ଏକମାତ୍ର ପ୍ରାର୍ଥନା ।" —କହିଲେ ଅଶ୍ରୁଳ କଣ୍ଠରେ ସୁବର୍ଣ୍ଣମଞ୍ଜରୀ ।

କୌଣସି ପ୍ରକାର ଦ୍ୱିଧା କିମ୍ବା ସନ୍ଦେହ ନକରି କହିଲେ ଦସ୍ୟୁଦଳପତି—"ତୁମର ପ୍ରଥମ ମାଗୁଣି ନିଶ୍ଚୟ ପୂରଣ କରିବି । ଯାହା ପାଳନ କରିବା ପାଇଁ ମୁଁ ପ୍ରତିଶ୍ରୁତି ଦେଇ-ସାରିଛି, ତାହା କୌଣସିମତେ ଅବଜ୍ଞା କରିବି ନାହିଁ ।"

ସଙ୍ଗେ ସଙ୍ଗେ ଦଳପତିଙ୍କ ଆଦେଶ ଅନୁସାରେ ନୌକା ପ୍ରବାହିତ ହେବାକୁ ଲାଗିଲା—

ସ୍ରୋତର ପ୍ରତିକୂଳରେ । ଦଳପତିଙ୍କ ନୌକା ଉଜାଣି ଛୁଟିଲା ସୁବର୍ଣ୍ଣମଞ୍ଜରୀଙ୍କୁ ନେଇ ।

ନାନା ସ୍ଥାନ ଅତିକ୍ରମ କରି ଶେଷରେ ନୌକା ଯାଇ ଲାଗିଲା କାଶୀଧାମରେ । ସେତେବେଳେ ନୌକା ମଧ୍ୟରେ ଥିଲେ କେବଳ ସୁବର୍ଣ୍ଣମଞ୍ଜରୀ ଓ ମୋର ପିତାମହ । ସୁବର୍ଣ୍ଣମଞ୍ଜରୀଙ୍କୁ ବାରାଣସୀର ପବିତ୍ରଧାମରେ ପହଞ୍ଚାଇଦେଇ କହିଲେ ଦସ୍ୟୁଦଳପତି—"ତୁମର ଆଶା ପୂର୍ଣ୍ଣହେଲା ମଞ୍ଜରୀ ! ଏଥର ତୁମେ ମୋତେ ମୁକ୍ତିଦିଅ । ହୁଏତ ଆଉ କୌଣସି ଦିନ ଆମେ ଆଉ ପରସ୍ପରକୁ ଦେଖିବାର ସୁଯୋଗ ପାଇବା ନାହିଁ । ତେଣୁ ଆଜିର ବିଦାୟ ବେଳାରେ ମୁଁ ତୁମକୁ ଗୋଟିଏ ମାତ୍ର ଅନୁରୋଧ କରିବି, ରକ୍ଷା କରିବ ତ ?"

ସୁବର୍ଣ୍ଣମଞ୍ଜରୀଙ୍କ ଚକ୍ଷୁରେ ଅଶ୍ରୁର ଝଡ଼ ଅମାନିଆ ହୋଇଉଠିଲା । ସେ ଗଦ୍‌ଗଦ କଣ୍ଠରେ କହିଲେ—"କୁହ ! ମୁଁ ତୁମର ଅନୁରୋଧ ନିଶ୍ଚୟ···ନିଶ୍ଚୟ ରକ୍ଷାକରିବି ।"

"ମୋ ନିକଟରେ ଯେତିକି ଧନସମ୍ପତ୍ତି ଅଛି, ତାହା ଗ୍ରହଣ କରି ତୁମେ ମୋତେ ମୁକ୍ତ ଦିଅ । ଏ ଖବର ଶୁଣାଇ ମୁଁ ଆଉ ସଂସାରପଥରେ ପଥିକ ହୋଇପାରିବି ନାହିଁ । ଆଜିଠାରୁ ମୋ ଅନ୍ତରରେ ଥିବା ଦସ୍ୟୁବୃତ୍ତିର ମୃତ୍ୟୁ ହେଉ, ଏହାହିଁ ମୋର ଅଭିଳାଷ ଏବଂ ଆରମ୍ଭ ହେଉ ମୋର ନୂତନ ଜୀବନଯାତ୍ରା···"

ସୁବର୍ଣ୍ଣମଞ୍ଜରୀ ମୋ ପିତାମହଙ୍କ ପ୍ରଦେୟ ମୋହରର ଅଣ୍ଟିକୁ ହାତ ବଢ଼ାଇ ଧରିବା ସଙ୍ଗେ ସଙ୍ଗେ ତାଙ୍କ ହାତ ଦୁଇଟିକୁ ନିବିଡ଼ ଭାବରେ ଧରିପକାଇ କହିଲେ—"ଆମ ଶାସ୍ତ୍ରରେ 'ସପ୍ତପଦୀ'ର ବିଧାନ ରହିଛି । କାହାରି ସହିତ ସାତପାଦ ମାର୍ଗ ଅତିକ୍ରମ କଲେ ତା' ସହିତ ଆତ୍ମିକ ସମ୍ପର୍କ ସ୍ଥାପିତ ହୋଇଯାଏ । ଆମେ ଦୁହେଁ ଦୀର୍ଘପଥ ଅତିକ୍ରମ କରି ଆସି-ସାରିଲେଣି । ତୁମେ ଜଣେ ଦୁର୍ଦ୍ଦାନ୍ତ ଦସ୍ୟୁ; କିନ୍ତୁ ଏଇ କେତେଦିନ ମଧ୍ୟରେ ମୋର ମନେହୁଏ, ତୁମେ ତୁମର ବୃତ୍ତିକୁ ସମ୍ପୂର୍ଣ୍ଣ ଭାବରେ ଜଳାଞ୍ଜଳି ଦେଇଛ । ତୁମପରି ଜଣେ ହୃଦୟବାନ୍ ବ୍ୟକ୍ତିଙ୍କ ବ୍ୟତୀତ ମୋର ଆଉ ଅତି ଆପଣାର ଲୋକ କିଏ ଅଛି କହିଲ ଏଇ ଦୂର ବିଦେଶ ଭୂଇଁରେ ? ଆସ, ଏଇ ପୁଣ୍ୟ ତୀର୍ଥରେ ସ୍ନାନ କରି, ବାବା ବିଶ୍ୱନାଥଙ୍କ ଶ୍ରୀଚରଣରେ ପ୍ରଣାମ ଜଣାଇ ଆମେ ଆଜିଠାରୁ ଏକ ନୂତନ ଜୀବନ ଆରମ୍ଭ କରିବା ।"

ଏତିକି କହିବା ପରେ ନୀରବ ହେଲା ଫଲ୍‌ମନ୍ ।

ତା'ର କଥା ଶେଷ ହେଲା । ମୁଁ ଯେପରି ତା'ର ମନଗଢ଼ା କାହାଣୀଟିକୁ ଅତ୍ୟନ୍ତ ଆଗ୍ରହରେ ଶୁଣିଲି । ତା' ପରେ ମୁଁ ଫଲ୍‌ମନ୍‌ର ମୁହଁକୁ ଚାହିଁ ପଚାରିଲି—"ଆଚ୍ଛା, ଏଇ ସ୍ତ୍ରୀଲୋକଟିର ଅପହରଣ ସହିତ ତୁମ ପିତାମହଙ୍କ କାହାଣୀର ସମ୍ପର୍କ କ'ଣ ?"

ଚତୁର ଫଲ୍‌ମନ୍ ହସି ହସି କହିଲା—"ମୋ ପିତାମହ ଗୋଟିଏ ବଙ୍ଗୀୟ ଯୁବତୀର ସମ୍ପର୍କରେ ଆସି ନିଜ ଜୀବନଧାରାକୁ ପରିବର୍ତ୍ତନ କରିପାରିଥିଲେ । ହୁଏତ ତାହାହିଁ ମୋ ପକ୍ଷରେ ସମ୍ଭବ ହୋଇଥା'ନ୍ତା ବୋଲି ମୁଁ ଭାବୁଥିଲି ।"

"ସତରେ ମେସୋ···" କହିଲା ଆନା—"ଯେପରି ଫଲ୍‌ମନ୍‌ର କଥା ଶୁଣିବା ପରେ ମୁଁ ମନେ ମନେ ଖୁବ୍ ହସିଛି । ଯଦି ତା' ପିତାମହଙ୍କ ଜୀବନ କାହାଣୀ ସତ୍ୟହୋଇଥାଏ,

ତେବେ ତାହା ନିଶ୍ଚୟ ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ବିଷୟ । କାରଣ ସେ ଚରିତ୍ର ସହିତ ଫଲ୍ମନ୍‌ର ଚରିତ୍ର ଆଦୌ ସମାନ ନୁହେଁ କିମ୍ବା ସେ ଚରିତ୍ରର କିୟଦଂଶ ସୁଦ୍ଧା ଫଲ୍ମନ୍‌ଠାରେ ଦେଖିବାକୁ ମିଳେନାହିଁ । କେବଳ ଦୁର୍ଦ୍ଧର୍ଷ ଦସ୍ୟୁବୃତ୍ତି ବ୍ୟତୀତ ଫଲ୍ମନ୍ ତା' ପିତାମହଙ୍କ-ଠାରୁ କିଛିହେଲେ ଅନୁକରଣ କରିନାହିଁ । ତଥାପି ମୁଁ ମୋ ନିଜ ମନର ଭାବ ଗୋପନରଖି ପ୍ରକାଶ୍ୟରେ କହିଲି—"ଜଣକର ଜୀବନଧାରା ସହିତ ଅନ୍ୟ ଜଣକର ଜୀବନଧାରା ଏକାବେଳକେ ମିଶିଯିବ, ଏ ବିଶ୍ୱାସ ମୋର ନାହିଁ ।"

ସେଦିନ ରାତ୍ରିର ଚନ୍ଦ୍ରାଲୋକରେ ମୁଁ ସ୍ପଷ୍ଟ ଭାବରେ ଲକ୍ଷ୍ୟ କରିଛି ଯେଷ୍ଠ, ଫଲ୍ମନ୍‌ର ଆଖି ଦୁଇଟା ମିଟିମିଟିଆ ବାଘର ଆଖିପରି ଜଳିଉଠିଲା; କିନ୍ତୁ ମୁହୂର୍ତ୍ତକ ମଧ୍ୟରେ ସେଇ ଦୀପ୍ତ ଚକ୍ଷୁ ଦୁଇଟି ମୃତବ୍ୟକ୍ତିର ଚକ୍ଷୁପରି ନିଷ୍ପ୍ରଭ ହୋଇଉଠିଲା । ଚେୟାର୍‌ରୁ ଉଠିପଡ଼ି କହିଲା ଫଲ୍ମନ୍—"ମିସ୍ ଆନା, ଆପଣଙ୍କ ବଦାନ୍ୟତା ପାଇଁ ଫର୍ଗୁସନ୍ ଆପଣଙ୍କୁ ଧନ୍ୟବାଦ ଜଣାଉଛନ୍ତି ।"

ଫଲ୍ମନ୍‌ର କଥା ଶୁଣି ମୋ' ଦେହରେ ନିଆଁ ଲାଗିଗଲା । ମୁଁ ନିତାନ୍ତ ରୁକ୍ଷ ସ୍ୱରରେ କହିଲି—"ମିଷ୍ଟର୍ ଫଲ୍ମନ୍ ଅସଲ ସତ୍ୟଟି ଆପଣ ଜାଣିନାହାନ୍ତି ! ସେ ସ୍ତ୍ରୀଲୋକଟି ନିଜ ଇଚ୍ଛାରେ ଚାଲିଯିବାକୁ କହୁନଥିଲେ ମୁଁ ତାକୁ ନିଜ ପାଖରେ ରଖାଇଦେଇଥା'ନ୍ତି ।"

ମୋ ଉତ୍ତର ଶୁଣିବା ମାତ୍ରେ ମଣିହରା ଫଣୀପରି ଗର୍ଜିଉଠିଲା ଫଲ୍ମନ୍—"ତା'ଫଳରେ ଆପଣଙ୍କର ମଙ୍ଗଳ ହୁଅନ୍ତା ନାହିଁ ମିସ୍ ଆନା । ଆପଣଙ୍କର ସେ ଅଭିଳାଷ ମୁଁ ପୂରଣ କରିବାକୁ ଦେଇନଥା'ନ୍ତି...।"—ଏତିକି କହି ଫଲ୍ମନ୍ ଜୋର୍ ଅଟ୍ଟହାସ୍ୟରେ ସେଇ ନିର୍ଜନ୍ ରାତିଟାକୁ ଚମକାଇଦେଲା । ମୁଁ କେବଳ ଅବାକ୍ ହୋଇ ଚାହିଁରହିଲି କ୍ଷଣକାଳ ପାଇଁ ତା' ଆଡ଼କୁ । ତା' ପରେ ମୁଁ ମଧ୍ୟ ଦୃଢ଼କଣ୍ଠସ୍ୱରରେ ପଚାରିଲି—"ମାନେ...!"

"ଏହାର ଅର୍ଥ ନିତାନ୍ତ ସହଜ ମିସ୍ ଆନା ! ଆପଣଙ୍କ ବାପା ଫେରିଆସିବା ପର୍ଯ୍ୟନ୍ତ ଏ ଜମିଦାରୀ ସୁରକ୍ଷାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହୋଇଛି । ତେଣୁ ଜମିଦାରୀର ମଙ୍ଗଳ ନିମିତ୍ତ ତୁମ ପକ୍ଷରେ ଯେତେ ଅପ୍ରୀତିକର ହେଲେ ମଧ୍ୟ, ମୁଁ ସେପରି କାର୍ଯ୍ୟ କରିବାକୁ କେବେହେଲେ ପଶ୍ଚାତ୍‌ପଦ ହୋଇନଥା'ନ୍ତି ।"

ତା' ପରେ ମୁଁ ମନେ ମନେ ଭାବିଲି—ଏହା ମଧ୍ୟରେ ଫଲ୍ମନ୍ ଅସୀମ ସାହସର ଅଧିକାରୀ ହୋଇଯାଇଛି । ସେ ଯେକୌଣସି ମୁହୂର୍ତ୍ତରେ ମୋତେ ଅପମାନିତ କରିବାକୁ ଆଦୌ ପଛେଇବ ନାହିଁ । ମୁଁ ମୋ ମନୋଭାବ ମନରେ ଗୋପନ ରଖି ହସି ହସି କହିଲି—"ଏତେ ଦିନ ପରେ ମୁଁ ବୁଝିଲି କାହିଁକି ଆମ ଜମିଦାରୀରେ ଏତେ ଉନ୍ନତି ଘଟିଛି । ମୋର ଏହି ମନ୍ତବ୍ୟକୁ ଆପଣ ଆଦୌ ବ୍ୟଙ୍ଗ ବୋଲି ମନେକରିବେ ନାହିଁ ମିଷ୍ଟର୍ ଫଲ୍ମନ୍ ! ମୁଁ ଆପଣଙ୍କର ସ୍ପଷ୍ଟବାଦିତାକୁ ପ୍ରକୃତରେ ସମ୍ମାନ କରୁଛି ।"

ଫଲ୍ମନ୍ ମୋ କଥା ଶୁଣି ଆଦୌ ଭୁଲ ବୁଝିଲାନାହିଁ । ସେ ଅତ୍ୟନ୍ତ ଆନନ୍ଦରେ ମୋ ଆଡ଼କୁ ତା'ର ହାତ ବଢ଼ାଇଦେଇ କରମର୍ଦ୍ଦନ କରିବା ସଙ୍ଗେ ସଙ୍ଗେ ସରଦନ

ବଗିଚ୍ଚରେ ଦେଖାସାକ୍ଷାତ୍ ହେବାର ପ୍ରତିଶ୍ରୁତି ମୋ'ଠାରୁ ଆଦାୟକରନେଇ, ଝିଙ୍ଗବାଙ୍ଗ-ଦେଇ ତଳକୁ ଓହ୍ଲାଇଗଲା ।

ତା' ପରେ ମେରି, ବାପା ଫେରିଆସିବା ପର୍ଯ୍ୟନ୍ତ ମୋର ଗୋଟିଏ ଗୋଟିଏ ମୁହୂର୍ତ୍ତି ଯେ କେତେ କଷ୍ଟ ଓ ବ୍ୟଥାରେ ବିତିଛି ତାହା ମୁଁ ଜାଣେ । ସେତେବେଳକାର ଅବସ୍ଥା ସମ୍ବନ୍ଧରେ ମୁଁ ତୋତେ ଆଦୌ ବୁଝାଇ ପାରିବି ନାହିଁ । ସେ ସମସ୍ତ ମଧ୍ୟରେ ମୋତେ ଆତ୍ମରକ୍ଷା ପାଇଁ ଯନ୍ତ୍ରୀ ଭାବରେ ଗୋଟିଏ ଅଭିନେତ୍ରୀ ସାଜି କଠୋର ଅଭିନୟ କରିବାକୁ ପଡ଼ିଛି । ମୁଁ ସେହି ଦିନକେଇଟା ଗୋଟାଏ ଭୟଙ୍କର ଜାନୁଆର୍ ହାତୁଡ଼ରେ ପଡ଼ି ଯେପରି ଭାବରେ ଦିନ କାଟିଛି, ଏବେ ସେ କଥା ଭାବିଲେ ମୋ ଗ୍ରୀତି ଦୂଲୁକଉଠେ ।

ପରମାତ୍ମାଙ୍କୁ ଶତ ଧନ୍ୟବାଦ, ମୁଁ ସେତେବେଳେ ଫଲ୍‌ମନ୍‌ର କ୍ରୂର ଚେଷ୍ଟାରୁ ନିଜକୁ ରକ୍ଷା କରିପାରିଛି । ସଦାସର୍ବଦା ତା'ର ରକ୍ତଲୋଲୁପ ଆଖିଯୋଡ଼ିକ ମୋର ମାନସ-ପଟଳରେ ଭୟଙ୍କର ରୂପ ଧାରଣକରି ମୋତେ ବ୍ୟତିବ୍ୟସ୍ତ କରିପକାଇଛି । ପ୍ରତି ମୁହୂର୍ତ୍ତିରେ ତା'ର ଆକ୍ରମଣରେ ମୁଁ ଛିନ୍ନଭିନ୍ନ ହୋଇଯିବାର ସନ୍ଦେହ କରିଛି । ପ୍ରତିଟି ଦିନ ସୁରୁଖୁରୁରେ ବିତିଯିବା ପରେ, ମୁଁ ପରମେଶ୍ୱରଙ୍କଠାରେ କୃତଜ୍ଞତା ଜଣାଇଛି ଏବଂ ମାନସିକ ଯନ୍ତ୍ରଣା ଓ ଭୟରେ ମୁଁ ସବୁଦା ଜଡ଼ସଡ଼ ହୋଇ କାଳଯାପନକରିଛି ।

ଠିକ୍ ଏତିକିବେଳେ ବାପା ଆସି ପହଞ୍ଚିଗଲେ । ମୋତେ ଦେଖିଦେଇ ପ୍ରଥମେ ସେ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ପ୍ରକୃତରେ ଆତ୍ମରକ୍ଷାର ସଂଗ୍ରାମରେ ମୁଁ ଗୋଟିଏ ମୃତ୍ୟୁ'ଧାରରେ ପରିଣତ ହୋଇଯାଇଥିଲି । ବାପା ମୋତେ ଖୁବ୍ ଆଦରକରି, ମୋ ଚିନ୍ତା ଓ ଅସୁସ୍ଥତାର କାରଣ ପଚାରନ୍ତେ, ମୁଁ ତାଙ୍କ ଗ୍ରୀତିରେ ମୁହଁ ଗୁଞ୍ଜି କାନ୍ଦି କାନ୍ଦି ଢଳିପଡ଼ିଲି । ମୋ'ଠାରୁ ଗୋଟି ଗୋଟି କରି ସବୁକଥା ଶୁଣିବା ପାଇଁ ପରେ, ସେ ନିତାନ୍ତ ବ୍ୟସ୍ତହୋଇ କହିଲେ—"ମୁଁ ଏଇ ମୁହୂର୍ତ୍ତିରେ ଫଲ୍‌ମନ୍‌କୁ ଏଠାରୁ ନିକାଲିଦିଅନ୍ତି; କିନ୍ତୁ ଆମ ଜମିଦାରୀ ପକ୍ଷରେ ତାହା ଆଦୌ ମଙ୍ଗଳଜନକ ହେବନାହିଁ । ମୁଁ ବିଶ୍ୱାସରେ ତା' ହାତରେ ସବୁ କିଛି ଅର୍ପଣ କରିଦେଇଛି । ତେଣୁ ହଠାତ୍ ତାକୁ ବାହାର କରିଦେଲେ ସେ ଆମର ଦରକାରୀ କାଗଜପତ୍ର ନଷ୍ଟକରିଦେବ କିମ୍ବା ନେଇ ପଳାଇଯିବ । କିଛିଦିନ ଅପେକ୍ଷା କର; ମୁଁ ତା' ପାଖରୁ ସବୁକିଛି ଧୀରେ ଧୀରେ ବୁଝିନେବି, ତା' ପରେ ତା'ର ବ୍ୟବସ୍ଥା କରିବା । ଅବସ୍ଥା ଦେଖି ବ୍ୟବସ୍ଥା ନକଲେ ସେ ଆମର ଅନେକ କିଛି କ୍ଷତି କରିଯିବ ।

ବାପା ପରିଶେଷରେ ଫଲ୍‌ମନ୍‌ର କବଳରୁ କୌଣସିମତେ ରକ୍ଷାପାଇଲେ ଏବଂ ସେଥିପାଇଁ ତାଙ୍କୁ ଅନେକ କିଛି ଖେସାରତ୍ ଦେବାକୁପଡ଼ିଛି । ମୋ' ବାପାଙ୍କ ପ୍ରଦତ୍ତ ଧନରେ ସେ କଣିଲା ତା'ର ନିଜର ଜମିଦାରୀ । ଏଇଲେ ସେ ନିଜେ ଏକ ଶାଲକୋଠାର ମାଲିକ ।"

ଆନାର କଥା ଶେଷରେ ଆଖିରୁ ଲୁହର ବନ୍ୟା ଛୁଟାଇ କହିଲା ମୈତ୍ରେୟୀ—"ଉଃ, କେଡ଼େ ସାଂଘାତିକ ଲୋକ ଏ ଦୁଷ୍ଟ ଫଲ୍‌ମନ୍‌ଟା ! ମୋର ମନେହେଉଛି, ସତେ ଯେପରି ମୁଁ ତନ୍ଦ୍ରାରେ ସାରା ରାତି ଦୁଃସ୍ୱପ୍ନ ଦେଖୁଛି ।"

ଆନା ଚେୟାର୍‌ରୁ ଉଠିପଡ଼ି କହିଲା—"ଦେଖ୍, କିନ୍ତୁ ଯାଇ ସୁବର୍ଣ୍ଣରେଖା ତଟରେଖାକୁ ଛୁଇଁବାକୁ ବସିଲାଣି ସୂର୍ଯ୍ୟ, ଆଉ କେଇଘଡ଼ି ଟିକିଏ ବିଳମ୍ବରେ ଗଡ଼ିପଡ଼ିବା ।"

## ( ଊଣଚାଳିଶ )

ନୀଳକୋଠି ମାଲିକମାନଙ୍କ ଆନ୍ଦୋଳନର ପରୋକ୍ଷ ଫଳସ୍ୱରୂପ ସେମାନଙ୍କୁ ଗୋଟିଏ ଅଧିକାର ମିଳିଗଲା । ଅବୈତନିକ ମାଜିଷ୍ଟ୍ରେଟ୍ ରୂପେ ବିଚାରକର ଆସନ ଅଧିକାର ଲାଭ କରିବାରେ ସେମାନଙ୍କର କୌଣସି ବାଧା ରହିଲା ନାହିଁ । କେବଳ ସେମାନେ ଯେ କେତେ ଜଣ ଇଂରେଜ ବିଚାରକମାନଙ୍କ ସାହାଯ୍ୟ ପାଇଲେ ତା' ନୁହେଁ, ବରଂ ସେମାନେ ନିଜ ନିଜର ସୁବିଧା ହାସଲ କରିବାର ଗୋଟିଏ ଅପୂର୍ବ ସୁଯୋଗ ହାସଲ କରିନେଲେ । ତା' ଫଳରେ ସେମାନେ ଅତୀତରେ ଯେଉଁ କ୍ଷତି ସହିଥିଲେ, ତା'ର କଡ଼ାଗଣ୍ଡା ହିସାବ ବୁଝି ନେବାର ସୁବିଧା ପାଇଗଲେ ।

୧୮୫୬ ସାଲରେ ଏହି ଅଧିକାର ପାଇଲେ ଫର୍ଲଙ୍ଗ୍ ସାହେବ । ସେହି ଅଞ୍ଚଳର ନୀଳକୋଠି ମାଲିକମାନେ ତାଙ୍କୁ 'ଡିନର୍'ରେ ଆମନ୍ତ୍ରିତ କରିବାକୁ ମନସ୍ଥ କଲେ । ଏହି ଆୟୋଜନର ମୁଖ୍ୟ ପରିଚାଳନା ଭାର ଗ୍ରହଣ କଲା ଫଲ୍‌ମନ୍ । ତା'ର ନିର୍ଦ୍ଦେଶରେ ମାନପତ୍ର ଲେଖାହେଲା ଏବଂ ଫର୍ଲଙ୍ଗ୍‌ଙ୍କୁ ଉପହାର ଦେବା ଲାଗି ପର୍ସିଆନ୍ କାର୍ପେଟ୍ କିଣା ହେଲା । ଫର୍ଗୁସନ୍ ସାହେବଙ୍କ କୋଠିରେ ଅନୁଷ୍ଠାନର ଆୟୋଜନ କରାଗଲା । ମିସ୍ ଆନା ଜଣେ ନୀଳକୋଠିର ମାଲିକାଣୀ ଭାବରେ ସେଥିରେ ଯୋଗଦେଲା । କିନ୍ତୁ ଆୟୋଜନର ମୁଖ୍ୟ କାର୍‌ପଟଦାର୍ ଫଲ୍‌ମନ୍ କୌଣସି ଜରୁରୀ କାର୍ଯ୍ୟ ଆଳରେ ଅନୁଷ୍ଠାନରେ ଯୋଗ ଦେଲାନାହିଁ । ଏହି ସମ୍ବାଦ ଶୁଣିବା ମାତ୍ରେ ଆନାର ମନକୁ ପାପ ଛୁଇଁଲା । ସେ ହଠାତ୍ ଅସୁସ୍ଥ ହୋଇପଡ଼ିବାର ଛଳନା କରି, ସମସ୍ତଙ୍କଠାରେ କ୍ଷମାପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ଅନୁଷ୍ଠାନର କାର୍ଯ୍ୟକ୍ରମରୁ ହଠାତ୍ ବିଦାୟ ନେଇ ନିଜ କୋଠିକୁ ଫେରିଆସିଲା ।

ଘୋଡ଼ାଗାଡ଼ିରେ ବସିବା ମାତ୍ରେ ଯେତେ ଶୀଘ୍ର ସମ୍ଭବ ଗାଡ଼ି ଚଳାଇବାକୁ ଆନା ଆଦେଶ ଦେଲା କୋଚୁଆନକୁ । ଆବୁଡ଼ା ଖାବୁଡ଼ା ରାସ୍ତାରେ ଘର୍‌ଘର୍ ଶବ୍ଦ କରି ଆନାର ଗାଡ଼ି ଛୁଟିଚାଲିଲା । ଗାଡ଼ି ଯାଇ ପହଞ୍ଚିବା ଆଗରୁ ହୁଏତ କୌଣସି ଅଘଟଣ ଘଟିଯାଇପାରେ, ସେହି ଆଶଙ୍କାରେ ବିବ୍ରତ ହୋଇପଡ଼ିଲା ଆନା । ସେ ହଠାତ୍ ତା' ଦେହରକ୍ଷୀର ଘୋଡ଼ାଟିକୁ ତା'ଠାରୁ ନେଇ ସିଧାସଳଖ ରାସ୍ତା ଦେଇ ଛୁଟିଚାଲିଲା ନିଜ କୋଠିକୁ । ଅଙ୍କାବଙ୍କା ରାସ୍ତା ଛାଡ଼ି ସିଧା ରାସ୍ତାରେ ଘୋଡ଼ାଟି ତୀବ୍ରବେଗରେ ଆଗେଇଚାଲିଲା । କିନ୍ତୁ ତା' ଆଗରୁ ଆନାର ମନ ଛୁଟିଗଲା ନୀଳକୋଠି ଆଡ଼କୁ । ନାନା ଅଶୁଭ ଚିନ୍ତାରେ ବିବ୍ରତ ହୋଇପଡ଼ିଲା ଆନାର ମନ ।

ନୀଳକୋଠି ନିକଟରେ ପହଞ୍ଚିଯାଇ ସେହି ଅନ୍ଧକାର ରାତ୍ରିରେ କେବଳ ନକ୍ଷତ୍ର

ଆଲୋକରେ ଲକ୍ଷ୍ୟ କଲା ଆନା ଦୂରର ରାସ୍ତା ଆଡ଼କୁ । ସେ ଦେଖିଲା—ମୁଖ୍ୟ ଫାଟକର ଅଦୂରରେ ଥିବା ଗୋଟିଏ ଅଶ୍ୱତ୍ଥ ଗଛମୂଳେ ଥିଆହୋଇଛି ଘୋଡ଼ାଗାଡ଼ିଟିଏ । ଘୋଡ଼ାଟିକୁ ସେଇଠି ଛାଡ଼ିଦେଇ ଆନା ପଛପାଖ ଫାଟକ ରାସ୍ତା ଦେଇ ପଶିଗଲା କୋଠି ଭିତରକୁ । ହଠାତ୍ ତା'ର ଦୃଷ୍ଟି ପଡ଼ିଗଲା ମୈତ୍ରେୟୀ ଉପରେ । ସେ ଏଭଳି ଅସମୟରେ ପୋଷାକପତ୍ରରେ ସଜ୍ଜିତ ହେଉଛି କାହିଁକି ?

ଆନା ନାଚଘରେ ଯାଇ ଛିଡ଼ା ହୋଇଗଲା ତା'ର ପଛପଟେ । ଦର୍ପଣରେ ଆନାର ପ୍ରତିବିମ୍ବ ଦେଖିପକାଇ ମୈତ୍ରେୟୀ ଚିତ୍କାର କରିବା ଆଗରୁ ମୁହଁରେ ଆଙ୍ଗୁଳି ରଖି ଚୁପ୍ ରହିବାକୁ ତାକୁ ଇଙ୍ଗିତଦେଲା ଆନା ।

ସେ ତାକୁ ମଞ୍ଚପଟ ବାରନ୍ଦାକୁ ଟାଣିନେଇ ପଚାରିଲା—"କଥା କ'ଣ ମେଘା ? ଏ ଅସମୟରେ···" ତା'ର ପୋଷାକପତ୍ର ଆଡ଼କୁ ଇଙ୍ଗିତ କରି ପଚାରିଲା ଆନା ।

ଆନାକୁ ହଠାତ୍ କୋଠିରେ ଦେଖି ବିସ୍ମୟରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲା ମୈତ୍ରେୟୀ । ସେ କମ୍ପିତ ସ୍ୱରରେ ଚୁପ୍‌ଚୁପ୍ କରି କହିଲା—"ତୁମେ ଆସିଲ କେଉଁଠୁ ଦିଦି ? ତୁମେ ପରା ସାଂଘାତିକ ଅସୁସ୍ଥ ହୋଇ ମୋତେ ଡକାଇପଠାଇଥିଲ ?"

ହାତ ବଢ଼ାଇ ସେ ଦେଖାଇଦେଲା ସାମ୍ନା ଫାଟକ ନିକଟରେ ଛିଡ଼ାହୋଇଥିବା ଘୋଡ଼ାଗାଡ଼ି ଆଡ଼କୁ ।

"ତା'ହେଲେ କଥା କ'ଣ କହିଲୁ ଦେଖି···?" ପଚାରିଲା ଆନା ।

"ମୁଁ ତ ସେଇ କଥା ତୁମକୁ ପଚାରୁଛି ଦିଦି ! ତୁମେ କାଲି ଫର୍ଗୁସନ୍ ସାହେବଙ୍କ କୋଠିରେ ହଠାତ୍ ଅସୁସ୍ଥ ହୋଇପଡ଼ିଥିଲ । ଶୀଘ୍ର ମୋତେ ଡାକିନେବାପାଇଁ ଫର୍ଗୁସନ୍ ସାହେବଙ୍କ ଗାଡ଼ିଟିକୁ ପଠାଇଛ । ଏତେ କଥା କରି ପୁଣି ମୋତେ ଆସି ପଚାରୁଛ କଥା କ'ଣ ? ଏ' କି ଅଭିନୟ ତୁମର······?"

ବିଦ୍ୟୁତ୍ ବେଗରେ ହଠାତ୍ ଘଟଣାଟି ବୁଝିନେଲା ବୁଦ୍ଧିମତୀ ଆନା । ସେ ମୈତ୍ରେୟୀକୁ କିଛି ନକହି, ହଠାତ୍ ତରତର ହୋଇ ପୋଷାକପତ୍ର ବଦଳାଇନେଇ, ମୁହଁରେ ଖଣ୍ଡିଏ କଳା ରେଶମି କପଡ଼ା ବାନ୍ଧି ଶୋଇବାଘରକୁ ପଶିଗଲା । ସେ ତା'ର ବନ୍ଧୁକରେ ଗୁଳି ଭର୍ତ୍ତିକରି, ଆବଶ୍ୟକମତେ ଅଧିକ ଗୁଳି ସଙ୍ଗରେ ନେଇ ବାହାରିଆସିଲା ।

ମୈତ୍ରେୟୀର ଆଖି ଦୁଇଟି ବିସ୍ମୟରେ ବିସ୍ଫାରିତ ହୋଇଗଲା । ଆନା ତାକୁ ପାଖକୁ ଟାଣିଆଣି ଚୁପ୍‌ଚୁପ୍ କରି ତା' କାନ ପାଖରେ କହିଲା—"ଏଇଲେ ତୁ କିଛି ପଚାରନା । ଯଦି ମୁଁ ଭଲରେ ଫେରିଆସେ ତୋତେ ସବୁକଥା ବୁଝାଇ କହିବି । ସତରେ ମେଘା, ଆଜି ତା'ର ପାପର ପ୍ରାୟଶ୍ଚିତ୍ତ ହୋଇଯିବ । ଯଦି ମୁଁ ପ୍ରକୃତରେ ତୋତେ ପ୍ରାଣଦେଇ ଭଲପାଇଥାଏ, ତେବେ ଆଜି ତୋ'ର ସୁକୃତ ବଳରେ ମୁଁ ସଇତାନ୍ ଫଲ୍‌ମନ୍‌କୁ ଉଚିତ ଶିକ୍ଷା ଦେଇ ଫେରିଆସିବି ।"

ଏତିକି କହି ଅବଗୁଣ୍ଠନବତୀ ଆନା ତୀର ବେଗରେ ଛୁଟିଗଲା ତଳକୁ । ବିସ୍ମୟରେ ବିମୂଢ଼

ହୋଇ ପିଲ୍ଲା ପାଇଁରେ ଆନାର ନଦେ'ଶରେ ଛଡ଼ାହୋଇଗଲା ମୈଥେସ୍ଥି ।

ବାରଣ୍ଡା ଉପରକୁ ଉଠିଆସି ମୈଥେସ୍ଥି ଲକ୍ଷ୍ୟକଲା—ଆନା ଯାଇ ବସିପଡ଼ିଲା ଘୋଡ଼ା-ଗାଡ଼ି ଭିତରେ ଏବଂ ସେ ବସିପଡ଼ିବାମାତ୍ରେ ଘୋଡ଼ାଗାଡ଼ିଟା ମୁହୂର୍ତ୍ତକ ମଧ୍ୟରେ ଅଖି ଆଗରୁ ନିବିଡ଼ ଘନ ଅନ୍ଧକାର ମଧ୍ୟରେ ହଜିଗଲା ।

କିଛିଦୂର ଯିବା ପରେ ଆନା ଦେଖି ଶୁଣିପାରିଲା ପଛରେ ଆସୁଥିବା ଘୋଡ଼ାଖୁରାର ଶବ୍ଦ । ହଠାତ୍ ଗୋଟିଏ ଶାଳବଣ ପାଖରେ ଗାଡ଼ିଟା ଛଡ଼ାହୋଇଗଲା । ଯେଉଁଠି କରି ଆନ୍ ପରିବର୍ତ୍ତିତ ହୋଇଗଲା । ଆନା ସବୁକିଛି ବୁଝିପାରିଲା । ପୁଟର ସ୍ୱଳକ ଘୋଡ଼ାରେ ବସି ଅପେକ୍ଷାଗଲା ।

ଫଲ୍‌ମନ୍ ମହାନ୍ ଶିକାରୀ । ସେ ଶିକାରଟିକୁ ଏକାକୀ ଖୋଜ 'କରିବାକୁ ଚାହେଁ । ଆନା ଫଲ୍‌ମନ୍‌ର ମସୃଣ ବୁଝିପାରି ମନେ ମନେ ହସିବାକୁ ଲାଗିଲା । ସୁବର୍ଣ୍ଣରେଖାର କୂଳେ କୂଳେ ଶାଳବନ ଭିତର ଦେଇ ଆଗେଇ ଚାଲିଲା ତୀବ୍ରବେଗରେ ଗାଡ଼ିଟା । ହଠାତ୍ ଗାଡ଼ିଟା ଅଟକିଗଲା ଏବଂ ଗାଡ଼ି ଉପରୁ ଡ଼ିଆଁ ମାରି ଓହ୍ଲାଇଆସିଲା ଫଲ୍‌ମନ୍ ।

କୃଷ୍ଣପକ୍ଷର ଅଷ୍ଟମୀଚନ୍ଦ୍ର ଆକାଶରେ ବୁଲିଦେଉଛି ତା'ର ଶୁଭ୍ରସ୍ପନ୍ଦନ । ଶାଳବଣର ପତ୍ରରାଜିର ଦେଇ ଝରିପଡ଼ୁଛି ଚନ୍ଦ୍ରର ଧବଳ କିରଣ । ସେଇ ଆଲୁଅ ଅନ୍ଧାରର ଲୁଚକାଳି ମଧ୍ୟରେ ଆନା ଲକ୍ଷ୍ୟକରି ଦେଖିଲା—ଗୋଟାଏ କ୍ଷୁଧିତ ବାଘ ଭଳି ତା'ର ଆଡ଼କୁ ଆଗେଇଆସୁଛି ଫଲ୍‌ମନ୍ । ମୁହଁଟା ତା'ର ବନ୍ୟ ରଙ୍ଗରେ ଦୃପ୍ତ । ସେ ଗାଡ଼ି ପାଖକୁ ଆସି କବାଟଟିକୁ ଖୋଲିବା ଆଗରୁ ଗାଡ଼ିଭିତରୁ ହାତରେ ବନ୍ଧୁକ ଧରି ଡେଇଁପଡ଼ିଲା ଆନା —"ଖବରଦାର ?" ଚିତ୍କାର କରିଉଠିଲା ଶକୁନ୍ତ ସ୍ୱରରେ ବନ୍ଧୁକଟାକୁ ଚମକାଇଦେଇ ଆନା—ସେଇଠି ହାତ ଉପରକୁ ଟେକି ଛିଡ଼ାହୁଅ । ଗୋଟେ ପାହୁଣ୍ଡ ଆଗେଇ ଆସିଲେ ମୃତ୍ୟୁ ନିଶ୍ଚିତ ।"

ଫଲ୍‌ମନ୍‌ର ଗୁଣ୍ଡିକୁ ଲକ୍ଷ୍ୟକରି ବନ୍ଧୁକ ଟେକି ଧରି ଛିଡ଼ା ହୋଇଗଲା ଆନା । ସାମନାରେ ଯମଦୂତ ସଦୃଶ ଆନାକୁ ଦେଖି ଅବାକ୍ ହୋଇଗଲା ଫଲ୍‌ମନ୍ । ଜୀବନରେ ସେ ଏପରି ମାତ୍ ଖାଇନଥିଲା କେବେହେଲେ ଜଣେ ସାମାନ୍ୟ ନାରୀ ପାଖରେ । ଜୀବନରେ ସେ ଏପରି ଅସହାୟତା କେବେହେଲେ ବୋଧକରିନଥିଲା । ସାପର ମେରୁଦଣ୍ଡରେ ଶକ୍ତ ଗୋଟିଏ ପାହାର ବସିଲେ ସେ ଯେପରି ପଳାଇବାକୁ ଶତଚେଷ୍ଟା କରି ମଧ୍ୟ ପାଦେହେଲେ ଆଗେଇପାରେନା, ଠିକ୍ ସେହି ଅବସ୍ଥାର ସମ୍ମୁଖୀନ ହୋଇପଡ଼ିଲା ଫଲ୍‌ମନ୍ ।

ମୁଖମଣ୍ଡଳରେ କ୍ରୂର ତଥା କୁଟିଳ ହାସ୍ୟରେଖା ଖେଳାଇ କହିଲା ଆନା—"ତୁମ ପାଖରେ ବନ୍ଧୁକ ଅଛି ?"

"ହଁ···ଗାଡ଼ି ଭିତରେ ଅଛି ।"

ଆନା ଗାଡ଼ି ଭିତରୁ ଫଲ୍‌ମନ୍‌ର ବନ୍ଧୁକଟି ବାହାରକରିଆଣି ସେଥିରେ ଗୋଟିଏ ମାତ୍ର ଗୁଳି ରଖି ଅବଶିଷ୍ଟ ଗୁଳି କାଢ଼ିଦେଲା । ବନ୍ଧୁକଟିକୁ ଫଲ୍‌ମନ୍ ହାତକୁ ବଢ଼ାଇ

ଦେଇ କହିଲା ଆନା—"ତୁମକୁ ପଶୁ ପରି ମୁଁ ମାରିବାକୁ ଚାହେଁ ନା ଫଲ୍‌ମନ୍ ! ତୁମେ ଅସ୍ତ୍ରହୀନ ଏବଂ ଅଶ୍ୱହୀନ ମଧ୍ୟ । କିନ୍ତୁ ମୁଁ ଜାଣେ, ତୁମର ଲକ୍ଷ୍ୟ ଅବ୍ୟର୍ଥ । ତେଣୁ ଆଜି ଆମ ମଧ୍ୟରେ ପରୀକ୍ଷାଟିଏ ହୋଇଯାଉ । ଏଇ ନିବିଡ଼ ଅନ୍ଧକାର ଭିତରେ ମୁଁ ଦୂରେଇ ଯାଇ ଶବ୍ଦ କରୁଛି । ସେଇ ଶବ୍ଦକୁ ଶୁଣି ତୁମେ ମୋ' ଉପରକୁ ଗୁଳି ଚଳାଅ; ଆଉ ଠିକ୍ ସେହିପରି ମୁଁ ତୁମର ପାଟି ଶୁଣି ତୁମ ଉପରକୁ ଗୁଳି ଚଳାଇବି । ଆମର ଏଇ ପରୀକ୍ଷା ହେବ ଜୀବନର ଏକ ଘୋର ପରୀକ୍ଷା । ଯାହା ମାଆ ଚଣ୍ଡୀଦେବୀ ପୂଜିଥିବ ସେଇ କେବଳ ଏ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଯିବ ।"

କ୍ଷଣକ ମଧ୍ୟରେ ଆନା ଅନ୍ଧକାର ମଧ୍ୟରେ ଆତ୍ମଗୋପନ କରି ପାଟିକରିଉଠିଲା—"ମୁଁ ଏଇଠି ଅଛି ଭଲ କରି ଶୁଣ···ଆନା···ଆନା···ଆନ ?"

ମୁହୂର୍ତ୍ତକ ମଧ୍ୟରେ ଫଲ୍‌ମନ୍‌ର ବନ୍ଧୁକ ଗର୍ଜିଉଠିଲା ଶାଳବନର ନିବିଡ଼ ନିସ୍ତବ୍ଧତା ଭଙ୍ଗକରି ଗୁଡ଼୍‌ମ୍···। ଦୂର ପାହାଡ଼ ଆଉ ନିବିଡ଼ ଅରଣ୍ୟାନୀ ମଧ୍ୟରୁ ତା'ର ପ୍ରତିଧ୍ୱନି ଶୁଣାଗଲେ । ଷଟକୋଳ ଦମ୍ଭୁ ଶ୍ରୁ ନିସ୍ତବ୍ଧ···

"ଏଥର ମୋର ପାଳି ଫଲ୍‌ମନ୍···।" ଜୋର୍‌ରେ କହିଉଠିଲା ଆନା ।

"ଟିକିଏ ଅପେକ୍ଷା କର ।"—ଫଲ୍‌ମନ୍ ଶାଳଗଛର ସାମ୍‌ନାରେ ନିଜ ଘୋଡ଼ାଟିକୁ ଛିଡ଼ା କରେଇ ଗଛର ଅନ୍ତରାଳରେ ଆତ୍ମଗୋପନ କରି କହିଲା—"ମୁଁ ପ୍ରସ୍ତୁତ ଆନା···"

ସେଇ ମୁହୂର୍ତ୍ତରେ ଗର୍ଜିଉଠିଲା ଆନାର ଗୁଳିଭର୍ତ୍ତି ବନ୍ଧୁକ । ହଠାତ୍ ଧଡ଼ାସ କରି ଏକ ଶବ୍ଦ ହେଲା ଏବଂ ତା'ପରେ ଛଟପଟି ହେବାର ଶବ୍ଦ ଓ ଘୋଡ଼ାର ଆର୍ତ୍ତ ହ୍ରେଷାରବ ।

ଆନା କାଳ ବିଳମ୍ବ ନକରି ଆଗେଇଗଲା ଫଲ୍‌ମନ୍‌ର ଗାଡ଼ ନିକଟକୁ । ସେ ଜାଣେ ଫଲ୍‌ମନ୍‌ର ବନ୍ଧୁକରେ ଆଉ ଗୁଳି ନାହିଁ, ତଥାପି ଆହତ ଫଲ୍‌ମନ୍ ଭୀଷଣ ମାରାତ୍ମକ । ସେ ସାବଧାନତାର ସହିତ ବନ୍ଧୁକର ଟ୍ରିଗର୍‌ରେ ହାତ ରଖି ଆଗେଇ ଯାଇ ଦେଖିଲା—କେବଳ ଘୋଡ଼ାଟା ମାଟି କାମୁଡ଼ି ଗୁଳିକାତ ମେଲାଇ ପଡ଼ିଛି, ଆଉ ଫଲ୍‌ମନ୍ ପ୍ରାଣ ବିକଳରେ ସେଠାରୁ ଉଭାନ ହୋଇଯାଇଛି ।

ଖିଲ୍ ଖିଲ୍ ହୋଇ ହସି ହସି କହିଲା ଆନା—"ଭୀରୁ କାପୁରୁଷ, ଘୋଡ଼ାଟିଏ ବଳି-ଦେଇ ଅନ୍ଧକାରରେ ଆତ୍ମଗୋପନ କରି ପଳାଇଗଲା ପ୍ରାଣଘେନି ।"

ସେଇ ସାନ୍ଦ୍ର ନିବିଡ଼ ଅନ୍ଧକାର ଭେଦକରି ଫଲ୍‌ମନ୍‌ର ଗାଡରେ ଫେରିଆସିଲା ଆନା । ଗାଡ଼ିଟିକୁ ଗୋଟିଏ ନିର୍ଦ୍ଦିଷ୍ଟ ରାସ୍ତାରେ ଛୁଟାଇଦେଇ ପାଦରେ ଗୁଳି ଗୁଳି କ୍ଷତପକ୍ଷ ଚଢ଼େଇଟି ପରି ଡେଇଁ ଡେଇଁ ଉପରକୁ ଉଠିଗଲା ସେ । ବାରଣ୍ଡାରେ ସେତିକବେଳକୁ ଦରମରା ହୋଇ ଏକଲୟରେ ବାହାରକୁ ଅନାଇ ଛିଡ଼ା ହୋଇଥିଲା ମୈତ୍ରେୟୀ । ଆନାର ରୁଦ୍ରମୂର୍ତ୍ତି ଦୂରରୁ ଦେଖିପକାଇ, ବିଜୁଳି ବେଗରେ ଧାଇଁଆସି ସେ ପାହାଚ ଉପରେ କୁଣ୍ଢାଇ ପକାଇଲା ଆନାକୁ । ଆଖିରୁ ଲୁହର ବନ୍ୟା ଛୁଟାଇ କହିଲା ମୈତ୍ରେୟୀ—"ଦିଦି, ତୁମର କିଛି ହୋଇନି ତ···?"

ବାରନ୍ଦାର କ୍ଷୀଣ ଆଲୋକରେ ମୈତ୍ରେୟୀର ବାହୁବନ୍ଧନରେ ଆବଦ୍ଧ ହୋଇ ବିଜୟ-ଦୃପ୍ତ କଣ୍ଠରେ କହିଲା ଆନା—"ମୋ' ଉପରେ କଷ୍ଟ ହୋଇଛି, ତୁ ବ୍ୟସ୍ତ ହ'ନା । କାପୁରୁଷଟା ଅଳ୍ପ ପୁଣି ବଞ୍ଚିଗଲା କେବଳ ଗୋଟିଏ ଘୋଡ଼ାର ବଳମସ୍ତରେ । ନୋହିଲେ ଧରଣୀମାତା ଅଳ୍ପ ତା'ର ଶେଷ ରକ୍ତବିନ୍ଦୁ ପାନ କରି ଆଶ୍ୱସ୍ତ ହୋଇଥାଆନ୍ତେ । ଆଉ କେବେହେଲେ ସେ ମୋ' ସହିତ ସାମ୍‌ନାସାମ୍‌ନି ଟକ୍କର ଦେବାକୁ ସାହସ କରିବ ନାହିଁ ।"

( କୋଡ଼ିଏ )

ସେଦିନର ଅପ୍ରତ୍ୟାଶିତ ଅବସ୍ଥାରେ ପଳାଇଯାଇ ଆତ୍ମରକ୍ଷା କରିବା ପରେ ଫଲ୍‌ମନ୍ ଅତିଶୟ କ୍ରୂର ତଥା ପ୍ରତିଶୋଧପରାୟଣ ହୋଇଉଠିଲା । ଯାହାକୁ ଦିନେ ସେ ପ୍ରତିଦ୍ୱନ୍ଦ୍ୱୀ ରୂପେ ପାଇବାର ଆଶା କରିଥିଲା, ତା'ରିଠାରୁ ତୀବ୍ର ଅପମାନ ପାଇ ସହିପାରନ୍ତା ସେ କିପରି ? ଆନା ବାରମ୍ବାର ତା' ମୁହଁରୁ ଛଡ଼ାଇନେଇଛି ଗୋଟିକ ପରେ ଗୋଟିଏ ଶିକାର । ସେ ଏଇ କଥା ଚିନ୍ତାକରି କ୍ଷିପ୍ତ ହୋଇ ଶପଥକରି କହିଲା ପ୍ରତିଶୋଧ ନେବାକୁ ହେବ··· ଅପମାନର ଚରମ ପ୍ରତିଶୋଧ···"

ଏହାପରେ ଓ'ଡ଼ନ୍ ସାହେବଙ୍କ ନୀଳକୋଠି ଭିତରେ ମନ୍ତ୍ରଣା ଆରମ୍ଭ କରିଦେଲା ଫଲ୍‌ମନ୍ ରାଜା ଦୁର୍ଲଭରାୟଙ୍କ ସହିତ । ସେ ଭଲଭାବରେ ଜାଣିଥିଲା—ସ୍ୱର୍ଣ୍ଣଗଡ଼ର ଜମିଦାରଙ୍କ ସହିତ ଓ'ଡ଼ନ୍ ସାହେବଙ୍କର ସମ୍ପର୍କ ବିଷୟ ।

ରାଜା ଦୁର୍ଲଭ ରାୟ ମଧ୍ୟ ପ୍ରତିଶୋଧ ନେବାପାଇଁ ଗୋଟିଏ ସୁବର୍ଣ୍ଣସୁଯୋଗର ଅପେକ୍ଷାରେ ରହିଥିଲେ । ଫଲ୍‌ମନ୍‌ର ଅଯାଚିତ ବନ୍ଧୁତା ତାଙ୍କର ଉଦ୍‌ବେଗକୁ ଅଧିକ ତୀବ୍ରତର କରିଦେଲା । ଦୁର୍ଲଭରାୟ ଫଲ୍‌ମନ୍ ପରି ଏକ ଚକ୍ରାନ୍ତକାରୀର ସହଯୋଗିତାରେ ଆପ୍ୟାୟିତ ହୋଇଉଠିଲେ । ସେ ମନେ ମନେ ଭାବିଲେ—ଏଥର ମେଷ୍ଟଡ଼ୀ ଗୋରା ଟୋକାଟାକୁ ଜବଦ୍ କରିବା ଖୁବ୍ ସହଜ ହେବ । ଫଲ୍‌ମନ୍ ଆନାର ସମସ୍ତ ଗୁମର କଥା ଖୋଲିଦେଲା ଦୁର୍ଲଭରାୟଙ୍କ ଆଗରେ । କିନ୍ତୁ ସେ ଜାଣିଶୁଣି ମୈତ୍ରେୟୀର କାହାଣୀଟି ଗୋପନ କରି ରଖିଲା । କାରଣ ସେ ଜାଣିଥିଲା, ମୈତ୍ରେୟୀର କାହାଣୀ ସହିତ ଜଡ଼ିତ ହୋଇ ରହିଛି ରାୟବଂଶର ମାନମର୍ଯ୍ୟାଦା ଓ ବଂଶର ଗୌରବ ତଥା ପୂର୍ବପୁରୁଷଙ୍କ ମାନମର୍ଯ୍ୟାଦାର ସୁରକ୍ଷା ପାଇଁ ଭାରତୀୟମାନେ ସର୍ବଦା କ୍ଷମାହୀନ ।

ଉଭୟ ଦୁର୍ଲଭ ରାୟ ଓ ଫଲମନ୍‌ର ଚକ୍ରାନ୍ତରେ ଚାଲିଲା ଟଙ୍କାର ଖେଳ ଆଉ ମିଥ୍ୟା ପ୍ରବଞ୍ଚନାର ସୁଚିନ୍ତିତ ଯୋଜନା । ରାତାରାତି ସୁବର୍ଣ୍ଣଗଡ଼ର ଅତ୍ୟାଚାରୀ ଜମିଦାର ଓ ନୀଳକୋଠିର ମାଲିକ ଦୁର୍ଦ୍ଦାନ୍ତ ଦସ୍ୟୁ ଫଲ୍‌ମନ୍ ସାଜିଗଲେ ଦେବାଧିଦେବ ଇନ୍ଦ୍ର । ଦାନ

ଖଇବାଢରେ ପ୍ରଜାମାନେ ଆପଣାର ହୋଇଉଠିଲେ । ସେ ବର୍ଷ ହଠାତ୍ ପରାମର୍ଶ କରି ଘୋଷଣା କରିଦେଲେ—ପ୍ରଜାମାନେ ଅର୍ଦ୍ଧେକ ଜମିରେ ନୀଳଚାଷ ଓ ଅବଶିଷ୍ଟ ଜମିରେ ଧାନଚାଷ କରିପାରନ୍ତି ।

ଏ ଘୋଷଣାନାମାଟି ଚାରିଆଡ଼େ ପ୍ରଚାରିତ ହୋଇଗଲା । ଗାଁବାଗୁଳୁବା ମଳିମୁଣ୍ଡିଆ ଚାଷୀମାନେ ଏତେ ଫନ୍ଦିଫିକର ଜାଣିବେ ବା କେଉଁଠୁ ? ଘୋଷଣାନାମାର ପ୍ରଥମ ଉଦ୍ଦେଶ୍ୟ ଥିଲା ବାକିଲା ଅନାଦ ଜମିଦାରୀରେ । ସେ ପ୍ରଚାରର ତାହାହିଁ ଥିଲା ଉଦ୍ଦେଶ୍ୟ ।

ଦିନେ ନାଏବ ଆସି ନମସ୍କାର ଜଣାଇ କହିଲା—"ମେମ୍‌ସାବ, ପ୍ରଜାମାନେ ସବୁ ଜମିରେ ନୀଳଚାଷ କରିବାକୁ ଚାହୁଁନାହାନ୍ତି ।"

ଅନା ସବୁଓ ଏ ଖବର ଆଗରୁ ପାଇସାରିଥିଲା, ତଥାପି ପଚାରିଲା—"କାହିଁକି ? କ'ଣ ହୋଇଛି କି ?"

"ସୁବର୍ଣ୍ଣଗଡ଼ର ଜମିଦାର ଅଜୟ ଫିଲ୍‌ମନ୍‌ଙ୍କ ପକ୍ଷରୁ ପ୍ରଚାର କରାଯାଉଛି ଯେ, ସରକାର ବାହାଦୁର ଅଧେ ଜମିରେ ନୀଳଚାଷ ଓ ଅଧେ ଜମିରେ ଧାନଚାଷ କରିବା ଲାଗି ହୁକୁମ୍ ଜାରି କରିଛନ୍ତି ।"

"ପ୍ରଜାମାନେ କଣ ଏ ମିଥ୍ୟା ପ୍ରଚାରକୁ ବିଶ୍ୱାସ କରୁଛନ୍ତି ?" କହିଲା ଅନା "ହୁଁ··· ସେମାନଙ୍କର ବା ଦୋଷ କ'ଣ ?"

"ସେମାନେ ନିର୍ବୋଧ ତଥା ମୂର୍ଖ ମେମ୍‌ସା'ବ ! ସେମାନେ କ'ଣ ଏତେ ଫନ୍ଦିଫିକର ବୁଝନ୍ତି ? ତା' ବ୍ୟତୀତ ସ୍ୱାର୍ଥର ବନ୍ଧନରେ କିଏ ବା ବନ୍ଦୀ ନୁହେଁ ?" କହିଲେ ନାଏବ ।

"ଅଚ୍ଛା, ନାଏବବାବୁ ! ଆମ ଚାଷୀମାନଙ୍କର ମୁଖିଆ ସେଇ ଗୋଲକ ମୂର୍ଖ ତ ?"

"ହୁଁ···ମେମ୍‌ସା'ବ୍ ।" ଉତ୍ତରଦେଲେ ନାଏବ ।

"ତାକୁ ଟିକିଏ ଡକାଇଆଣି ମୋ ସହିତ ଦେଖା କରିବାକୁ କହନ୍ତୁ ତ ।"

ଅନାର ଆଦେଶ ଶୁଣି ନାଏବ ସମ୍ମତିସୂଚକ ଇଙ୍ଗିତ ଦେଇ ଚାଲିଯିବା ମାତ୍ରେ, ପୁଣି ପଛରୁ ଡାକି କହିଲା ଅନା—"ଅଚ୍ଛା, ନାଏବବାବୁ ! ଆମ ପାଖରେ ଏବେ କେତେଜଣ ଲଠିଆଲ ଅଛନ୍ତି କହିଲେ·· ?"

"ସବୁରି ଅଶୀଜଣ ଅଛନ୍ତି···" ଉତ୍ତରଦେଲେ ନାଏବ ।

"ଆଉ କିଛି ସଂଗ୍ରହ କରନ୍ତୁ—ବେଶ୍ ଦରକାରରେ ଆସିବ"—କହିଲା ଅନା ।

ମାଲିକାଣୀ ଅନାର ନିର୍ଦ୍ଦେଶରେ ପ୍ରଥମେ ଅବାକ୍ ହୋଇଗଲେ ନାଏବବାବୁ । ତା' ପରେ ସେ ତଳକୁ ମୁହଁ ପୋତି କହିଲେ—"ଆଜି ଆପଣଙ୍କ ମୁହଁରୁ ଏ ବିଚିତ୍ର କଥା ଶୁଣି କିଛି କହିବାକୁ ଅନୁମତି ମାଗୁଛି ।"

"କୁହନ୍ତୁ···" ନାଏବଙ୍କ କହିବାର ବିଷୟ ମନେ ମନେ ଅନୁମାନ କରି କହିଲା ଅନା ।

ନାଏବବାବୁ ତଳକୁ ମୁହଁ ପୋତି ମୁଣ୍ଡ କୁଣ୍ଡାଇହୋଇ ଧୀର ସ୍ୱରରେ କହିଲେ—"ମେମ୍‌ସା'ବ, ଆପଣଙ୍କ ଶ୍ରଦ୍ଧେୟ ପିତାଙ୍କ ସମୟରୁ ଆରମ୍ଭକରି ଆଜି ପର୍ଯ୍ୟନ୍ତ ଏ ନୀଳ-

କୋଠିର ଯାବତୀୟ ହାନିଲାଭ ମୋ ଉପରେ ନ୍ୟସ୍ତ କରାଯାଇଛି । ଆଜି ଏହି ଅଞ୍ଚଳ ମଧ୍ୟରେ ଓ୍ୱିଲ୍‌ସନ୍ ସାହେବଙ୍କ କୋଠିର ସୁନାମ ଚାରିଆଡ଼େ ବ୍ୟାପିଯାଇଛି । ଆମ କୋଠିରେ ଲାଠିଆଳ ତଥା ବନ୍ଧୁକଧାରୀ ସିପାହି ଅଛନ୍ତି ସତ—କିନ୍ତୁ ସେମାନେ କେବଳ ନାମକୁମାତ୍ର ରହିଛନ୍ତି । ସେମାନେ ଦିନେହେଲେ ପ୍ରଜାମାନଙ୍କ ବିରୁଦ୍ଧରେ ଲଢ଼ିନାହାନ୍ତି । ଏତେଦିନ ପରେ ଯଦି ଆମେ ଗୋଟିଏ ଦାଙ୍ଗାଫିସାଦ କରିବସିବା, ତା'ହେଲେ ସେଇଟା ଆପଣଙ୍କ ସୁନାମରେ ଅଞ୍ଚ ଆଣିବ ନାହିଁ କି ? ସେପରି କରିବା କ'ଣ ଉଚିତ ହେବ ବୋଲି ଆପଣ ମନେକରୁଛନ୍ତି ?"

ନାଏବ୍‌ଙ୍କ କଥାଶୁଣି ମନେ ମନେ ହସିଥିଲେ ହେଁ ଉପରେ ରାଗିଯାଇ ଆନା କହିଲା—"ଆପଣ କିଛି ମନେକରିବେନି ନାଏବ୍‌ବାବୁ । ଲୋକେ କହନ୍ତି ବୁଢ଼ା ହେଲେ ବୁଦ୍ଧି ପାକଳ ହୋଇଥାଏବୋଲି; କିନ୍ତୁ ଆପଣଙ୍କ କ୍ଷେତ୍ରରେ ତାହା ଖାଟିବ ନାହିଁ ।"

ବହୁଦିନର ପୁରୁଣା କର୍ମଚାରୀ ନାଏବବାବୁ ବିନମ୍ରର ସହିତ ପୁଣି କହିଲା—"ଗାଈକୁ ପିଟିଲେ ସେ ସେ ବେଶୀ କ୍ଷୀର ଦେବ ଏହା ମୁଁ ଆଦୌ ଭାବିପାରୁନାହିଁ । ମୋ' ବିଚାରରେ ତାକୁ ଯଥେଷ୍ଟ ଖାଇବାକୁ ଦେଲେ ସେ ଆମକୁ ଅମୃତ ଖୁଆଇବ ଏହି ନୀତି ଆମେ ଏ' କୋଠି ଆରମ୍ଭ ହେବା ଦିନରୁ କାର୍ଯ୍ୟରେ ପରିଣତ କରିଆସିଥାଉଁ । ତା'ର ଫଳରେ ସମଗ୍ର ଇଲାକାରେ ଆମ କୋଠିର ନାଁଡାକ ରହିଛି ।"

ଆନା ନାଏବ୍‌ବାବୁଙ୍କ ଉତ୍ତର ଶୁଣି ସଙ୍ଗେ ସଙ୍ଗେ କିଛି ନ କହି ଟିକିଏ ନୀରବ ରହିବା ପରେ କହିଲା—"ମୁଁ କ'ଣ କରିବାକୁ ଯାଉଛି ଆପଣ ତାକୁ ଠିକ୍ ଭାବରେ ଅନୁମାନ କରି ପାରିନାହାନ୍ତି ।"

ଆନାର ଉତ୍ତରରେ ନାଏବବାବୁ କେବଳ ଅସହାୟ ଭାବରେ ତା' ମୁହଁକୁ ଅବାକ୍ ହୋଇ ଚାହିଁରହିଲେ ।

ତା'ପରେ କହିଲା ଆନା—"ନାଏବବାବୁ, ମୁଁ ଯେଉଁ ଯେଉଁ ଲଢ଼େଇ ବିଷୟରେ ଯୋଜନା କରୁଛି, ତାହା ଆମର ନିରୀହ ପ୍ରଜାମାନଙ୍କ ବିରୁଦ୍ଧରେ ନୁହେଁ; ବରଂ ଯେଉଁମାନେ ଆମ ପ୍ରଜାଙ୍କୁ ମିଥ୍ୟା ପ୍ରତିଶ୍ରୁତି ଶୁଣାଇ ଉତ୍ତେଜିତ କରୁଛନ୍ତି, ସେଇମାନଙ୍କ ବିରୁଦ୍ଧରେ ଆମର ହାତାହାତି ହେବ । ଆମ ସୁନାମରେ ଯେଉଁମାନେ ଅଞ୍ଚ ଆଣିବାକୁ ଯାଉଛନ୍ତି, ସେଇମାନଙ୍କ ବିରୁଦ୍ଧରେ ଏଇ ଆୟୋଜନ । ବୁଝିପାରିଲେ ତ ଆପଣ ?"

ନାଏବବାବୁ ମନେ ମନେ ଆନନ୍ଦରେ କୁଲୁରିଉଠି କହିଲେ—"ତା'ହେଲେ ଆଜିଠାରୁ ମୁଁ ସେଇ ଯୋଗାଡ଼ରେ ଲାଗି ପଡ଼ୁଛି ।" ଏତିକି କହି ନାଏବ୍‌ବାବୁ ଚାଲିଯିବାକୁ ଉଦ୍ୟତ ହୁଅନ୍ତେ ପୁଣି ପଛରୁ ଡାକି କହିଲା ଆନା—"ହଁ, ଦେଖନ୍ତୁ; ଗୋଲକ ମୁର୍ମୁଙ୍କୁ ଶୀଘ୍ର ଖବରଦେଇ ମୋ' ପାଖକୁ ପଠାଇଦେବେ ।"

ଗାଁ' ମୁଖିଆ ଗୋଲକ ମୁର୍ମୁ ଠିକ୍ ଉଦୁଉଦିଆ ଦି'ପହର ବେଳେ ଆସି ହାଜର ହୋଇଗଲା । ସେ ମୁଣ୍ଡରୁ ଗାମୁଛାଟି ଫିଟାଇ ମୁହଁ ହାତରୁ ଝାଳ ପୋଛିବା ପରେ ଆନାକୁ ହାତଯୋଡ଼ି ନମସ୍କାର କରି କହିଲା—"ଖୁବ୍ ଗରମ ପଡ଼ୁଛି ଏଥର ମେମ୍‌ସା'ବ !"

"ମୁର୍ମୁ, ଘରେ ତୁମର ଟୁଅପିଲା ଭଲରେ ଅଛନ୍ତି ତ ?"

"ଆପଣଙ୍କ ଦୟାରୁ ସମସ୍ତେ କୁଶଳରେ ଅଛନ୍ତି...।"

"ହମିଦ୍ କପରି କାମଧନ୍ଦା କରୁଛି ?"

ଆନାର ପ୍ରଶ୍ନ ଶୁଣି ଗୋଲକ ଟିକଏ ଗମ୍ଭୀର ହୋଇ କହିଲା—"ଆଜିକାଲି ଦେଖୁଛି ତା'ର ମଗଜଟା ଟିକଏ ବିଗିଡ଼ି ଗଲା ପରି ଲାଗୁଛି ।"

"କାରଣ...?" ଆଶ୍ଚର୍ଯ୍ୟ ହୋଇଗଲା ପରି ପଚାରିଲା ଆନା । "ସେ ପ୍ରଜାମାନଙ୍କୁ କାନେ କାନେ ଶିଖାଉଛି—ତୁମେ ଆଉ ନୀଳଚାଷ କରନି; ସରକାର ବାହାଦୂର୍ ଧାନ ଚାଷ କରିବାକୁ ହୁକୁମ ଦେଇଛନ୍ତି । ତେଣୁ କେତେକ ଚାଷୀ ତା'ର କଥାରେ ମାତି ଉଠି ଧାନ ବୁଣିବାକୁ ମନେ ମନେ ଠିକ୍ କରିଛନ୍ତି ।" ଅତି ନମ୍ର ଅଥଚ ବିଶ୍ୱସ୍ତ ଭାବରେ କହିଲା ଗୋଲେକ ମୁର୍ମୁ । "ଆମ ଇଲାକାରେ ଏମିତି କେତେ ଜଣ ଚାଷୀ ବାହାରିବେ ?" ପଚାରିଲା ଆନା । "ଏ' ଯାଏଁ ଅଧାଅଧି ଅବଶ୍ୟ ହୋଇନାହାନ୍ତି; କିନ୍ତୁ ଦିନକୁଦିନ ସେମାନଙ୍କ ସଂଖ୍ୟା ବଢ଼ିଚାଲିଛି ।"—କହିଲା ମୁର୍ମୁ ।

ଆନା ଗୋଲେକ ମୁର୍ମୁର ଉତ୍ତର ଶୁଣି କଥାର ଧାରା ବଦଳାଇଦେଇ କହିଲା—"ମୁର୍ମୁ, ତୋର ମନେଅଛି—ଯେଉଁଦିନ ତୋତେ ବାପା ସର୍ଗୁସନ୍‌ର କୋଠିରୁ ଖଲାସ କରି ଆଣିଥିଲେ, ତୋର ସମସ୍ତ ଋଣ ପରିଶୋଧ କରି..."

ଗୋଲେକ ମୁର୍ମୁ ଦୁ'ହାତ ଯୋଡ଼ି ମୁଣ୍ଡରେ ଲଗାଇ, ଉପରକୁ ଅନାଇ ଧର୍ମକୁ ସାକ୍ଷୀ ଦେଲାପରି କହିଲା—"ସାହେବ ସାକ୍ଷାତ୍ ଭଗବାନ୍ ମେମ୍ ସା'ବ ! ସାତଜନ୍ମ ତାଙ୍କ ବଂଶର ସେବା କଲେ ବି ମୁଁ ସେ ଋଣରୁ ମୁକ୍ତ ପାଇପାରିବିନାହିଁ..."

"ତା'ହେଲେ ତୁ ହମିଦର ହଙ୍ଗାମା ସହିଯାଉଛୁ କପରି ? ତୁ କ'ଣ ଜାଣିନୁ ଯେ, ହମିଦ୍‌ଟା ବେଇମାନ୍ । ସେ ଦୁର୍ଲଭ ରାୟଙ୍କଠାରୁ ହାତଗୁଞ୍ଜା ଟଙ୍କା ପାଇ ଆମ ନିରୀହ ପ୍ରଜାମାନଙ୍କୁ ମିଛଟାରେ ମତାଇଚାଲିଛି..."

"ମୁଁ ତ ସେଇଆ ଅନୁମାନ କରିଛି ମେମ୍ ସା'ବ !"

ଆନା ଗୋଲକ ମୁର୍ମୁକୁ ଆକାଶକୁ ଟେକିଦେଲା ପରି କହିଲା—"ମୁର୍ମୁ, ମୁଁ ଜାଣେ, ଏଇ ବୁଢ଼ା ବୟସରେ ବି ତୁ ଠେଙ୍ଗା ଖଣ୍ଡେ ଧରିବୁ' ତେବେ ପାଞ୍ଚଶହ ଜୁଆନ୍‌କୁ ଘାଉଲା କରିଦେଇପାରିବୁ । ମୁଁ ଏଇଲେ ତୋ'ର ସାହାଯ୍ୟ ଚାହୁଁଛି—କ'ଣ ମତେ ସାହାଯ୍ୟ କରିବୁ ତ ? କ'ଣ କହୁଛୁ, ସତ ସତ କରି କହ ।"

"ପ୍ରାଣବଳି ଦେଇ ଅପଣଙ୍କ ପାଇଁ ଲଢ଼ିବି ମେମ୍ ସା'ବ । ମୁଁ ନିମକ୍ ହାରାମ୍ ନୁହେଁ ।"

"ହଁ, ଶୁଣ୍"—କହିଲା ଆନା—"ତା' ଆଗରୁ ତୋତେ ଆଉ ଗୋଟିଏ କାମ କରିବାକୁ ପଡ଼ିବ ।"

ଆନା ଗୋଲକର ମନରେ ଆଗ୍ରହ ବଢ଼ାଇବା ପାଇଁ ଟିକଏ ମୌନ ରହିବା ପରେ କହିଲା—"ତୁ ପ୍ରତ୍ୟେକ ଚାଷୀଙ୍କ ଘରକୁ ଯାଇ ସେମାନଙ୍କୁ ଗୋପନରେ କହିବୁ ଯେ

ମେମ୍ ସାହେବ କହିଚନ୍ତି—କେବଳ ଏ' ବର୍ଷ ନୁହେଁ, ଏଣିକି ପ୍ରତିବର୍ଷ ତୁମେମାନେ ନୀଳଚାଷ ବଦଳରେ ଧାନଚାଷ କରିବ ।''

ଗୋଲକ ଚମକିଉଠିଲାପରି କହିଲା—''ଏ କ'ଣ ଶୁଣୁଛୁ ମା' ?''

''ମୂର୍ମୁ...'' ନିଜ କଥା ଉପରେ ଜୋର୍‌ଦେଇ କହିଲା ଆନା—''ଓଡ଼େନ୍ ସାହେବର ଚିଅ ଜୀବନରେ କେବେହେଲେ ମିଛକଥା କହିଶିଖିନି ।''

ଆନାର କଥା ଶୁଣି ଗୋଲକ ଆନନ୍ଦରେ ଅଧୀର ହୋଇଉଠିଲା । ତା' ଆଖିରୁ ଦି'ଟୋପା ଆନନ୍ଦାଶ୍ରୁ ଝରିପଡ଼ିଲା । ସ୍ତ୍ରୀଟା ତା'ର ଜୀବନ୍ତମୋଟ ହୋଇଗଲା ପରି ମନେହେଲା । ଏତେଦିନ ପରେ ନୀଳଚାଷରୁ ମୁକ୍ତିମିଳିବ, ଏ କଥା ସେ ସ୍ୱପ୍ନରେ ସୁଦ୍ଧା ଭାବିପାରିନଥିଲା । କିଛି ସମୟ ପରେ ମୂର୍ମୁ ପ୍ରକୃତିସ୍ଥ ହେବାରୁ କହିଲା ଆନା—''ମୂର୍ମୁ, ତୁ ଆମ ପ୍ରଜାମାନଙ୍କର ମୁଖିଆ । ତୋ' କଥାରେ ପ୍ରଜାମାନେ ନିଆଁକୁ ଡେଇଁପଡ଼ିବେ । ବର୍ତ୍ତମାନ ତୋତେ ଗୋଟିଏ ଶକ୍ତକାମ କରିବାକୁ ପଡ଼ିବ ।''

''କି କାମ ମା'...?'' ଆନନ୍ଦରେ ଉତ୍ସାହିତ ହୋଇ କହିଲା ଗୋଲକ ।

''ମୁଁ ଖବର ପାଇଲି, ସେମାନେ ଆଗାମୀ ରବିବାର ଆମ କୋଠି ଲୁଟ୍‌ପାଟ୍ କରିବାକୁ ଆସିବେ ।''

''ଏତେ ସାହସ...? ଆମେ ଆପଣଙ୍କ ପାଇଁ ଲଢ଼େଇ କରି ମୁଣ୍ଡ ବଳିଦେବୁ ମା' ।''

ଗୋଲକର କଥା ଶୁଣି ଖିଲ୍‌ଖିଲ୍ ହୋଇ ହସିଉଠିଲା ଆନା । ସେ ଗୋଲକର ପିଠି ଆପୁଡ଼େଇ ଦେଇ କହିଲା—''ସାବାସ୍ ମୂର୍ମୁ ! କିନ୍ତୁ କେବଳ ବୋକାଙ୍କ ପରି ମୁଣ୍ଡବଳି ଦେଲେ କ'ଣ ଚଳିବ ? ସେଥିପାଇଁ ବଳ ଅପେକ୍ଷା ବୁଦ୍ଧିର କସରତ୍ ବେଶି ଦରକାର ।'' ତା' ଛଡ଼ା, ସେମାନେ ବହୁଲୋକ ଆଣିବେ । ତେଣୁ ମୁଁ କହୁଛି—ବୁଦ୍ଧିବଳରେ ସେମାନଙ୍କୁ ମାତ୍ କରିବାକୁ ହେବ ।''

''ମୁଁ ଆପଣଙ୍କ ପାଇଁ ପ୍ରାଣବଳି ଦେବାକୁ ତିଆରିଅଛି; କିନ୍ତୁ ମୁଁ ଗୋଟାଏ ଅପାଠୁଆ ମୂର୍ଖଲୋକ । ମୋର ବା ଏତେ ବୁଦ୍ଧି ଆସିବ କୁଆଡ଼ୁ ?''

ଆନା ଓ ଗୋଲକ ମୂର୍ମୁ ମଧ୍ୟରେ ଅନେକ ସମୟ ପର୍ଯ୍ୟନ୍ତ ଗୋପନରେ ପରାମର୍ଶ ଚାଲିଲା । ଆଲୋଚନା ଶେଷରେ ଗୋଲକ ମୂର୍ମୁର ମୁହଁଟି ଆନନ୍ଦ ଓ ଉଲ୍ଲାସରେ ଉଲ୍ଲସି ଉଠିଲା ।

## ( ଏକୋଇଶ )

ରାତି ନାହିଁ ଦିନ ନାହିଁ ଝାଳନାଳ ହୋଇ ଘର ଘର ବୁଲିଲା ଗୋଲକ । ପ୍ରତ୍ୟେକ ଲୋକଙ୍କୁ ବୁଝାଇଦେଲା ସେ ତା'ର ଯୋଜନା । ସମସ୍ତେ ତା' ହାତମୁଠାକୁ ଆସିଯିବାପରେ, ଦିନେ ସଭିଁଙ୍କୁ ବସାଇ ଡକାଇଅଣିଲା ହମିଦ୍‌କୁ ।

ହମିଦ୍ ଆସି ପହଞ୍ଚିବା ମାତ୍ରେ ଦାଢ଼ିରେ ହାତ ବୁଲାଇ ପଚାରିଲା—"କହୋ ମୁଖିଆ ! ମୋତେ ଡକାଇଲ କାହିଁକି ?"

ଗୋଲକ ମୁର୍ମୁ ନିତାନ୍ତ ବୋକାଙ୍କ ପରି ହମିଦ୍ ମୁହଁକୁ ଅନେଇ କହିଲା—"ଭାଇ, ଆମେ ହେଲୁ ମୂର୍ଖମୁଷଣ୍ଡା ଲୋକ । ଧର୍ ବୋଲି କହିଲେ ବାନ୍ଧିପକାଉଛୁ । ହେଲେ, ବୁଦ୍ଧି କ'ଣ ରତିଏ ହେଲେ ଅଛି ଆମର ? ତୁମେ ହେଲ ବୁଦ୍ଧିଆ । ମଗଜ ଖଟେଇ କାମ କରିବା ତୁମର ଅଭ୍ୟାସ । ତୁମକୁ ନ ପଚାରି ହୁ···ଉ···କରି କିଛି ଗୋଟେ କରିଦେଲେ ଶେଷକୁ ଲୋକହସା ହେବାକୁ ପଡ଼ିବ । ସେଇଥିପାଇଁ ତୁମକୁ ଡାକିଲି···।"

ଗୋଲକର କଥା ସମସ୍ତେ ସମର୍ଥନ କଲା ପରି ମୁଣ୍ଡ ହଲାଇ ସମର୍ଥନ ଜଣାଇଲେ । ଆତ୍ମ-ପ୍ରଶଂସାରେ ହମିଦ୍‌ର ଛାତି କୁଣ୍ଢେମୋଟ ହୋଇଗଲା । ସେ ପୁଣି ଥରେ ତା' ଦାଢ଼ିରେ ହାତ ବୁଲାଇ କହିଲା—"ଅସଲ କଥାଟି ନ କହି ବୁଲେଇବାଲେଇ କହିଲେ ମୁଁ ଜାଣିବି କ'ଣ ?"

"ବୁଝିଲ ହମିଦ୍ ଭାଇ", କହିଲା ଗୋଲକ ମୁର୍ମୁ—"ଆମେ ସମସ୍ତେ ହଲପ୍ କରିଛୁ—ଆମେ ଆଉ ମାଲଗୁଜା କରିବୁନି । ଅଧାଅଧି ଗୁଜା ଗୋଟେ କ'ଣ ?"

"ମୁର୍ମୁର କଥା ଶୁଣି ହମିଦ୍‌ର ମୁଖମଣ୍ଡଳଟି ଆନନ୍ଦରେ ଉଲୁସି ଉଠିଲା । ତଥାପି ସେ ଏକଲୟରେ ଗୋଲକର ମୁହଁକୁ ଚାହିଁରହିଲା ।

ଗୋଲକ ଝଟଗ୍ରି ନିର୍ବିକାର ହୋଇ ବସିଥିଲା । ତା' ମୁହଁରେ ଛଳକପଟର ଲେଶମାତ୍ର ନଥିଲା । ତେଣୁ ହମିଦ୍ ତାକୁ ତିଳେହେଲେ ଅବିଶ୍ୱାସ କରିପାରିଲା ନାହିଁ । ସେ ଦାଢ଼ିକୁ ଆଉଁଷି ଆଉଁଷି କହିଲା—"ବୁଝିଲ ଗୋଲକଭାଇ, ଖିର ବାସି ହୋଇଗଲେ ସୁଆଦହୀନ ଲାଗେ । ମୁଁ କେତେଦିନରୁ ତୁମମାନଙ୍କୁ କହୁଛି—ଓଡ଼େନ୍ ସାହେବର ମାୟା ଛାଡ଼ । ବାହାରକୁ ମହାକାଳ ଫଳ କେଡ଼େ ସୁନ୍ଦର, କିନ୍ତୁ ଭିତରଟା ତା'ର ପୋଡ଼ା ଅଙ୍ଗାର···।"

ଗୋଲକ ହମିଦ୍‌କୁ ବେଶ୍ ଚକ୍‌ମା ଦେଇ କହିଲା—"ସେଇଥିପାଇଁ ତ ତୁମକୁ ଡକାଇଲୁ ହମିଦ୍‌ଭାଇ, ନଇଲେ ଏତେ ବୁଦ୍ଧି ଦେବ କିଏସେ ? ମୁଁ ଯାଇଥିଲି ସେ କୋଠିକୁ; କିନ୍ତୁ ମେମ୍‌ସାହେବ କହିଲା—ଯା'ର ଖୁସି ସେ ଯୁଆଡ଼େ ଚାଲିଯାଇପାର । ଆମ ଇଲାକାରେ ରହିଲେ କେବଳ ମାଲଗୁଜା କରିବାକୁ ହିଁ ପଡ଼ିବ ।"

ହମିଦ୍ ମିଆଁ ଗର୍ଜିଉଠି କହିଲା—"ତଥାପି ତୁମେମାନେ ମାଟି କାମୁଡ଼ି ପଡ଼ିଛ ? ଏ ଓଡ଼େନ୍ ସାହେବର ମାଲକୋଠିଟାକୁ ମୂଳରୁ ତାଡ଼ିନେଇ ସୁବର୍ଣ୍ଣରେଖାରେ ପକାଇ ଦେଇ-ପାରୁନ ?"

ସମସ୍ତେ ସମସ୍ୱରରେ ପାଟିକରିଉଠିଲେ—"ଠିକ୍ କହୁଛ, ଠିକ୍ କହୁଛ ହମିଦ୍ ଭାଇ···"

ହମିଦ୍‌ର ଛାତି କୁଣ୍ଢେମୋଟ ହୋଇଗଲା । ସେ ମନେ ମନେ ନିଜକୁ ଶହେଜଣ ଜୁଆନ୍ ବୋଲି ମନେକରି କହିଲା—"ଆଜି ଦଣ୍ଡିଦଣ୍ଡି ଅବେଳେ ମୁଁ ଆମ ଦଳର ବଛା-ବଛା ଜୁଆନ୍‌ମାନଙ୍କୁ ନେଇ ରାଜାସାହେବଙ୍କ ପାଖକୁ ଯାଉଛି । କାଲି ସକାଳୁ ଜବଲପୁର,

ଗୋପୀବଲ୍ଲଭପୁର, ଲେହାଡା ଅବ ଆଖପାଖ ଗାଆଁରୁ ବାଣ୍ଡୁଆ ଓ ଲଠିଆଲ ଆସି ପହଞ୍ଚିବେ । ତା'ପରେ ଆମେ ସମସ୍ତେ ମିଶି ପଦ୍ମନାଭନ ଓଡ଼େନ୍ ସାହେବର ନୀଳକୋଠି ଉପରେ ଝାମ୍ପି ପଡ଼ିବା—ଦେଖିବା ସେ ସାହେବାଣୀ ଟୋକାର ବହପ କେତେ ? ଏତେଦିନ ଧରି ସହିଆସିଲେ, ଆଉ ଏଣିକି ସହିହେବନି । ଏଥର କଡ଼ାଗଣ୍ଡା କରି ସବୁ ଅସୁଲ କରିନେବା ।''

ହମିଦ୍ କଥାରେ ସ୍ୱର ମିଳାଇ ସମସ୍ତେ ଗର୍ଜିଉଠିଲେ—''ଆମେ କଡ଼ାଗଣ୍ଡା ଅସୁଲ କରିନେବା··· ଆଉ ଆମେ ଗୋଟିଏ ହେଲେ କିଆରି ନୀଳଚାଷ କରିବା ନାହିଁ···।''

ସେହିଦିନ ରାତି ଅଧରେ ହମିଦ୍‌ର ବୋଲକରା ଲଠିଆଲମାନେ ଦଳ ଦଳ ହୋଇ ଚାଲିଲେ ହିରଣ୍ୟଗଡ଼କୁ । ତା' ଆଗରୁ ହମିଦ୍ ଯାଇ ଦୁର୍ଲ୍ଲଭ ରାୟଙ୍କୁ ଶୁଭ ଖବରଟା ଦେଇ, ମନପୁରାଇ ବକ୍‌ସିସ୍ ମାଗିଆଣିଥିଲା । ସମସ୍ତେ ଯାଇ ସୁବର୍ଣ୍ଣଗଡ଼ରେ ଏକଯୁଟ ହୋଇଗଲେ । ଫଲ୍‌ମନ୍ ଓ ଦୁର୍ଲ୍ଲଭ ରାୟ ଆପୋଷ ଆଲୋଚନା କରି ଗୋଲକ ମୁର୍ମୁଙ୍କୁ ଦଳର ନେତା ରୂପେ ମନୋନୀତ କରିଦେଲେ ।

ଦୁର୍ଲ୍ଲଭରାୟ ନିଜର କିଡାପଟ ନିଷ୍ଟିତ ବୋଲି ମନେକରି ହସି ହସି କହିଲେ ଫଲ୍‌ମନ୍‌କୁ—''ବୁଝିଲ ସାହେବ, ଅଣ୍ଡିରୁର ଡଣ୍ଡି କାଟେ । ଯେଉଁ ଲୋକ ଦୁଧ ପିଆଇ କଳାନାଗ ପୋଷେ, ଶେଷରେ ସେ ତା'ରି ଚୋଟରେ ପ୍ରାଣ ହରାଏ । ଗୋଲକ ମୁର୍ମୁଟା ସେଇ କଳା ନାଗବଛା···''

ଆକ୍ରମଣର ସମସ୍ତ ଆୟୋଜନ ଶେଷ ହୋଇଗଲା । ଠେଙ୍ଗା, ବାଡ଼ି, ତୀର, ଧନୁ ଓ ସବାଶେଷରେ ଅବଶ୍ୟକ ମତେ ବନ୍ଧୁକ ଯୋଗାଡ଼ ହୋଇଗଲା । ଆଲୋଚନାରେ ସ୍ଥିର ହେଲା—ପ୍ରଥମେ ବନ୍ଧୁକ ଚାଳନା କରାଯିବ ନାହିଁ । ଲଠିଆଲ ଓ ତୀରନ୍ଦାଜ ଦଳ ପ୍ରଥମେ ଆକ୍ରମଣ ଚଳାଇବେ । ଶେଷକୁ ଦରକାର ପଡ଼ିଲେ ବନ୍ଧୁକ ଚାଳନା କରାଯିବ ।

ଗୋଲକ ମୁର୍ମୁ ଅତ୍ୟନ୍ତ ବିଶ୍ୱାସପାତ୍ର ସାଜି କହିଲା—''ଶୁଣନ୍ତୁ ରାଜାବାହାଦୁର, ଆମ ଦଳର କେତେଜଣ ବଚ୍ଛାବଚ୍ଛା ଲଠିଆଲ ଓ ତୀରନ୍ଦାଜଙ୍କୁ ନେଇ ମୁଁ ପହିଲେ ନୀଳ କୋଠି ଉପରେ ଆକ୍ରମଣ ଚଳାଇ ଦେଉଛୁ । ଅବଶ୍ୟ ମୁଁ ଯାଇ ଓଡ଼େନ୍‌ସାହେବର ଝିଅକୁ ଖବର ଦେବି ଯେ, ଦଙ୍ଗାହେଙ୍ଗାମ୍ ହେବାର ଖବର ପାଇ ମୁଁ ଆଗରୁ କୋଠିର ସୁରକ୍ଷାପାଇଁ ଚାଲିଆସିଛି । ଏଇ ସୁଯୋଗରେ ମୁଁ କୋଠିର ସବୁ ଲଠିଆଲଙ୍କୁ ଅକ୍ତିଆର୍ କରିନେଇ ଯେତେବେଳେ ଲାଲ୍‌ପତାକା ଉଡ଼େଇ ଦେବି, ସେତେବେଳେ ଆପଣ ବୁଝିବେ—ସେଠାକାର ସମସ୍ତଙ୍କୁ ଆମେ ବାନ୍ଧିପକାଇଛୁଁ । ସେତିକିବେଳେ ଆପଣମାନେ ନଈ ପାରି ହୋଇ ତୀବ୍ରବେଗରେ ମାଡ଼ିଆସିବେ । ତା'ପରେ ଆମର କଟେ ପୁଅ ବାର । କୋଠିଟା ମନକୁ ମନ ଆମ ହାତକୁ ଆସିଯିବ ।''

ମୁର୍ମୁର ଯୁକ୍ତିଟା ସମସ୍ତଙ୍କ ମନକୁ ପାଇଲା । କାରଣ ସମସ୍ତେ ଜାଣିଥିଲେ ଯେ ଓଡ଼େନ୍ ତାଙ୍କ ନୀଳକୋଠିଟିକୁ ବେଶ୍ କାଇଦାରେ ତିଆରି କରାଇଥିଲେ । ଗୋଟିଏପଟେ ସୁବର୍ଣ୍ଣରେଖା ନଦୀ ଏବଂ ଅନ୍ୟପଟେ ଲାଲ୍ ଓ କଳା ପଥରର ବିରାଟ ଢାଲୁ । ସେହି ଢାଲୁଆ

ତଥା ପଥୁରିଆ ପ୍ରାନ୍ତରରେ ନାନା ପ୍ରକାରର ବନ୍ୟ ବଡ଼ ଗଛ ଖୁନ୍ଦି ହୋଇଛି । ଢଙ୍ଗାଢ଼ାଙ୍ଗୀମା-ହାଣ୍ଟଙ୍କ କୋଠି ଭିତରୁ ତଡ଼ିଦେବା ଖୁବ୍ ସହଜ । ସେଭଳି ସୁବିଧାଜନକ କୋଠି ସେ ଅଞ୍ଚଳରେ ଆଉ କାହାର ନଥିଲା । ତେଣୁ ମୁର୍ମୁ ଯେଉଁ ଉପାୟ ବତାଇଲା, ତା ବ୍ୟତୀତ ଓଡ଼େନ୍‌ସାହେବଙ୍କ କୋଠିକୁ ଅକ୍‌ତିଆର୍ କରିବାର ଆଉ କିଛି ସହଜ ଉପାୟ ନଥିଲା । ତେଣୁ ସମସ୍ତେ ମୁର୍ମୁର କାରସାଦିକୁ ତାରିଫ କରିବାକୁ ଲାଗିଲେ ।

ନିଜ ଯୋଜନା ଅନୁସାରେ ଗୋଲକ ମୁର୍ମୁ ତା'ର ଦଳବଳ ନେଇ ଆଗତୁରା ଚାଲିଗଲା । ସେ ଯିବାବେଳେ ସୁବର୍ଣ୍ଣଗଡ଼ ପକ୍ଷରୁ ଭଡ଼ାରେ ଅଣାଯାଇଥିବା ଅନେକ କନ୍ଧ ଲଠିଆଳଙ୍କୁ ମଧ୍ୟ ସଙ୍ଗରେ ନେଇଗଲା । ସେ ଏପରି ଭାବରେ ଅଭିନୟ କଲା ଯେ, ତା' କାମକୁ କେହି ଭୁଲରେ ସୁଦ୍ଧା ସନ୍ଦେହ କରିପାରିଲେ ନାହିଁ । ମୁର୍ମୁର ନେତୃତ୍ୱରେ ଦଳବଳ ଯାଇ ଓଡ଼େନ-ସାହେବଙ୍କ କୋଠିରେ ପହଞ୍ଚିବାକ୍ଷଣି, ବିନା ରକ୍ତପାତରେ ଫଲ୍‌ମନ୍ ଓ ଦୁର୍ଲ୍ଲଭ ରାୟଙ୍କ ଲଠିଆଳ ଓ ତୀରନ୍ଦାଜ୍ ଦଳ ବନ୍ଦୀହୋଇଗଲେ ।

ପରଦିନ ସୂର୍ଯ୍ୟ ଉଠିବା ସଙ୍ଗେ ସଙ୍ଗେ କୋଠିର ବିଶାଳ ଗୋଲଗମ୍ବୁଜ ଉପରେ ଫର୍‌ଫର୍ ହୋଇ ଉଡ଼ିବାକୁ ଲାଗିଲା ଗୋଟିଏ ଲାଲ୍ ପତାକା । ରାତିରେ କ'ଣ ସବୁ ଘଟି-ଯାଇଛି, ସେ ବିଷୟରେ ଆଉ କାହାରି ସନ୍ଦେହ ରହିଲା ନାହିଁ । ତେଣୁ ସଙ୍କେତ ପାଇବା ମାତ୍ରେ ଗୋଟିଏ ପଟୁ ଦୁର୍ଲ୍ଲଭ ରାୟ ଓ ଅନ୍ୟପଟୁ ଫଲ୍‌ମନ୍ ଓ ଜମିଦାରଙ୍କ ସାନଭାଇ ରାଜା ରାୟ ଆକ୍ରମଣ ପାଇଁ ବାହାରିଆସିଲେ ।

ଦୁର୍ଲ୍ଲଭ ରାୟଙ୍କ ନେତୃତ୍ୱରେ ଲଠିଆଳ ଦଳ ହୋ' ହୋ' ହୋଇ ନଈ ପାର ହୋଇ କୂଳକୁ ଉଠିବା ମାତ୍ରେ, କୋଠି ପକ୍ଷରୁ ଚାଲିଲା ଅଗ୍ନିବୃଷ୍ଟି ଗୁଳିବର୍ଷା । ଏ' ପ୍ରକାର ଅପ୍ରତ୍ୟାଶିତ ଆକ୍ରମଣରେ ଦୁର୍ଲ୍ଲଭ ରାୟଙ୍କ ଦଳ ଅଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେମାନେ ଭାବିଥିଲେ କ'ଣ—କିନ୍ତୁ ହେଲା ଠିକ୍ ତା'ର ବିପରୀତ । ଗୁଳିମାଡ଼ ଖାଇ ରାଜାସାହେବଙ୍କ ଲଠିଆଳମାନେ ମୁର୍ମୁର ଲୋକଙ୍କ ଦ୍ୱାରା ଅନାୟାସରେ ବନ୍ଦୀହେଲେ ଏବଂ ଗୁଳିମାଡ଼ରେ ନିଜେ ଦୁର୍ଲ୍ଲଭ ରାୟ ମଧ୍ୟ ନିଜର ଘୋଡ଼ାଟିକୁ ହରାଇ, ହାତରେ ଖଣ୍ଡାଧରି ଆଗେଇବାକୁ ଚେଷ୍ଟାକରି ବିଫଳ ହେଲେ । ଏଣେ ଗୋଲକ ମୁର୍ମୁ ଗୋଲଗମ୍ବୁଜ ଉପରୁ ସେ ଦୁର୍ଲ୍ଲଭ ରାୟଙ୍କୁ ଲକ୍ଷ୍ୟକରି ତୀର ଛାଡ଼ିବା ଦେଖି, ଅନା ତାକୁ ବାଧା ଦେଇ କହିଲା—"ଆହା··· ସେପରି କରନାହିଁ । ରକ୍ତପାତ କରିବା ଆମର ଉଦ୍ଦେଶ୍ୟ ନୁହେଁ । ବିଶେଷ ଦରକାର ପଡ଼ିଲେ ମୁଁ ନିଜେ ବନ୍ଧୁକ ଚଳାଇବି । ତୁମେ ଆଗେ ଯାଇ ନଈପାର ହୋଇ ଉପରକୁ ଉଠୁଥିବା ଲଠିଆଳମାନଙ୍କୁ ଫାଶ ଫିଙ୍ଗି ବନ୍ଦୀ କରିପକାଅ···।"

ଅନାର କହିବା ଅନୁସାରେ ମୁର୍ମୁ ନିଜ ଦଳବଳ ନେଇ କୂଳକୁ ଉଠିଆସୁଥିବା ରାଜା-ସାହେବଙ୍କ ଦଳକୁ ହଲଚଲ କରି ବାନ୍ଧିପକାଇଲା । ନିଜ ଘୋଡ଼ାଟିକୁ ହରାଇ ଦୁର୍ଲ୍ଲଭ ରାୟ ପ୍ରାୟ ପାଗଳଙ୍କ ପରି ରକ୍ତମୁଖା ହୋଇଉଠିଲେ । ସେ ମୁର୍ମୁର ଚାଲାକି ବୁଝିପାରି, ତା' ଉପରେ ରକ୍ତଚକ୍ଷୁ ଦେଖାଇବାକୁ ଲାଗିଲେ ଏବଂ ଶେଷରେ ଆଦେଶ ଦେଲେ—

"ଚଳାଅ ଗୁଳି ।"

ସିପାହିମାନେ କାହା ଉପରକୁ ଗୁଳି ଚଳାଇବେ ଆଦୌ ବୁଝି ପାରିଲେ ନାହିଁ । କାରଣ ନଦୀ ପାରହୋଇ ସେ ପଟକୁ ଯାଇଥିବା ନିଜ ପକ୍ଷର ଲୋକମାନେ ବିଶ୍ୱାସଘାତ କରିଥିବାରୁ, ସେମାନଙ୍କର ବୁଦ୍ଧି ହଜିଗଲା । ଯେଉଁମାନେ ସାହାଯ୍ୟ କରିବା କଥା, ସେହିମାନେ ଶତ୍ରୁମାନଙ୍କ ନିଜ ପକ୍ଷର ଲୋକମାନଙ୍କୁ ବନ୍ଦୀ କରୁଥିବାରୁ, ସେମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ତେଣୁ ମୁର୍ମୁର ଲୋକମାନେ ବିନା ବାଧାରେ ନିଜର ଉଦ୍ଦେଶ୍ୟ ସାଧନ କରି ଓଡ଼େନ୍ ସାହେବଙ୍କର ଜୟଗାନ କରିବାକୁ ଲାଗିଲେ ।

ଦୁର୍ଲ୍ଲଭ ରାୟଙ୍କ ଜୀବନରେ ଏପରି ନିର୍ବୋଧତା ଆଉ କେବେହେଲେ ହୋଇନଥିଲା । ସେ ହାତ ବାନ୍ଧି ନୀରବରେ ଲଜ୍ଜାରେ ମୁଣ୍ଡପୋତି ଛିଡ଼ା ହୋଇଗଲେ; କାରଣ ତାଙ୍କର ପଳାୟନର ମାର୍ଗ ଅବରୁଦ୍ଧ ହୋଇଯାଇଥିଲା । ସେ କେବଳ ମୁର୍ମୁର ସପ୍ତପୁରୁଷକୁ ଉଦ୍ଧାରି ମନେ ମନେ ଲଜ୍ଜା, ଅପମାନ ଓ ଅବସାଦରେ ଝାଉଁଳି ପଡ଼ିଲେ ।

କିନ୍ତୁ ପର ମୁହୂର୍ତ୍ତରେ ତାଙ୍କୁ ଗୋଟିଏ ଚିନ୍ତା ବ୍ୟତିବ୍ୟସ୍ତ କରିପକାଇଲା; କାରଣ ସେ ଫଲ୍‌ମନ୍ ସହିତ ନିଜର ସାନଭାଇ ରାଜା ରାୟଙ୍କୁ ପଠାଇ ଦେଇଥିଲେ । ରାଜା ରାୟ ବୈଷୟିକ ଜଞ୍ଜାଳରୁ ମୁକ୍ତ ହୋଇ ସବୁବେଳେ କେବଳ ସଙ୍ଗୀତ ସାଧନାରେ ବ୍ୟସ୍ତ ରହି କାଳ ଯାପନ କରୁଥିଲେ । ସେ ବେଶ୍ ଭଲଭାବରେ ଜାଣିଥିଲେ—ବଡ଼ଭାଇ ଥାଉଁ ଥାଉଁ ତାଙ୍କୁ ରାଜକାର୍ଯ୍ୟରେ ମୁଣ୍ଡ ଖେଳାଇବା ଦରକାର ପଡ଼ିବ ନାହିଁ ।

ଦୁର୍ଲ୍ଲଭ ରାୟ ଖୁବ୍ ସ୍ନେହ କରୁଥିଲେ ନିଜର ଅଳ୍ପଅଳ ସାନଭାଇଟିକୁ । ସେ ମ... କିଛି କହୁନଥିଲେ ମଧ୍ୟ ଅନ୍ତର ମଧ୍ୟରେ ସାନଭାଇର କାର୍ଯ୍ୟକଳାପକୁ ଆଦର... ଏଇ କୋଠି ଆକ୍ରମଣର ଚକ୍ରାନ୍ତରେ ରାଜା ରାୟ ବଡ଼ଭାଇକୁ ବାଧାଦେଇ... ଏତେ ବଡ଼ ଝିଙ୍କଟ ଭିତରକୁ ପଶିବା ଲାଗି ସେ ଆଦୌ ସୁଖ ପାଉନଥିଲେ । ଭାଇଙ୍କର ଜିଦ୍ ଆଗରେ ଶେଷରେ ସେ ମୁଣ୍ଡ ନୁଆଁଇ ଆକ୍ରମଣରେ ଅଂଶ ଗ୍ରହଣ କ... ମନେମନେ ପ୍ରତିଜ୍ଞା କରିଥିଲେ ।

ପରେ ଅବଶ୍ୟ ଦୁର୍ଲ୍ଲଭ ରାୟ ଭାବଚନ୍ଦ୍ର ସାନଭାଇକୁ ଆକ୍ରମଣରେ ଅଂଶ ଗ୍ରହଣ ନକ... ପାଇଁ ବୁଝାଇଥିଲେ । କିନ୍ତୁ ଫଳ କିଛି ହେଲାନାହିଁ । ସେ ଗୋଟିଏ ଧଳା ଘୋଡ଼ାରେ ସବାର୍ ହୋଇ, କମର୍‌ରେ ତରୁଆଲ୍ ଝୁଲାଇ ଫଲମନ୍ ସାହେବ ସଙ୍ଗରେ ସନ୍ଧ୍ୟାର ଧୂମିଳ ଆଲୋକରେ ବାହାରିଯାଇଥିଲେ ଯୁଦ୍ଧକ୍ଷେତ୍ରକୁ ।

ଦୁର୍ଲ୍ଲଭ ରାୟ ସେହି କ୍ଟଣୀତବନ୍ଧନ ଭାଇଟିର ଚିନ୍ତାରେ ବିବ୍ରତ ହୋଇପଡ଼ିଲେ । ଭାଇର ଉଦ୍ଧାର ପାଇଁ ତାଙ୍କର କିଛି ହେଲେ ଉପାୟ ନଥିଲା; କାରଣ ଏକପ୍ରକାର ସେ ଚାରିପଟୁ ଅବରୁଦ୍ଧ ଅବସ୍ଥାରେ ପ୍ରତ୍ୟେକ ମୁହୂର୍ତ୍ତରେ ବନ୍ଦୀ ହୋଇ ଯିବାର ଆଶଙ୍କା କରୁଥିଲେ । ସେ କ'ଣ କରିବେ, କିଛି ଉପାୟ ସ୍ଥିର କରିପାରିଲେ ନାହିଁ । କେବଳ ଜୀବନ ନେଇ ଧାଇଁ ଦୌଡ଼ି ପଳାଇବା ବ୍ୟତୀତ ତାଙ୍କୁ ଆଉ କୌଣସି ବୁଦ୍ଧି ଦିଶିଲା ନାହିଁ ।

ଶେଷକୁ ସେ ମନେମନେ ଉଦ୍‌ବେଗଗ୍ରସ୍ତ ହୋଇ ଆତ୍ମରକ୍ଷାର ଉପାୟ ବାଛିନେଲେ । ସନ୍ଧ୍ୟା ହେବା ପରେ ଲୁଚିଛପି ହୁଏତ ପୁଣି ଆକ୍ରମଣ କରାଯାଇପାରେ ବୋଲି ଚିନ୍ତା କରି, ସେ କୌଣସିମତେ ଶତ୍ରୁର ଘେର ଭିତରୁ ଆତ୍ମରକ୍ଷାର ଉପାୟ ଚିନ୍ତା କରିବାକୁ ଲାଗିଲେ ।

ଏଣେ ଫଲ୍‌ମନ୍ ରାଜାରାୟଙ୍କ ସଙ୍ଗରେ ଧରି ନିଜ ଦଳବଳଙ୍କ ସହିତ ଆସି ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କରି ରହିଥିଲା । ସେମାନଙ୍କ ଆତ୍ମଗୋପନର ସନ୍ଧାନ ବହୁ ଆଗରୁ ଆନା ଜାଣିପାରି ତାଙ୍କ ଆକ୍ରମଣକୁ ପ୍ରତିହତ କରିବାପାଇଁ, ନିଜ ଲୋକଙ୍କଦ୍ୱାରା ଗୋଟିଏ ସୁଦୃଢ଼ ସୈନ୍ୟ-ବ୍ୟୂହ ନିର୍ମାଣ କରିଥିଲା ।

ସେଦିନ ଥିଲା କୃଷ୍ଣପକ୍ଷର ଚତୁର୍ଥୀ । ରାତ୍ରି ପହରେକ ପରେ ଆକାଶରେ ଦେଖାଦେବ ରଶ୍ମି ଝଲମଲ କରି ଚନ୍ଦ୍ରମା । ପୂର୍ବର ଗୋପନ ମନ୍ତ୍ରଣା ଅନୁସାରେ ଠିକ୍ ମୁହିଁ ସଞ୍ଜବେଳେ ଗୋଲକ ନାଗରା ବଜାଇ ତାଙ୍କୁ ଆକ୍ରମଣ କରିବାକୁ ଇସାରା ଦେବା ଲାଗି ସ୍ଥିର ହୋଇ-ଥିଲା ।

ସନ୍ଧ୍ୟା ଅନ୍ଧକାରାକ୍ରାନ୍ତ ହୋଇଗଲା । ଫଲ୍‌ମନ୍ ନାଗରାର ଧ୍ୱନି ଶୁଣିବା ଲାଗି ଅଧୀର ହୋଇ-ଉଠିଲା । ତା'ର ଧୈର୍ଯ୍ୟଚ୍ୟୁତ ହେବା ଅବସରରେ ହିଁ ଦୂରରୁ ବାଜିଉଠିଲା ଡବ୍‌ଡବ୍ ହୋଇ ନାଗରା । ନାଗରାର ଧ୍ୱନି ଶୁଣିବାମାତ୍ରେ ଚତୁର ଫଲ୍‌ମନ୍ ମନେ ମନେ ନିତାନ୍ତ ବ୍ୟସ୍ତ [illegible]ହୋଇ କହିଲା—"ରାୟସାହେବ ! ମୁଁ ଭାବୁଛି କିଛି ଗୋଟାଏ ଅଘଟଣ ଘଟିଛି । ନୋହିଲେ [illegible]ମ୍ବରୁ ଜୟନାଦରେ ଉଚ୍ଛୁଳିପଡ଼ୁଥା'ନ୍ତା ନଦୀକୂଳ ପ୍ରାନ୍ତରଟା..."

[illegible] ସମସ୍ତ ଚିନ୍ତା କରିବା ପରେ କହିଲା—"ମୁଁ ଭାବୁଛି, ଏ ଅବସ୍ଥାରେ ଆମର [illegible] ଉଚିତ ହେବ ନାହିଁ; ବରଂ ଆମେ ପଛକୁ ହଟିଯାଇଁ ଅବସ୍ଥାକୁ ଦେଖି[illegible]ବା ।"

[illegible]ମନ୍‌ର କଥା ଶୁଣି ଗର୍ଜିଉଠିଲେ ରାୟ—"ଏଥିରୁ କାପୁରୁଷଙ୍କ ପରି ପଛକୁ ହଟି-[illegible]ମୋ' ଦ୍ୱାରା ସମ୍ଭବ ହେବନାହିଁ । ଯୁଦ୍ଧର ଫଳାଫଳ ମୁଁ ଦେଖିବାକୁ ଚାହେଁ..."

ଫଲ୍‌ମନ୍ ନିତାନ୍ତ ବ୍ୟସ୍ତ ହୋଇଉଠି କହିଲା—"ତୁମେ ଚିହ୍ନି ନ ଆନା ହେପବାନ୍‌କୁ ! [illegible]'ର ବୁଦ୍ଧି କମ୍ ନୁହେଁ । ତା' ଖାବୁଡ଼ରେ ପଡ଼ିଲେ ଆଉ ରକ୍ଷା ନାହିଁ ।"

ଫଲ୍‌ମନ୍ କଥାରେ ରାଜା ରାୟ ଆହୁରି ଉତ୍ତେଜିତ ହୋଇଉଠି କହିଲା—"ମୁଁ ରାୟ ବଂଶର ସନ୍ତାନ । ଜଣେ ସ୍ତ୍ରୀଲୋକର ଭୟରେ ଯୁଦ୍ଧକ୍ଷେତ୍ର ଛାଡ଼ି ପଳାଇଯିବା ଆମ ଜାତକରେ ଲେଖା ନାହିଁ ।"

ଫଲ୍‌ମନ୍ ଆଗରୁ ଥରେ ପ୍ରବଳ ଭଲ କରି ଶିକ୍ଷା ପାଇଥିଲା କୁମାରୀ ଆନାଠାରୁ । ସେ ଗୋଲକ ମୁର୍ମୁକୁ ଅତି ଆପଣାର ବୋଲି ବିଶ୍ୱାସ କରିନଥିଲେ ଆଜି କେବେହେଲେ ରାତ୍ରିର ନିବିଡ଼ ଅନ୍ଧକାର ମଧ୍ୟରେ ଏଠାକୁ ଆସିନଥା'ନ୍ତା । ସେ ଭାବିଥିଲା—ଗୋଲକ ନିଶ୍ଚିତ ଭାବରେ ଆନାକୁ ବନ୍ଦୀ କରିବାରେ ସଫଳ ହେବ ଏବଂ ରାୟ ବଂଶର ମୂଲ୍ୟବାନ୍ ହୀରା ସହିତ ସେ ମୈତ୍ରେୟୀକୁ ଅପହରଣ କରିନେବାରେ ସଫଳ ହୋଇପାରିବ ।

ଫଲ୍‌ମନ୍‌ ରାଜାରାୟ ପରି ଉଚ୍ଚା ବଂଶର ଅଭିମାନରେ ଝାସିଯିବା ଲୋକ ନଥିଲା। କାରଣ, ତା'ର ନଥିଲା ବଂଶ ଗରିମା ମନରେ ନଥିଲା ଆତ୍ମମର୍ଯ୍ୟାଦା ଜ୍ଞାନ। ଦସ୍ୟୁ ବୃତ୍ତିରେ ଜୀବନ ନିର୍ବାହ କରୁଥିବା ଫଲ୍‌ମନ୍‌ କେବଳ ଜାଣିଥିଲା ଆତ୍ମରକ୍ଷାର ବିଭିନ୍ନ ଉପାୟ। ସେ ଉପାୟ ଯେତେ ନିନ୍ଦନୀୟ ହୋଇଥିଲେହେଁ ସେ ସେଥିଲାଗି ତିଳେହେଲେ ଚିନ୍ତା କରୁନଥିଲା। ତେଣୁ ନିର୍ବୋଧ ଭ୍ରମରେ ଶତ୍ରୁ ହାତରେ ଧରାପଡ଼ିବା ଆଗରୁ, ସେ ପଳାଇଯାଇ ଆତ୍ମରକ୍ଷା କରିବାକୁ ଭାବୁଥିବା ସମୟରେ, କାନ ଫଟାଇ ନାଗରାର ଡବ ଡବ୍‌ ଧ୍ୱନି ଶୁଣାଗଲା। ସେ ଅବସ୍ଥାକୁ ନିରୀକ୍ଷଣ କରି ବ୍ୟଗ୍ରତାର ସହିତ କହିଲା—"ତୁମେ ଏଇଠି ବିଜୟ ଆଶାରେ ଛିଡ଼ା ହୋଇଥାଅ କୁମାର। ଏଇଲାଗେ ଘଡ଼ିମାଏ ଚନ୍ଦ୍ର ଉପରକୁ ଉଠିଆସିଲେ ଆମେ ଆଉ ଆତ୍ମଗୋପନ କରି ରହିପାରିବା ନାହିଁ। ତୁମେ ଏଇଠି ଠିଆହୋଇଥାଅ! ଏଇଲାଗେ ଆକାଶରୁ ପରୀଦଳ ଓହ୍ଲାଇ ଆସି ତୁମ ଗଳାରେ ଜୟମାଳ୍ୟ ପିନ୍ଧାଇ ଦେବେ…"

ଏତକ କହିସାରିବା ମାତ୍ରେ ବୃକ୍ଷ, ଲତା ଓ ଗହଳ ପତ୍ରଗୁଚ୍ଛ ଭେଦକରି କିରଣମାଳା ବିଞ୍ଚିଦେଲେ ଆକାଶରୁ ରୋହିଣୀରମଣ ଚନ୍ଦ୍ର। ମନେହେଲା—ସତେ ଯେପରି ମୈତ୍ରେୟୀର ଅଙ୍ଗୁଳିରେ ଥିବା ହୀରାର ଚକ୍‌ଚକ୍‌ ଆଲୁଅରେ ଫଲ୍‌ମନ୍‌ର ଆଖି ଦୁଇଟା ଝଲସିଉଠିଲା। ସେ ଆଉ ମୁହୂର୍ତ୍ତେ ବିଳମ୍ବ ନକରି, ଘୋଡ଼ାର ମୁହଁଟାକୁ ଫେରାଇ ନେବାକୁ ଚେଷ୍ଟାକଲା ବିପରୀତ ଦିଗକୁ। ହଠାତ୍‌ ବନପ୍ରାନ୍ତରର ନିସ୍ତବ୍ଧତା ଭେଦ କରି ଛୁଟିଆସିଲେ ଛନ୍ନପଟୁ ଅଶ୍ୱାରୋହୀ ଦଳ। ଘୋଡ଼ାମାନଙ୍କ ହ୍ରେଷାରବ ଓ ଖୁରାର ଟପ୍‌ ଟପ୍‌ ଶବ୍ଦରେ ଫଲ୍‌ମନ୍‌ର କାନ ଦି'ଟା ଅତଡ଼ା ପଡ଼ିଗଲା। ପଛକୁ ପଛ ବ୍ୟୂହ ଭେଦକରି ମାଡ଼ିଆସିଲେ ଅଶ୍ୱାରୋହୀ ସୈନ୍ୟ। ତା' ସହିତ ବନ୍ଧୁକରୁ ଫାୟର୍‌ ହେଲା ଧନାଧନ୍‌ ଗୁଳି। ଆଉ ଦଳେ ଅଶ୍ୱାରୋହୀ ଦୂରରୁ ଫାଶ ଫିଙ୍ଗି ଅଣ୍ଡି ପିଚ୍ଛଡ଼ାକେ ବାନ୍ଧିପକାଇଲେ ଫଲ୍‌ମନ୍‌ ଓ ରାଜାରାୟଙ୍କ ସୈନ୍ୟମାନଙ୍କୁ।

ଫଲ୍‌ମନ୍‌ ଏପରି ଏକ ଅପ୍ରତ୍ୟାଶିତ ଆକ୍ରମଣରେ ଅବାକ୍‌ ହୋଇଯାଇ, ରାଜାରାୟଙ୍କୁ ଛାଡ଼ି ପ୍ରାଣବିକଳରେ ନଦୀ କୂଳେ କୂଳେ ଘୋଡ଼ା ଛୁଟେଇ ପଳାଇଯିବାକୁ ବସିଲା। କିନ୍ତୁ ତା'ର ଗତିବିଧି ଉପରେ ଦୃଷ୍ଟି ରଖିଥିଲା ଯୋଡ଼ାଏ ତୀକ୍ଷ୍ଣ ଚକ୍ଷୁ।

ଫଲ୍‌ମନ୍‌ ଉର୍ଦ୍ଧ୍ୱଶ୍ୱାସରେ ପଳାଇଯିବାକୁ ଲାଗିଲା। ସେ ଅବଶ୍ୟ ସେଦିନ ଗୋଟିଏ ଘୋଡ଼ାର ବଳମସ୍ତରେ ଶାଳବଣର କଟିକଟା ଅନ୍ଧାର ଭିତରେ ପଳାଇ ଯାଇପାରିଥିଲା। କିନ୍ତୁ ଆଜି ତା'ର ଚକ୍ରାନ୍ତପୂର୍ଣ୍ଣ ଷଡ଼ଯନ୍ତ୍ର କାର୍ଯ୍ୟକାରୀ ହୋଇପାରିଲା ନାହିଁ। ସେ ଘୋଡ଼ା ଛୁଟେଇ ପ୍ରାଣବିକଳରେ ପଳାଇଯିବା ମାତ୍ରେ ପଛରୁ ଗର୍ଜିଉଠିଲା ବିଦେଶୀ ବନ୍ଧୁକର ଗୁଡ଼ୁମ୍‌ ଗୁଡ଼ୁମ୍‌ ଧ୍ୱନି। ଭୁକୁଫଟା ଆର୍ତ୍ତ ଚିତ୍କାରରେ ବନଭୂଇଁଟା ଶବ୍ଦାୟିତ ହୋଇଉଠିଲା। ଫଲ୍‌ମନ୍‌ର ଶରୀର ତା'ର ଦ୍ରୁତଗାମୀ ଘୋଡ଼ା ପିଠିରୁ ଧୁମ୍‌ କରି ପଥୁରିଆ ପ୍ରାନ୍ତରରେ ଲୋଟିପଡ଼ିଲା।

ଆରୋହୀ ବିହୀନ ଘୋଡ଼ାଟା ହିଁ···ହିଁ···ହିଁ···ହିଁ ଶବ୍ଦ କରି ପଳାଇଗଲା ଆଲୁଅ ଅନ୍ଧାରର ଲୁଚକାଳି ଭେଦକରି ଦୂରକୁ···ଆହୁରି ଦୂରକୁ । ମନେହେଲା, ସତେ ଯେପରି ଘୋଡ଼ାଟା ମନଖୋଲି ହସି ହସି ଆଗେଇ ଯାଉଛି ତୀବ୍ର ବେଗରେ ମଦମତ୍ତ ହୋଇ । ଦିନେ ହୁଏତ ଗୋଟିଏ ଘୋଡ଼ାର ପ୍ରାଣ ବିନିମୟରେ ଆତ୍ମରକ୍ଷାରେ ସଫଳ ହୋଇଥିଲା ଫଲ୍‌ମନ୍; ଆଜି କିନ୍ତୁ ଘୋଡ଼ାଟା ତା' ଜାତିଭାଇଟିର ପ୍ରତିଶୋଧ ନେଲା—ନିବିଡ଼ ଅନ୍ଧକାର ମଧ୍ୟରେ ହିଁ···ହିଁ···ହସି ହସି ଫଲ୍‌ମନ୍‌ର ମୃତଦେହଟାକୁ ଭୂମିରେ ଫିଙ୍ଗିଦେଇ ନିଜ ପିଠି ଉପରୁ ।

## ( ବାଇଶ )

ଆଗରେ ଏକ ଛାୟାମୂର୍ତ୍ତି ଦେଖି ତା' ଉପରେ ଅସ୍ତ୍ର ପ୍ରହାର କରିବାକୁ ଯାଉଥିଲେ ରାଜା ରାୟ, ହଠାତ୍ ବୃକ୍ଷଛାୟା ଭେଦକରି ଚନ୍ଦ୍ର ଉଠିଆସିଲେ ଉପରକୁ । ରାଜା ରାୟ ତରବାରି-ଟିକୁ ନୁଆଁଇଦେଲେ ତଳମୁହାଁ କରି । ଗୋଟିଏ ନାରୀମୂର୍ତ୍ତି ନିର୍ନିମେଷ ନୟନରେ ହାତରେ ବନ୍ଧୁକ ଧରି ଚାହିଁରହିଛି ତାଙ୍କରି ଆଡ଼କୁ । ଅନାର ଇଙ୍ଗିତରେ ବନ୍ଦୀ ହୋଇଥିବା ସିପାହି-ମାନଙ୍କୁ ନେଇ ଚାଲିଗଲେ କୋଠି ଆଡ଼କୁ ଲଠିଆଳମାନେ । ରାଜା ରାୟ ଆଡ଼କୁ ଚାହିଁ ମୁଖମଣ୍ଡଳରେ ମୃଦୁହାସ୍ୟରେଖା ବିଞ୍ଚିଦେଇ କହିଲା ଅନା—ତରବାରି ନୁଆଁଇଦେଲେ କାହିଁକି କୁମାର ସାହେବ ?"

"ନାରୀମାନଙ୍କ ଉପରେ ଅସ୍ତ୍ରଚାଳନା କରିବା କ୍ଷତ୍ରିୟୋଚିତ ଧର୍ମନୁହେଁ ଦେବି !" ଦୃଢ଼ତାର ସହିତ କହିଲେ ରଜା ରାୟ ।

"କିନ୍ତୁ ନାରୀ ଯଦି ଅସ୍ତ୍ରଧାରିଣୀ ହୋଇଥାଏ, ତଥାପି କ'ଣ···"

ଅନାର ଅସମାପ୍ତ ବାକ୍ୟକୁ ପୂରଣ କରି କହିଲେ ରାୟ—"ନା, ତଥାପି ନୁହେଁ ! ଏହାହିଁ ଆମ ଭାରତୀୟ ପରମ୍ପରା ।"

ଅନା ନିଜର ପ୍ରଶସ୍ତ ମୁଖମଣ୍ଡଳରେ ହସର ଅରୁଣିମା ବିଞ୍ଚିଦେଇ କହିଲା—"ଆପଣଙ୍କ ତରବାରିର ଦୂରତ୍ୱ ବାହାରେ ରହିଛି ମୁଁ; କିନ୍ତୁ ଆପଣ ଛିଡ଼ା ହୋଇଛନ୍ତି ମୋ' ବନ୍ଧୁକର ଦୂରତା ମଧ୍ୟରେ···"

"ଭୁଲ ବୁଝିଛନ୍ତି କୁମାରୀ ସାହିବା ! ନିଶ୍ଚିତ ଆଘାତର ଭୟରେ ରାୟବଂଶର ଜନୈକ ଯୋଦ୍ଧା କେବେହେଲେ ତରବାରି ନୁଆଁଇ ନେବ ନାହିଁ ।"

"ତା' ହେଲେ ଅସ୍ତ୍ର ଚାଳନା କରି ଆପଣଙ୍କ ସାହସର ପରିଚୟ ଦିଅନ୍ତୁ କୁମାର ସାହେବ !"

"କହିଲି ପରା ପ୍ରାଣ ସଙ୍କଟରେ ମଧ୍ୟ ନାରୀମାନଙ୍କ ଉପରେ ଅସ୍ତ୍ରଚାଳନା କରିବା ଆମ ଧର୍ମବିରୁଦ୍ଧ ପରମ୍ପରା ।" କହିଲେ ରାଜାରାୟ ।

"ତା'ହେଲେ କ'ଣ ନାରୀମାନଙ୍କ ଲାଞ୍ଛନା ନିଜ ଆଖିରେ ଦେଖିବାର ବାସନା ନେଇ ଆପଣ ଯୁଦ୍ଧକ୍ଷେତ୍ରକୁ ଆଗେଇ ଆସିଥିଲେ ?" କହିଲା ଅନା ।

"ମୁଁ ବର୍ତ୍ତମାନ ଆପଣଙ୍କ ଇଲାକାରେ ରହିଛି । ନିଜ ଇଚ୍ଛା ଅନୁସାରେ କଥା କହିବାର ଅଧିକାର ଅଛି ଆପଣଙ୍କର ।"

ଅନା ବନ୍ଧୁକଟିକୁ ତଳମୁହାଁ କରି ହସି ହସି କହିଲା—"କ୍ଷମାକରିବେ କୁମାର, ଆମ ଇଲାକା ଭିତରକୁ ଯେତେବେଳେ ଆପଣ ଆସିଯାଇଛନ୍ତି, ସେତେବେଳେ ଆପଣ ମୋର ଅତିଥି ।"

ଉତ୍ତର ଦେଉଁ ଦେଉଁ ରାଜା ରାଘବଙ୍କ ପାଖକୁ ପାଖେଇ ଆସିଲା ଅନା । ଶୁଭଚକ୍ଷୁର ମିଳନ ହୋଇଗଲା । ରାଜାରାଘବ ଏଡ଼େ ଦୀପ୍ତ ତଥା ପ୍ରଶାନ୍ତ ମୁଖମଣ୍ଡଳର ଆଭା ଜୀବନରେ ଅନ୍ୟ କୌଣସିଠାରେ ପ୍ରତ୍ୟକ୍ଷ କରିଥିବାର ତାଙ୍କର ମନେପଡ଼ିଲା ନାହିଁ । ଅନା ମଧ୍ୟ ମନେ ମନେ ଭାବିଲା—"ରାଜପୁରୁଷଙ୍କ ମଧ୍ୟରେ ଏଭଳି ସୁଗଠିତ ତଥା ସୁଢ଼ୋଳ ଚେହେରା ପ୍ରକୃତ ବିରଳ !"

ଗୋଟିଏ ଧଳା ଘୋଡ଼ା ଉପରେ ବସିଥିଲେ ରାଜାରାଘବ । ତାଙ୍କର ନିର୍ମଳ ଭାବମୂର୍ତ୍ତିକୁ ଦେଖି ଅନାର ମନେହେଲା—ଯେପରି କେଉଁ ଦୂର ବିଦେଶରୁ ଆସିଥିବା କ୍ଳାନ୍ତ ଅଶ୍ୱାରୋହୀ ଆସି ଗୋଟିଏ ପାନ୍ଥଶାଳାର ଦ୍ୱାରଦେଶରେ ଉପସ୍ଥିତ ହୋଇଛି । ସେ ପ୍ରକାଶ୍ୟରେ କହିଲେ—"ଆପଣ କ୍ଳାନ୍ତ କୁମାର ବାହାଦୁର ! ଯଦି ଆପତ୍ତି ନଥାଏ ତେବେ ଆମ କୋଠିକୁ ଆସିପାରନ୍ତି···।"

ମୁଗ୍ଧ ତଥା ପରିତୃପ୍ତ ଚାହାଁଣିରେ ଗୋଟିଏ ମୁହୂର୍ତ୍ତ ଅନାଇ ରହିଲେ ଅନାର ମୁଖ-ମଣ୍ଡଳକୁ କୁମାର ରାଜା ରାଘବ । ତା'ପରେ ମୁଖମଣ୍ଡଳରେ ମୃଦୁ ହାସ୍ୟରେଖାଟିଏ ବିଞ୍ଚିଦେଇ ମନେ ମନେ ଭାବିଲେ— ନା, ଏ ପ୍ରଶାନ୍ତ ମୁହଁରେ ଶଠତାର ଲେଶମାତ୍ର ଲକ୍ଷଣ ପରିସ୍ଫୁଟ ହେଉନାହିଁ, ବରଂ ନିଛକ ଆନ୍ତରିକତାର ଅକୃତ୍ରିମ ଛବି ଫୁଟିଉଠୁଛି ଏଇ ଚାହାଁଣିରେ । ତଥାପି ସେ ହସି ହସି କହିଲେ—"ମୁଁ ବର୍ତ୍ତମାନ ଆପଣଙ୍କର ବନ୍ଦୀ । ତେଣୁ ଆପଣ ମୋତେ ଯୁଆଡ଼େ ନେଇଯିବାକୁ ଚାହିଁବେ ସେଆଡ଼େ ନେଇଯାଇ ପାରିବେ···।"

ନିତାନ୍ତ କରୁଣ ହୋଇଉଠିଲା ଅନାର ଚାହାଁଣୀ । ସେ ପଲକଟାର ଆଭା ଖେଳାଇଦେଇ ନିଜର ଗୋଲାପୀ ଓଠଫାଙ୍କରେ କହିଲା—"ନିଜକୁ ବନ୍ଦୀ ବୋଲି ଭାବୁଛନ୍ତି କାହିଁକି କୁମାର ବାହାଦୂର ? ଆପଣଙ୍କର ପଥ ଉନ୍ମୁକ୍ତ ରହିଛି । ଇଚ୍ଛାକଲେ ଆପଣ ସ୍ୱଚ୍ଛନ୍ଦରେ ଫେରିଯାଇ ପାରିବେ । ଆପଣଙ୍କ ଦେହରେ କେହି ଜଣେହେଲେ ଟିପ ସୁଦ୍ଧା ଛୁଇଁ ପାରିବ ନାହିଁ ।"

ରାଜା ରାଘବ ହସି ହସି କହିଲେ—"ଚାଲନ୍ତୁ, ଆପଣଙ୍କ ଅତିଥିଶାଳାକୁ···"

ଗୋଟିଏ ବଳିଷ୍ଠ କୃଷ୍ଣବର୍ଣ୍ଣ ଅଶ୍ୱପୃଷ୍ଠରେ ଆରୋହଣ କରିଥିଲା ଅନା । ସେଇ ଜ୍ୟୋତ୍ସ୍ନା-ଲୋକରେ ଗୋଟିଏ ରହସ୍ୟମୟୀ ନାରୀରୂପେ ମନେହେଉଥିଲା ତା'ର ଆକୃତି । ହଠାତ୍ ସେ ଅଶ୍ୱର ଗତି ପରିବର୍ତ୍ତନ କରି ପଛକୁ ଫେରିପଡ଼ିଲା ଏବଂ କଳାଘୋଡ଼ାଟିକୁ ଅନୁସରଣ କଲା ଧଳାଘୋଡ଼ାଟି ।

ଆନା କୁମାର ରାଜା ରାସ୍ତଙ୍କୁ ନେଇ ପ୍ରବେଶ କଲା ତା'ର ଉଦ୍ୟାନବାଟିକାରେ । ବଗିଚା ଝାଉଁବଣ ଭିତରେ ପଥରବନ୍ଧା ହୋଇ ଚାଲିଯାଇଛି ଏ । ଝାଉଁବଣରୁ ଭାସିଆସୁଛି ସାଏଁ···ସାଏଁ···ମୃଦୁମନ୍ଦ ଝଙ୍କାର । ବାଟିକାରେ ପହଞ୍ଚି ଘୋଡ଼ାଉପରୁ ଓହ୍ଲାଇପଡ଼ିଲା ଆନା । ସେ ପଛକୁ ଫେରି କୁମାରସାହେବଙ୍କ ଅଡ଼କୁ ଚାହିଁବା ପୂର୍ବରୁ ରାଜା ରାସ୍ତ ଘୋଡ଼ାରୁ ଓହ୍ଲାଇ ସାରିଥିଲେ । ଆନା ହଠାତ୍ ଧଳା-ଘୋଡ଼ାଟିର ଲଗାମଟି ଧରି ତାକୁ ପାଖରେ ଥିବା ଗୋଟିଏ ଗଛରେ ବାନ୍ଧିଦେଲା । ତା' ଦେଖି ବିବ୍ରତ ହୋଇ ପରି କହିଉଠିଲେ ରାଜାରାସ୍ତ—"ଏ କ'ଣ କରୁଛନ୍ତି କୁମାରୀ ସାହିବା ? ଏ କାମ ଆପଣଙ୍କ ପରି ସୁନ୍ଦରୀ ରମଣୀଙ୍କୁ ସାଜେନା···।"

ଘୋଡ଼ାଟିକୁ ଗଛରେ ବାନ୍ଧି ବାନ୍ଧି ରାଜାରାସ୍ତଙ୍କ ଅଡ଼କୁ ଚାହିଁ ଚେନାଏ ହେବ ହସ ମୁଖମଣ୍ଡଳରେ ଖେଳାଇ କହିଲା ଆନା—"ଅନେକ କାମ ଅନେକଙ୍କୁ ଭଲ ଦେଖାଯାଏ ନାହିଁ, ତଥାପି ପରିସ୍ଥିତିର ତାଡ଼ନାରେ କରିବାକୁ ହୁଏ । ଯେମିତି ମନେକରନ୍ତୁ ଆପଣଙ୍କର ଯୁଦ୍ଧନୀତି······"

ରାଜାରାସ୍ତଙ୍କ ପୌରୁଷରେ ଆଘାତ ଲାଗିଲା, ତଥାପି ସେ ନିରୁପାୟ ହୋଇ ଅନ୍ୟଅଡ଼କୁ ମୁହଁବୁଲାଇନେଲେ କିଛି ନଶୁଣିଲାପରି । ଆନା ବେଶ୍ ଭଲଭାବରେ ବୁଝିପାରିଲା—ଏପରି ଗୋଟିଏ ବ୍ୟଙ୍ଗ କରିବାର ଉପଯୁକ୍ତ ସମୟ ଏ ନୁହେଁ—ତଥାପି ସେ ପରିସ୍ଥିତିକୁ ଟିକିଏ ହାଲୁକା କରିଦେବା ଉଦ୍ଦେଶ୍ୟରେ କହିଲା—"ଆସନ୍ତୁ କୁମାର ବାହାଦୁର । ଉଦ୍ୟାନ ମଣ୍ଡପରେ ଘଡ଼ିଏ ବସି କ୍ଳାନ୍ତି ମେଣ୍ଟାଇନେବା···"

ଆନାର ପାଖାପାଖି ହୋଇ ଚାଲିଲେ ରାଜାରାସ୍ତ । ବାଟିକାର ମଧ୍ୟଭାଗରେ ସରୁ ଚାଲିଯାଇଛି ଏ ପଥରରେ ବନ୍ଧାହୋଇଛି । ତା'ର ଦୁଇ ପାଖରେ ଧାଡ଼ି ଧାଡ଼ି ଦେଶୀ ଓ ବିଦେଶୀ ଗଛ ଅତି ଯତ୍ନରେ ସଜଡ଼ାଯାଇଛି ପରି ମନେହେଲା ତାଙ୍କର । ହଠାତ୍ ରାଜାରାସ୍ତ ଛିଡ଼ାହୋଇପଡ଼ିଲେ ଗୋଟିଏ ଶଙ୍ଖମଲମଲ ପ୍ରସ୍ତରମୂର୍ତ୍ତି ପାଖରେ । ଜ୍ୟୋତ୍ସ୍ନାବିଧୌତ 'ଭେନସ୍'ଙ୍କ ମୂର୍ତ୍ତିଟି ଆଖି ଝଲସାଇଦେଲା ରାଜାରାସ୍ତଙ୍କର । ପାଦପୀଠ ବେଦିକାର ଆସ୍ତରଣ ଭେଦକରି ମୁଣ୍ଡ ଟେକିଥିଲା ମାଧବୀ ଗୁଳ୍ମର ରକ୍ତପ୍ରବକ । ସତେ ଅବା ଗୋଟିଏ ସୁନ୍ଦରୀ, ମୁଗ୍ଧା, ଅବଗୁଣ୍ଠନବତୀ ପେନ୍ଥାଏ ରକ୍ତକୁସୁମ ଧରି ସୌନ୍ଦର୍ଯ୍ୟର ଅପରୂପ ଦେବୀଙ୍କୁ ପାଦରେ ଅଭ୍ୟର୍ଥନା ଜଣାଉଛି । ଲତା ଜାଲରେ ବେଷ୍ଟିତ ବେଦିକାର ଶୁଭ୍ର ଆସ୍ତରଣ ଜ୍ୟୋତ୍ସ୍ନାର ଆଲୋକରେ ଅଦ୍ଭୁତ ଶୁଭ୍ରତର ହୋଇଉଠିଛି । ତନ୍ମୟ ହୋଇଗଲେ ମୂର୍ତ୍ତିଟିକୁ ଅପଲକ ନୟନରେ ଚାହିଁ ରାଜାରାସ୍ତ ।

ପଛକୁ ଫେରିପଡ଼ି କୁମାର ସାହେବଙ୍କ ତନ୍ମୟତା ଭଙ୍ଗ କରି କହିଲା ଆନା—"ମୁଁ ଭାବୁଛି ଆପଣ ଜଣେ ନିପୁଣ ଶିଳ୍ପୀ କୁମାର···"

ଲଜ୍ଜାରେ ଅରୁଣାଭ ହୋଇଉଠିଲା ରାଜାରାସ୍ତଙ୍କ ପ୍ରଶସ୍ତ ମୁଖମଣ୍ଡଳ । ତାଙ୍କ ପରି ଜଣେ ଯୁବକର ସୁଠାମ ତଥା ରମଣୀୟ ଚେହେରାରେ ଲଜ୍ଜାର ଅରୁଣିମା ଅତ୍ୟନ୍ତ ମନୋମୁଗ୍ଧକର

ହୋଇଉଠିଲା ଆନା ପକ୍ଷରେ । ଅପଲକ ଦୃଷ୍ଟିରେ କିମିଷକ ଲାଗି ସନ୍ତୁଷ୍ଟ ହୋଇଉଠିଲା ଆଖି ଯୋଡ଼ିକ ତା'ର ।

ଆନାକୁ ଆହୁରି ବିସ୍ମିତ କରାଇ କହିଲେ ରାଜାରାୟ—"ପ୍ରତ୍ୟେକ ମନୁଷ୍ୟ, ଯେକୌଣସି ଭାବରେ ହେଉ ନା କାହିଁକି, ଜଣେ ଜଣେ ଶିଳ୍ପୀ । ତୁଏତ କାହାର ଶିଳ୍ପ-ସ୍ୱରୂପ ପରିସ୍ଫୁଟ ହୋଇଉଠେ, କାହାର ଅବା ମନର ଭାବ ମନରେ ମଉଳିଯାଏ ।"

କଥା କହୁଁ କହୁଁ ଦୁହେଁ ଆସି ପହଞ୍ଚିଗଲେ ଗୋଟିଏ ଶ୍ୱେତ ମର୍ମର ବେଦିକା ନିକଟରେ । ହାତ ଦେଖାଇ ବସିବାକୁ ଇଙ୍ଗିତ ଦେଲା ଆନା କୁମାର ବାହାଦୁରଙ୍କୁ ।

ଦୁହେଁଯାକ ପାଖାପାଖି ହୋଇ ବସିଲେ ବେଦୀ ଉପରେ । କିଛିକ୍ଷଣ ଦୁହେଁ ନୀରବ; କା'ହାରି ମୁହଁରୁ ପଦେ ହେଲେ କଥା ବାହାରିଲା ନାହିଁ । ପ୍ରଥମେ ନୀରବତା ଭଙ୍ଗ କରି କହିଲା ଆନା —"ଅଚ୍ଛା କୁମାର ସାହେବ, ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେବେ ?"

ଜିଜ୍ଞାସୁ ଦୃଷ୍ଟିରେ ଚାହିଁ ରହିଲେ ରାଜାରାୟ ଆଲୁଳାୟିତ କେଶଜାଲରେ ଅଚ୍ଛନ୍ନ ଆନାର ନିଃସଙ୍କୋଚ ତଥା ସୁନିର୍ମଳ ମୁଖମଣ୍ଡଳକୁ । ସେ ଅନୁଭବ କଲେ—ସତେ ଯେପରି କୌଣସି ଗହନ ପ୍ରଶ୍ନ ଉଙ୍କିମାରୁଛି ସେଇ ଅକପଟ ତଥା ଅକୃତ୍ରିମ ଚାହାଁଣିରେ । ଆନା ଟିକିଏ ଗମ୍ଭୀର ତଥା ରୁକ୍ଷ ଭାବ ମିଶ୍ରିତ କଣ୍ଠସ୍ୱରରେ କହିଲା—"ମୁଁ କାହାର କ'ଣ ଅପରାଧ କରିଛି କୁମାର ବାହାଦୁର—ଯା' ଫଳରେ ଆପଣମାନେ ଏକଜୁଟ ହୋଇ ମୋତେ ଶାସ୍ତି ଦେବାର ଏକ ବିରାଟ ଆୟୋଜନ କରିଛନ୍ତି···?"

ରାଜାରାୟଙ୍କ ନିକଟରେ ଏ' ପ୍ରଶ୍ନର ଉତ୍ତର ନଥିଲା । ଚାହାଁଣିରେ ତାଙ୍କର ଫୁଟିଉଠିଲା ଏକ ଅସହାୟତାର କରୁଣ ଭାବ । ଆନାର ଗମ୍ଭୀର ମୁଖମଣ୍ଡଳରେ, ମେଘମାଳାର ଘନ କୁହୁର ଭେଦ କରି ବିଦ୍ୟୁତ୍‌ର ପ୍ରକାଶ ହେଲା ପରି ସ୍ନିଗ୍ଧ ହାସ୍ୟଛଟା ଉଦ୍‌ଭାସିତ ହୋଇ-ଉଠିଲା । ସେ ନିଜକୁ ସଂଯତ କରି ନେଇ କହିଲା—"ମୁଁ ଜାଣେ, ଭଲଭାବରେ ଜାଣେ କୁମାରସାହେବ, ଆପଣ ମୋ' ପ୍ରଶ୍ନର ଉତ୍ତର କେବେହେଲେ ଦେଇ ପାରିବେ ନାହିଁ । ଯେଉଁମାନେ ଦେଇପାରିଥା'ନ୍ତେ, ସେମାନଙ୍କ ମଧ୍ୟରୁ ଜଣେ ସକୁଶଳରେ ଫେରିଗଲେଣି ହିରଣ୍ୟଗଡ଼କୁ; ଆଉ ଜଣେ ଖୁବ୍ ସମ୍ଭବତଃ ନିଜକୃତ ପାପର ପ୍ରାୟଶ୍ଚିତ୍ତ କରୁଛି ମାଳ କୋଠିର ପାଷାଣ ପ୍ରାନ୍ତରରେ···।"

ସର୍ଜନ୍‌ସ୍ୱର ଗ୍ଲାନରେ ମଧ୍ୟ କ୍ଷଣକ ଭିତରେ ରାଜାରାୟଙ୍କ ମୁଖ ପ୍ରସନ୍ନତାରେ ଚମତ୍କୃତ ହୋଇଉଠିଲା । ସେ ଭଲ ଭାବରେ ଅନୁମାନ କରିନେଲେ, ତାଙ୍କ ଭାଇ ଫେରିଯାଇଛନ୍ତି ହିରଣ୍ୟଗଡ଼କୁ । ଏହି ଶୁଭ ସମ୍ବାଦଟି ତାଙ୍କ ମନକୁ ଅନେକ ପରିମାଣରେ ଭାରମୁକ୍ତ କରିଦେଲା ।

ହଠାତ୍ କୋଠିର ସଦରପଟୁ ତୁମୁଳ କୋଳାହଳର ଧ୍ୱନି ଶୁଭାଗଲା । ଆନା ବ୍ୟସ୍ତ ହେଲା ପରି କହିଲା—"କ୍ଷମାକରିବେ କୁମାର ସାହେବ ! ଆପଣ ବସିଥାଆନ୍ତୁ, ମୁଁ ସଙ୍ଗେ ସଙ୍ଗେ ଆସୁଛି ।" ରାଜାରାୟ ସମ୍ମତିସୂଚକ ମୁଣ୍ଡ ହଲାଇ ଦେବା ମାତ୍ରେ ଆନା ଦ୍ରୁତ ଗତିରେ

ଆଗେଇଗଲା କୋଳାହଳ ଶୁଣାଯାଉଥିବା କୋଠି ଆଡ଼କୁ ।

ରାଜାବାପୁଙ୍କ ଘୋଡ଼ାଟି ବନ୍ଧାହୋଇଥିବା ସ୍ଥାନରେ ଖୁରାରେ ଭୂଇଁ ଖୋଳିବା ସଙ୍ଗେ ସଙ୍ଗେ ହିଁ…ହିଁ…କରି ହ୍ରେସା ରବ କଲା । ହଠାତ୍ କୋଳାହଳ ବନ୍ଦ ହୋଇଗଲା; ଚତୁର୍ଦ୍ଦିଗ ନୀରବ, ନିସ୍ପନ୍ଦ ତଥା ଜ୍ୟୋତ୍ସ୍ନା ବିଚ୍ଛୁରିତ ଦ୍ରୁମ ତଥା ଗୁଳ୍ମମୟ ପ୍ରାନ୍ତର । ନୀଳ କୋଠିର ଉଦ୍ୟାନ ବାଟିକାରୁ ସ୍ପଷ୍ଟ ଦେଖାଯାଉଛି ଜନଶୂନ୍ୟ ପ୍ରାନ୍ତର ଏବଂ ସୀମାହୀନ ନୀରବତା । ଦୂର ପାହାଡ଼ରୁ ଭାସିଆସୁଛି ସୁବର୍ଣ୍ଣରେଖାର ଅଗାଧ ଜଳରାଶିକୁ ସ୍ପର୍ଶ କରି ଝଲକାଏ ମୃଦୁମନ୍ଦ ଶୀତଳ ପବନ । ସେହି ପ୍ରବାହରେ ରାଜାବାପୁଙ୍କ ଅବିନ୍ୟସ୍ତ କେଶ ରାଶି ଫର୍‌ଫର୍ ହୋଇ ଉଡ଼ିବାକୁ ଲାଗିଲା । ଚତୁର୍ଦ୍ଦିଗ ବାଧାହୀନ ଉନ୍ମୁକ୍ତ । ଏକା ଏକା ବସି ବସି ରାଜାବାପୁ ଅନୁଭବ କଲେ—ଶତ ବାଧା ଥିଲେ ମଧ୍ୟ ସେ ବାଧାକୁ ଅତିକ୍ରମ କରି ଯିବା ସହଜ; କିନ୍ତୁ ବାଧାହୀନ ମଣିଷ କେଡ଼େ ଅସହାୟ ! ଇଚ୍ଛା କଲେ ମଧ୍ୟ ଚାଲିଯାଇ ହେଉନାହିଁ ।

କିଛି ସମୟ ପରେ ଫେରିଆସିଲା ଆନା । ମୁଖମଣ୍ଡଳ ତା'ର ଗଭୀର ଚିନ୍ତାରେ ଭାରାକ୍ରାନ୍ତ । କିଛିକ୍ଷଣ ପୂର୍ବରୁ ଫଲ୍‌ମନ୍‌କୁ ଗୁଳିକରି ଭୂଇଁରେ ଶୁଆଇ ଦେଇଥିଲେହେଁ ଯିଏ ନିଜର ମନୋଭାବ ଗୋପନ କରି ରାଜାବାପୁ ଆଗରେ ହସି ହସି ଫାଟିପଡ଼ୁଥିଲା, ତା'ରି ମୁହଁରେ ସହସା ଚିନ୍ତାର ଘନ କୁହେଳିକାର ଆଭାସ ପାଇ ଚିନ୍ତାଗ୍ରସ୍ତ ହୋଇଉଠିଲେ ରାଜାବାପୁ । ପୁଣି ସୁବର୍ଣ୍ଣରେଖା ଆଡ଼ୁ ଭାସିଆସିଲା କୋଳାହଳ ଧ୍ୱନି ।

ଆନା କହିଲା—"ହିରଣ୍ୟଗଡ଼ର ସମ୍ମାନ ରକ୍ଷାପାଇଁ ରାଜାସାହେବ ଲସ୍କର ସେନା ପୁଣି ଆମ ନୀଳକୋଠି ଆକ୍ରମଣ କରିବାକୁ ଉଦ୍ୟତ ହେଉଛନ୍ତି…।"

"କିଏ ? ଭାଇ… ? ମୁଁ ଏଇଲେ ଯାଇ ତାଙ୍କୁ ସବୁ ବିଷୟ ବୁଝାଇଦେଇ ଆକ୍ରମଣରୁ ନିବୃତ୍ତ କରୁଛି ।"

ରାଜାବାପୁର ପ୍ରଶାନ୍ତ ମୁହଁଟିକୁ କିଛିକ୍ଷଣ ନିର୍ନିମେଷ ନେତ୍ରରେ ଚାହିଁବା ପରେ ଓଠ ଫାଙ୍କରେ ଟିକିଏ ହସର ଝଲକ ବିଚ୍ଛୁରିଦେଇ କହିଲା ଆନା—'ଆପଣଙ୍କୁ ଏତେ ସହଜରେ ଜୟକରିନେଲି ଯେ କୁମାରସାହେବ ! ମୋର ମନେହୁଏ, ଦଶଦଣ୍ଡି ଲଢ଼େଇ ସରେଇଥିବା ମୁଁ ଚୁଟ୍‌କି ବଜାଇ ଜିତିଯାଇଛି । ଏ ଜୟର ମୂଲ୍ୟ ଦଶଟି ଯୁଦ୍ଧଜୟର ମୂଲ୍ୟଠାରୁ ଅନେକ ବେଶି ।"

ରାଜାବାପୁ କୁମାରୀ ଆନାର ବ୍ୟବହାରରେ ପ୍ରକୃତରେ କୃତଜ୍ଞ ହୋଇଉଠିଥିଲେ । ତଥାପି ଏତେଦୂର ଭାବାବେଗ ପ୍ରକାଶ କରିବା ଉଚିତ ହୋଇନାହିଁ ଭାବି ନୀରବ ହୋଇଗଲେ ।

ଟିକିଏ ରହିଯାଇ ପୁଣି କହିଲା ଆନା—"ଆପଣଙ୍କୁ ଡାକିଆଣି ସାମାନ୍ୟ ଟିକିଏ ଆତିଥ୍ୟ ଦେଖାଇ ପାରିଲି ନାହିଁ, ସେଥିଲାଗି କ୍ଷମା କରିବେ କୁମାର ବାହାଦୁର । ଏଇ ମୁହୂର୍ତ୍ତରେ ଆପଣ ଚାଲନ୍ତୁ ମୋ ସହିତ ।" ରାଜାବାପୁ ଉଠିପଡ଼ି ଘୋଡ଼ା ବନ୍ଧାହୋଇଥିବା ଗଛ

ଅଡ଼କୁ ଆଗେଇ ଯିବାକୁ ପାଦ ବଢ଼ାନ୍ତେ, କହିଲା ଆନା—"ନା, ଘୋଡ଼ାର ଆବଶ୍ୟକତା ପଡ଼ିବନି କୁମାର ! ମୁଁ ଠିକ୍ ସମୟରେ ତାକୁ ପହଞ୍ଚାଇ ଦେବି ହିରଣ୍ୟଗଡ଼ରେ । ଏଇଲେ ଆପଣ ମୋ' ସହିତ ଆସନ୍ତୁ ।"

ଆନାକୁ ଅନୁସରଣ କରି ଚାଲିଲେ ହିରଣ୍ୟଗଡ଼ର ଯାନକୁମାର ରାଜାରାୟ । ଉଦ୍ୟାନ ବାଟିକାର ଉଚ୍ଚନୀଚ, କୋମଳ ତଥା କଙ୍କରିଲ ପଥ ଅତିକ୍ରମ କରି ସେ ଦୁହେଁ ଯାଇ ପହଞ୍ଚିଲେ ଗୋଟିଏ ସୁଡ଼ଙ୍ଗ ଦ୍ୱାରରେ । ଆନା ମହମବତିଟିଏ ଜଳାଇଦେଇ ଆଗେଇ ଚାଲିଲା ସୁଡ଼ଙ୍ଗର ସଂକୀର୍ଣ୍ଣ ତଥା ପରିଷ୍କାର ଓ ପରିଚ୍ଛନ୍ନ ପଥଦେଇ । ସୁଡ଼ଙ୍ଗଟି ଆସି ଶେଷହେଲା ନଦୀକୂଳରେ । ବହିର୍ଦ୍ଦନରୁ ସୁଡ଼ଙ୍ଗର ଶେଷଭାଗରେ ଅର୍ଥାତ୍ ନଦୀକୂଳରେ ଗୋଟିଏ ଦ୍ରୁମ ତା'ର ଡାଳପତ୍ର ମେଲି ସେଠାକାର ସ୍ଥାନଟିକୁ ଆବୃତ କରି ରଖିଛି । ଦେଖିଲେ ମନେହୁଏନି ଏଠି ଗୋଟିଏ ସୁଡ଼ଙ୍ଗ ଆସି ଶେଷ ହୋଇଛି ବୋଲି ।

ଦୁଇଟି ମଣିଷ ସୁଡ଼ଙ୍ଗ ମୁହଁରୁ ବାହାରିବାମାତ୍ରେ ଗଛ ଉପରେ ନିଶାଚର ପକ୍ଷୀଗୁଡ଼ିକ ଡେଣାମେଲି କଳକୂଜନରେ ସ୍ଥାନଟିକୁ ମୁଖରିତ କରି ଉଡ଼ିଗଲେ । ଆନା ମହମବତିଟି ଲିଭାଇଦେଇ କହିଲା ରାଜା ରାୟଙ୍କୁ—"କୁମାର, ଉଠିଆସନ୍ତୁ ନୌକା ଉପରକୁ ।"

ରାଜାରାୟ ସାବଧାନତାର ସହିତ ଉଠିଆସିଲେ ନୌକାଉପରକୁ । ସ୍ରୋତରେ ଭସି-ଚାଲିଲା ଶ୍ରେଷ୍ଠ ନୌକାଟି । ତା'ପରେ ମୌନଭଙ୍ଗ କରି କହିଲେ ରାଜାରାୟ—"କୁଆଡ଼େ ଆମେ ଯାଉଛେ ?'

"ହିରଣ୍ୟଗଡ଼କୁ···"—କହିଲା କୁମାରୀ ଆନା ।

"ମୁଁ ଦେଖୁଛି ଆପଣ ଖୁବ୍ ସାହସିନୀ ।" କହିଲେ ରାଜାରାୟ ବିସ୍ମୟ ବିହ୍ୱଳ ମନରେ ।

"କାହିଁକି ଏପରି କହୁଛନ୍ତି ? ଗଡ଼ରେ ପହଞ୍ଚିବା ପରେ ଆପଣ ମୋତେ ବନ୍ଦୀକରିବେ ନା କ'ଣ ?"

ରାଜାରାୟ ଗମ୍ଭୀର ସ୍ୱରରେ କହିଲେ—"ଏପରି ସାହସର କାର୍ଯ୍ୟ ଯେ କରିପାରେ ଓ କଥା କହିପାରେ, ଇଚ୍ଛାକଲେ କ'ଣ କେହି ତାକୁ ବାନ୍ଧିପାରେ ?" ସେ ପୁଣି ହସି ହସି କହିଲେ—"ନିଜେ ନିଜେ ଧରାନଦେଲେ ଆପଣଙ୍କୁ ବନ୍ଦୀ କରିବାକୁ କା'ର ସାହସ ହେବ ?"

"ଆପଣଙ୍କର ଏହି ଉତ୍ସାହପ୍ରଦାନକାରୀ କଥାପଦକ ମୋର ଶକ୍ତି···।" ହସି ହସି କହିଲା ଆନା ।

ସେ ଦୁହେଁ ପ୍ରାୟ ଆସି ହିରଣ୍ୟଗଡ଼କୂଳରେ ପହଞ୍ଚିଗଲେ । ନଦୀକୂଳରେ ଥିଲା ବିସ୍ତୃତ ଶାଳବନ । ତା'ର ମଧ୍ୟଦେଇ ହିରଣ୍ୟଗଡ଼କୁ ରାସ୍ତା ମେଲିଯାଇଛି । ଅଗଣିତ ଦେବାଳୟ ଆଉ ଉଚ୍ଚ ଶିଖରର ବିଶିଷ୍ଟ ସୌଧଗୁଡ଼ିକ ସେଠାରୁ ଦେଖାଯାଉଥିଲା । ଅତୀତ ବୈଭବର ମୂକସାକ୍ଷୀରୂପେ ସେହି ଅଟ୍ଟାଳିକାଗୁଡ଼ିକ ଆଜି ସୁଦ୍ଧା ମସ୍ତକ ଉନ୍ନତ କରି ଛିଡ଼ାହୋଇଛନ୍ତି ।

ନଈଘାଟରେ ଆଣି ନୌକାଟି ଲଗାଇଦେଲା ଆନା । ରାଜାରାୟଙ୍କ ନୌକାରୁ ଓହ୍ଲାଇ

ଯିବାକୁ ଉଦ୍ୟତ ହେବା ପରେ, ସେ ଓହ୍ଲା'ଇ ଯାଉ ଯାଉ କହିଲେ—"ଏଇ ଘାଟରେ ଅଳ୍ପରେ ହିରଣ୍ୟଗଡ଼କୁ ଆସିବାଲାଗି ମୁଁ ଆପଣଙ୍କୁ ନିମନ୍ତ୍ରଣ ଦେଇପାରେ କି ?" ଆନା ହସି ହସି କହିଲା—"ହଁ, ମୁଁ ଆସିପାରେ; କିନ୍ତୁ ଯଦି ଏହା କେବଳ ସୌଜନ୍ୟମୂଳକ ନିମନ୍ତ୍ରଣ ହୋଇନଥାଏ ।"

ଆନାର କଥା ଶୁଣି ହସି ହସି କହିଲେ ରାଜାସାହୁ—"ଏଇ ଘାଟଠାରୁ ପ୍ରାୟ କୋଡ଼ିଏ ଏକର ଜମିରେ ମୋର ବ୍ୟକ୍ତିଗତ ଉଦ୍ୟାନ । ଏଠାକୁ ଆସିବା ଲାଗି ଆପଣଙ୍କୁ ଅବାରିତ-ଦ୍ୱାର ପ୍ରତୀକ୍ଷା କରିବ । ତା' ସହିତ ଆନ୍ତରିକ ନିମନ୍ତ୍ରଣ ରହିଲା ମୋର ଆପଣଙ୍କୁ ।"

ଆନା କହିଲା –"ଆସିବି ଆଉ କେବେ ସୁବିଧା ଦେଖି ।"

ରାଜାସାହୁ ଉତ୍ଫୁଲ୍ଲ ସ୍ୱରରେ କହିଲେ—"ସେ ଶୁଭଦିନଟି କେବେ ଦୟାକରି କହିବେ କି ?" ଟିକିଏ ଚିନ୍ତା କରିବା ପରେ କହିଲା ଆନା—"ଆଗାମୀ ଦ୍ୱାଦଶୀର ଶେଷଦିନ । ଯେତେବେଳେ ଅନ୍ଧକାର ଭେଦକରି ନିଶାକର ଉଠିବେ ଜଗତକୁ ଉଦ୍ଭାସିତ କରି ଅରଣ୍ୟର ଆଢ଼ୁଆଳରେ···"

"ତା' ହେଲେ ମୁଁ ଆପଣଙ୍କ ପାଇଁ ଏଇ ଘାଟରେ ଅପେକ୍ଷା କରିଥିବି ··" କହିଲେ ରାଜାସାହୁ ।

ଆନା ନୌକା ଚଳାଇ ଫେରିଗଲା ସ୍ରୋତର ବିପରୀତ ଦିଗରେ ନିଜର ନୀଳକୋଠି ଆଡ଼କୁ । ରାଜାସାହୁ ସେଠାରୁ ଫେରିଗଲେ ହିରଣ୍ୟଗଡ଼ର ସେ ରାଜପ୍ରାସାଦ ଅଭିମୁଖେ । ସେ ମନେ ମନେ ଭାବିଲେ—"ଏଇକ୍ଷଣି ଯାଇ ଭାଇଙ୍କୁ ଅନଶନରୁ ନିବୃତ୍ତ କରିବାକୁ ହେବ । ନୋହିଲେ ସେ ଯେପରି ଜିଦ୍‌ଖୋର୍ ଲୋକ ଅଶେଷ କଷ୍ଟ ସହିବେ ପଛକେ, କେବେ-ହେଲେ ନିଜ ଜିଦ୍‌କୁ ଓହରାଇବେ ନାହିଁ ।"

ସେ ଘୋଡ଼ାରେ ବସି ଭାଇଙ୍କ ପାଖକୁ ଯିବା ଆଗରୁ ପ୍ରବେଶ କଲେ ଅନ୍ଦର-ମହଲରେ । ରାଣୀ କଳାବତୀ ହାତ ଯୋଡ଼ି ଠିଆହୋଇଥିଲେ ଚଣ୍ଡୀ ମନ୍ଦିରର ସାମ୍ନାରେ । ସେ ରାଜାସାହୁଙ୍କ ପାଦ ଶବ୍ଦ ଶୁଣିବା ମାତ୍ରେ ଫେରି ଚାହିଁଲେ ତାଙ୍କ ଆଡ଼କୁ । ରାଜାସାହୁଙ୍କୁ ଦେଖିପକାଇ ସେ କଇଁ କଇଁ ହୋଇ କାନ୍ଦିଉଠି କହିଲେ—"ତୁମେ ଏଯାଏଁ କୁଆଡ଼େ ଥିଲ କୁମାର ? କେତେଣେ ତୁମକୁ ଉଦ୍ଧାର କରି ଆଣିବା ପାଇଁ ତୁମ ଭାଇ ପାଗଳଙ୍କ ପରି ଧାଁ-ଦଉଡ଼ ଚଳେଇଛନ୍ତି···"

"ଏଇକ୍ଷଣି କାନ୍ଦିବାର ସମୟ ନୁହେଁ ନୂଆବୋଉ !" ପ୍ରବୋଧନାଦେଇ କହିଲେ ରାଜାସାହୁ—"ମୁଁ ପହିଲେ ଭାଇଙ୍କୁ ଖୋଜିବାକୁ ଯାଉଛି । ସେ ଯେପରି ଏକଗୁଁଆ ମଣିଷ, ନିଶ୍ଚୟ ନିଜ ଉପରକୁ ବିପଦ ଡାକିଆଣିବେ ।"

"ନା, ନା ତୁମେ ଯାଅନି କୁମାର !" କହିଲେ କଳାବତୀ—"ତୁମରି ଚିନ୍ତାରେ ଆମେ ବ୍ୟତିବ୍ୟସ୍ତ ହୋଇପଡ଼ିଲୁଣି । ଆଉ ତୁମକୁ ମୁଁ ଛାଡ଼ିବିନି···"

"ତୁମେ ଆଦୌ ବ୍ୟସ୍ତ ହୁଅନି ନୂଆବୋଉ ! ମୁଁ କେବଳ ଭାଇଙ୍କୁ ଖବର ଦେବାକୁ

ଯାଉଛୁ ଯେ, ମୋ ଦେହରେ କେହି ଟିପ ଛୁଇଁନାହାନ୍ତି ।"

ବିଳାସବତୀ ଦେବରଙ୍କୁ ଆଉ ଯୁଦ୍ଧରେ ଜଡ଼ିତ ନହେବା ଲାଗି ରାଣ ନିୟମ ପକାଇ ଶପଥ କରାଇନେଲେ । ନିଃସନ୍ତାନବତୀ ରାଣୀ ବିଳାସବତୀ ରାଜାରାୟଙ୍କୁ ପୁତ୍ର ପରି ସ୍ନେହ କରୁଥିଲେ; କିନ୍ତୁ ତା ସହିତ ସ୍ଥଳେ ତାଙ୍କ ସହିତ ଗୋପନ ପରାମର୍ଶ, ହାସ, କଉତୁକ ଓ ପରିହାସ ।

ରାଜାରାୟ ଫେରିଗଲେ ଏବଂ ବିଳାସବତୀ ଛାତ ଉପରେ ଛିଡ଼ାହୋଇ ଚାହିଁରହିଲେ ଦେବରଙ୍କ ଗତିପଥକୁ । ସେ ଲକ୍ଷ୍ୟ କରି ଦେଖିଲେ—ଶାଳବଣର ଡାଳପତ୍ର ଭେଦ କରି ଝିଲ୍‌ମିଲ ଦିଶୁଛି ଅସଂଖ୍ୟ ମଶାଲର ଆଲୋକ ।

ଅନେକ ସମୟ ପରେ—ଅର୍ଥାତ୍ ମଧ୍ୟରାତ୍ରିର ଘଣ୍ଟା ବାଜିବା ପରେ ଘୋଡ଼ାଟାପୁ ଶୁଣି ଛାତ ଉପରୁ ଓହ୍ଲାଇ ଆସି ଦେଖିଲେ—ଦୁଇଭାଇ ସର୍ବଶୁଭରେ ଆସି ଗଡ଼ର ଦ୍ୱାରଦେଶରେ ଘୋଡ଼ାରୁ ଓହ୍ଲାଉଛନ୍ତି ।

## ( ତେଇଶି )

ସେହି ଯୁଦ୍ଧ ଘନଘଟାର ବେଶ୍ କିଛୁଦିନ ପରେ ହିରଣ୍ୟଗଡ଼ର ଅନ୍ଦରମହଲରେ ପାଖାପାଖି ବସି ଆଲୋଚନାରେ ରତ ଥିଲେ ଦୁଇଭାଇ—ଦୁର୍ଲ୍ଲଭରାୟ ଓ ରାଜାରାୟ । ନିକଟରେ ବସି ଜଳଯୋଗର ଆୟୋଜନରେ ବ୍ୟସ୍ତ ଥିଲେ ରାଣୀ ବିଳାସବତୀ । ଦୁର୍ଲ୍ଲଭରାୟ ଚିନ୍ତିତ ମୁଖ ମୁଦ୍ରାରେ କହିଲେ—"ଇଂରେଜମାନଙ୍କ ପରି କୂଟନୀତିସମ୍ପନ୍ନ ଜାତି ଏ ଜଗତରେ ଆଉ କେହି ନାହାନ୍ତି ।"

"କାହିଁକି ଏପରି କହୁଛନ୍ତି ଭାଇ...?" କହିଲେ ରାଜାରାୟ—"ତୁମେ ତ ସେଦିନ ହେସବାନ୍ ସାହେବର ଝିଅଟିକୁ ସମୁଚିତ ଶାସ୍ତି ଦେବାଲାଗି ସେଇମାନଙ୍କ ସହିତ ହାତ ମିଳାଇ କମର କଷିଥିଲ..."

"ମୁଁ ଭାବିଥିଲି..." ଟିକିଏ ରହିଯାଇ କହିଲେ ଦୁର୍ଲ୍ଲଭରାୟ—"କଣ୍ଟାଟିଏ ନେଇ ଆଉ ଗୋଟିଏ କଣ୍ଟାକୁ ଖୋଳି ବାହାର କରି ଦେବାକୁ । ତାହାହିଁ ମୋର ଯୋଜନା ଥିଲା । କିନ୍ତୁ ଏବେ ଦେଖୁଛି ସେଇ କଣ୍ଟାଟି ବୁଲିପଡ଼ି ମୋରି ପାଦରେ ଫୁଟିଯାଉଛି ।"

ପାଖରେ ଜଳଖିଆଥାଳି ଦୁଇଟି ଧରି ଛିଡ଼ାହୋଇଥିଲେ ରାଣୀ ବିଳାସବତୀ । ସେ ସ୍ୱାମୀଙ୍କ ମନ୍ତବ୍ୟରୁ କିଛି ବୁଝିନପାରି କହିଲେ—"ଏ କି କଥା ? ମୁଁ ତ କିଛି ବୁଝି-ପାରୁନାହିଁ..."

ଚିନ୍ତିତ ମୁଖ ଉପରକୁ ଉଠାଇ କହିଲେ ଦୁର୍ଲ୍ଲଭରାୟ—"ଫଲ୍‌ମନ୍‌ର ମୃତ୍ୟୁ ପାଇଁ ଏ ନୀଳକୋଠିର ସାହେବଦଳ ମୋତେ ହିଁ ଦୋଷୀ କରୁଛନ୍ତି । ସେମାନେ କହନ୍ତି—

ଫଲମନ୍ ସାହେବଙ୍କୁ ହେପବାନ୍‌ର ବିଅ ବିରୁଦ୍ଧରେ ଉସ୍‌କେଇ ଦେଇ, ତାଙ୍କୁ ପଛପଟରୁ ଗୁଳି କରିଛୁ ଆମ ଦଳ ।"

"ଏପରି ଗୋଟାଏ ଅମୂଳକ ଧାରଣା ସେମାନଙ୍କର ହେଲା କିପରି ?"—ବିସ୍ମିତ ହୋଇ ପଚାରିଲେ ରାଜାରାମ୍ମ ।

"ଫଲମନ୍‌ର ଲାସ୍‌ଟାକୁ ସେମାନେ ପରଦିନ ଯୋଗାଡ଼ କରିନେଇଥିଲେ । ପରୀକ୍ଷା କରି ଦେଖିଲେ ଯେ ତା ପିଠିରେ ଗୁଳି ବାଜିଛି ।"

"ସେଥିରୁ କିପରି ପ୍ରମାଣିତ ହେଉଛି ଯେ ଆମେ ତାଙ୍କୁ ଗୁଳି କରି ମାରିଦେଇଛୁ ବୋଲି...?" ଅଧୈର୍ଯ୍ୟ ହୋଇ ପଚାରିଲେ ରାଜାରାମ୍ମ ।

"ଆମେ କାଳେ ତାଙ୍କୁ ଆଗେଇଦେଇ, ଆମ ସ୍ୱାର୍ଥ ସାଧନ ଉଦ୍ଦେଶ୍ୟରେ ପଛପଟୁ ତାଙ୍କୁ ଗୁଳିବିଦ୍ଧ କରିଛୁ ବୋଲି ସେମାନଙ୍କ ଧାରଣା..." କହିଲେ ଦୁର୍ଲ୍ଲଭ ରାମ୍ମ ।

"ଏହା ମଧ୍ୟ ହୋଇପାରେ..." ଦୁଇଭାଇଙ୍କ ଆଲୋଚନା ମଧ୍ୟରେ ହସ୍ତକ୍ଷେପ କରି କହିଲେ ରାଣୀ ବଳାସବତୀ—"ସେ ଘୋଡ଼ା ଛୁଟେଇ ପଳାଇଯିବା ବେଳେ ଶତ୍ରୁପକ୍ଷର ଗୁଳିଦ୍ୱାରା ମୃତ୍ୟୁମୁଖରେ ପଡ଼ିଛି..."

"ହଁ...ନୂଆବୋଉ, ତାହାହିଁ ଯଥାର୍ଥ ସତ୍ୟ..." କହିଲେ ରାଜାରାମ୍ମ ।

"ଇଂରେଜମାନେ ପ୍ରକୃତ ସତ୍ୟ ଜାଣିଲେ ମଧ୍ୟ ସ୍ୱୀକାର କରିବାକୁ ନାରାଜ ଯେ ଜଣେ ଶ୍ୱେତାଙ୍ଗ ଯୁଦ୍ଧକ୍ଷେତ୍ରରୁ ପଳାଇଯାଇପାରେ । କାରଣ ସେମାନେ କାଳେ ଶ୍ରେଷ୍ଠ ବୀରଜାତି —ପଛଘୁଞ୍ଚା ସେମାନଙ୍କ ଜାତକରେ ନାହିଁ"—କହିଲେ ଦୁର୍ଲ୍ଲଭ ରାମ୍ମ ।

ପୁଣି ଯୁକ୍ତି କରି କହିଲେ ରାଜାରାମ୍ମ—"ଫଲମନ୍‌କୁ ମାରିବାରେ ଆମର ସ୍ୱାର୍ଥ କ'ଣ ?"

ସେମାନେ ଆମଠାରୁ ଖୁବ୍ ବୁଦ୍ଧିମାନ୍ ରାଜା । ମିଛକୁ ସତ କରି ଗୋଟିଏ ଘଟଣା ରଚିଦେବା ସେମାନଙ୍କ ପକ୍ଷରେ ବାଆଁ ହାତର ଖେଳ । ସେମାନେ କହୁଛନ୍ତି ଆମେ ଫଲମନ୍‌କୁ ପ୍ରଥମେ ଉତ୍ତେଜିତ କରାଇଥିଲେ ମିସ୍ ହେପ୍‌ବାନ୍ ବିରୁଦ୍ଧରେ । ସେହିମାନେ ପ୍ରଥମେ ଫଲମନ୍‌କୁ ଉତ୍ତେଜିତ କରାଇ, ହେପବାନ୍‌ର ଶକ୍ତି ପରୀକ୍ଷା କରୁଥିଲେ ଦୂରରେ ଥାଇ । ଯେତେବେଳେ ପ୍ରତ୍ୟକ୍ଷରେ ଦେଖିଲେ ମିସ୍ ହେପବାନ୍‌କୁ ହରାଇବା ସହଜ ନୁହେଁ, ତେଣୁ ଏବେ ଗୋଟିପଣେ ତା'ପଟର ହୋଇଯାଇ, ଆମକୁ ଶତ୍ରୁ ରୂପେ କାଠଗଡ଼ାରେ ଠିଆକରାଇବାକୁ ମସୁଧା କରୁଛନ୍ତି... ।"

ରାଜାରାମ୍ମ ବିବ୍ରତ ହେଲା ପରି ପୁଣି ପ୍ରଶ୍ନ କଲେ—"ହେଲା, ସେମାନଙ୍କ ଅନୁମାନ ସତ୍ୟ—କିନ୍ତୁ ଫଲମନ୍‌କୁ ମାରିବାରେ ଆମର ସ୍ୱାର୍ଥ କ'ଣ ?"

"ତୁ ସେ କୂଟନୀତି ବୁଝିପାରିବୁ ନାହିଁ ଭାଇ ।" କହିଲେ ଦୁର୍ଲ୍ଲଭ ରାମ୍ମ—"ସେମାନଙ୍କ ଯୁକ୍ତି ହେଉଛି—ଆମେ ଫଲମନ୍‌କୁ ମିସ୍ ହେପବାନ୍ ବିରୁଦ୍ଧରେ ଲଗାଇଦେଲେ, ଯେତେବେଳେ ଦେଖିଲେ ଫଲମନ୍ ହାରିଯାଉଛି, ସେତେବେଳେ କୁମାରୀ ଆନାର ସପକ୍ଷବାଦୀ ହୋଇ ଫଲମନ୍‌କୁ ପଛରୁ ଗୁଳିକରି ହତ୍ୟା କରି ହେପବାନ୍ ପ୍ରତି ଆମର ଆନ୍ତରିକତା ଜଣାଇ-

ଥିଲେ । ଆଜି ମଧ୍ୟ ସେମାନେ ଯୁକ୍ତି କରୁଛନ୍ତି ଫଲମନ୍‌କୁ ମାରିବାର ଆମର ଅସଲ ଉଦ୍ଦେଶ୍ୟ ହେଉଛି ଫଲମନ୍‌ର ମୃତ୍ୟୁ ଖବର ଶୁଣିବାମାତ୍ରେ ନୀଳକୋଠିର ସାହେବମାନେ ଏକଜୁଟ୍ ହୋଇଯାଇ ହେସଟାନ୍ ବିରୁଦ୍ଧରେ ଆଗେଇଆସିବେ ।"

"ତା'ହେଲେ କ'ଣ ଅଦାଲତରେ ମାମଲା ଆରମ୍ଭ ହୋଇଯାଇଛି ?" ପଚାରିଲେ ରାଣୀ ବିଳାସବତୀ ।

"ମାମଲା ଦାଏର୍ କରିବାଲାଗି ସେମାନଙ୍କୁ ବେଶି ଡେରି ଲାଗିବନି; କାରଣ ବିଚାରକ-ଦଳ ତ ତାଙ୍କର ଜାତଭାଇ ବିଦେଶୀ"—କହିଲେ ଦୁର୍ଲ୍ଲଭ ରାୟ ।

"ଏ କ'ଣ କହୁଛ ଭାଇ ?" ଚକିତ ମୁଖମୁଦ୍ରାରେ ଉତ୍ତେଜିତ ହୋଇ କହିଲେ ମହାରାୟ—"ବିଚାର ହେବ ସତ୍ୟ ଓ ମିଥ୍ୟାକୁ ନେଇ । ସେଠାରେ ଜାତଭାଇ ଓ ଦେଶୀ ବିଦେଶୀର ପ୍ରଶ୍ନ କାହିଁକି ?"

"ସେଇଟା ତୋ ସଙ୍ଗୀତର ମହଲ ନୁହେଁ ରାଜା !" କହିଲେ ଦୁର୍ଲ୍ଲଭ ରାୟ—"ସେ ହେଉଛି ଆଉ ଏକ ସ୍ୱତନ୍ତ୍ର ଜଗତ୍ । ସେଠାରେ ସତ୍ୟ ଓ ମିଥ୍ୟା ଏପରି ଭାବରେ ଘାଣ୍ଟି-ଗୋଳେଇ ହୋଇ ରହିଥା'ନ୍ତି ଯେ, ସତ୍ୟରୁ ମିଥ୍ୟା ବା ମିଥ୍ୟାଠାରୁ ସତ୍ୟକୁ ପୃଥକ୍ କରିବା ଗହନ ବ୍ୟାପାର ।"

ଭାଇଙ୍କ କଥାଟିକୁ ସମ୍ପୂର୍ଣ୍ଣ ସତ୍ୟ ବୋଲି ଆଦୌ ଧାରଣା କରିପାରିଲେ ନାହିଁ ରାଜାରାୟ । ତେଣୁ ସେ ମୁଣ୍ଡ ହଲାଇ ହଲାଇ କହିଲେ—"ଏହା କପରି ହୋଇପାରିବ ?"

ଦୁର୍ଲ୍ଲଭ ରାୟ କୁମାରଙ୍କ ମନ୍ତବ୍ୟରେ ମନେ ମନେ ଚଢ଼ିଯାଇ କହିଲେ—"ରାଜା, ତୁ ତ କେବେହେଲେ ଅଦାଲତର ଗୁଡ଼ା ପୁଛା ମାଡ଼ିନୁ—ତୁ କୁଆଡ଼ୁ ଜାଣିବୁ ସେଠାରେ କ'ଣ ଚାଲିଛି ! ସେଇଥିପାଇଁ ତୁ ନିଶ୍ଚିନ୍ତରେ ମୁଣ୍ଡ ହଲାଇପାରୁଛୁ । ସେଠାକାର ହାଲଚାଲକଥା ଜାଣିଲେ ତୋ'ର ଏ ଧାରଣା କୁଆଡ଼େ ଫୁର୍‌କରି ଉଡ଼ିଯିବ ।" ତା'ପରେ ସେ ଟିକିଏ ରହିଯାଇ କହିଲେ—"ଦିନକର ଘଟଣା ଶୁଣ । ମୁଁ ସେଦିନ ଯାଇଥିଲି ଅଦାଲତକୁ ଗୋଟିଏ ମୋକଦ୍ଦମାର ତଦ୍‌ବିର ନେଇ । ଦେଖିଲି—ଜଣେ ନୀଳକୋଠିର ମାଲିକ ସାହେବଙ୍କ ବିରୁଦ୍ଧରେ ଚାଷୀମାନେ ଅଦାଲତରେ ମୋକଦ୍ଦମା ରୁଜୁ କରିଛନ୍ତି ଏବଂ ସେହି ଦୋଷୀ ସାହେବ ଜଣକ ଇଜଲାସ୍‌ରେ ବିଚାରକଙ୍କ ପାଖରେ ବସି ଖୁସିଗପ ଜମେଇଛନ୍ତି । ଏଥିରୁ ତୁମେ କପରି ଭାବୁଛ ତୁମକୁ ସୁବିଚାର ମିଳିବ ବୋଲି ?"

ଭାଇଙ୍କ ମୁହଁରୁ ଏକଥା ଶୁଣି ରାଜାରାୟ ନିତାନ୍ତ ଅନ୍ୟମନସ୍କ ହୋଇପଡ଼ିଲେ । ଆଜି-ଯାଏଁ ତାଙ୍କର ଧାରଣା ଥିଲା—ଆଉ ଯାହା ହେଉନା କାହିଁକି, ବିଚାରକର ଆସନରେ ବସି ଇଂରେଜ ବିଚାରପତିମାନେ ଅନ୍ତତଃ ପକ୍ଷପାତିତା କରୁନଥିବେ ।"

ବିଳାସବତୀଙ୍କର ଗୋଟିଏ ଭଲ ଗୁଣ ଥିଲା—ସେ ଥିଲେ ସ୍ପଷ୍ଟବାଦିନୀ । ଅନେକ ସମୟରେ ତାହା ଦୁର୍ଲ୍ଲଭ ରାୟଙ୍କର ଭୟ ଓ ଆଶଙ୍କାର କାରଣ ହୋଇଉଠୁଥିଲା । ସେ ହଠାତ୍ କହିପକାଇଲେ—"ଏ କ୍ଷେତ୍ରରେ ତୁମେ କଣ ଅନ୍ୟାୟ କରିନ···?" "ତୁମେ ଏ କ'ଣ କହୁଛ···?" ମୁଣ୍ଡ ଉପରକୁ ଉଠାଇ କହିଲେ ଦୁର୍ଲ୍ଲଭରାୟ ।

"ମୁଁ କ'ଣ ଭୁଲ କହୁଛି···?" କହିଲେ ବଳାସବତୀ—"ତୁମେ ଗୋଟିଏ ନିରୀହ ଝିଅକୁ ମିଛଟାରେ ଶାସ୍ତି ଦେବାକୁ ଯାଇନ···?"

"ତୁମେ କ'ଣ ଜାଣିଛ···?" କହିଲେ ଦୃଢ଼ଚିତ୍ତ ସହିତ ଦୁର୍ଲଭସିଂହ—"ସିଏ ହାପବାର୍ଜି ପୁଣି ନିରୀହ ନା···?" ଏତିକି କହି ଠୋ' ଠୋ' ହୋଇ ଅଟ୍ଟହାସ କରିଉଠିଲେ ସେ।

ରାଣୀ ବଳାସବତୀ କିନ୍ତୁ ନିଜ ଜିଦ୍‌ରୁ ଓହରି ନଯାଇ କହିଲେ—"ମୋତେ ବୁଝାଇ-ଦେଲ, ସେ କି କି ଅନ୍ୟାୟ କରିଛି···।" ଦୁର୍ଲଭସିଂହ ଦୃଢ଼ଚିତ୍ତ ସହିତ କହିଲେ—"ତା'ର ପ୍ରଥମ ଅନ୍ୟାୟ ହେଉଛି ସେ ବିଦେଶିନୀ। ଆଉ ଦ୍ୱିତୀୟ ଅନ୍ୟାୟ ହେଉଛି—ତା' ବାପା ଆମର ଭୂସମ୍ପତ୍ତି ଉପରେ ତା'ର ନାଲକୋଠି କରିଛି ଆମର ଗ୍ରାଠରେ ଆଘାତ ଦେଇଛି।

"ଓଃ···ତା'ହେଲେ ଏଇଆ ହେଉଛି ତା'ର ଅନ୍ୟାୟ ନା···?" କହିଲେ ବଳାସବତୀ—"ତୁମେ ଭୁଲିଯାଉଛ ଯେ, ବିପଦର ସମ୍ମୁଖୀନ ହୋଇ ତୁମେ ଓଡ଼େନ୍ ସାହେବଙ୍କୁ ବିକି କରିଥିଲ ତୁମର ଭୂସମ୍ପତ୍ତି।"

"ତୁମେ କାହିଁକି ଭାବୁନାହଁ ଯେ, ଆମେ ଯେତେବେଳେ ଅସୁବିଧାରେ ପଡ଼ିଥିଲେ, ସେତିକିବେଳେ ସେ ଆମ ପିଠିରେ ଧଳାର ହୋଇ ଶାଗ ମୁଗ ମୂଲରେ ଆମ ଭୂସମ୍ପତ୍ତିକୁ କିଣିନେଇ ଆମର ଉପରେ ହାକିମ୍ ଚଳେଇବାର ମସୁଧା କରୁଛି।" ଏବଂ ସେ ଏ ଦେଶ ଛାଡ଼ି ଚାଲିଯିବା ପରେ, ତା'ର ନିର୍ଦ୍ଦୋଷ କନ୍ୟା ଉପରେ ତୁମେ ଦାଉ ସାଧିବାକୁ ବସିଛ। ତେଣୁ ଏ ପ୍ରକାର ମନୋଭାବ ହିଁ ତୁମର ଅନ୍ୟାୟ।"

ରାଜାରାୟ ବେଶ୍ ବୁଝିପାରିଲେ ଯେ, ଆଜି ନୂଆବୋହୂଙ୍କ କବଳରୁ ନିସ୍ତାର ପାଇବାର କୌଣସି ଉପାୟ ନାହିଁ ତାଙ୍କର। ତେଣୁ ସେ ହସି ହସି କହିଲେ—"ତା'ହେଲେ କ'ଣ ଏଣିକି ବୋହୂଠାକୁରାଣୀ ଜମିଦାରୀର ସମସ୍ତ ଦାୟିତ୍ୱ ନିଜ ହାତକୁ ନେଇ ବୁଝାବୁଝି କରିବାର କୌଶଳ କରୁଛନ୍ତି କି ?"

"ଅଚ୍ଛା, ତୁମେ କହିଲ କୁମାର, ଜଣକର ଦୋଷପାଇଁ ଆଉଜଣକୁ ଦଣ୍ଡ ଦେବା ଗୋଟାଏ ବୃଥା ଅଭିମାନ ନୁହେଁ ତ ଆଉ କ'ଣ ?" କହିଲେ ବଳାସବତୀ।

ଏଇ ଗୋଟିଏ କଥାରେ ହାର୍ ମାନିଲେ ଦୁର୍ଲଭସିଂହ। ସେ ବଳାସବତୀଙ୍କର ଖେକ୍‌ଠୋକ୍ କଥାରେ କେବେହେଲେ ଜୟୀ ହୋଇପାରନ୍ତି ନାହିଁ। ସେ ପ୍ରକାର ସାହସ ମଧ୍ୟ ତାଙ୍କର ନାହିଁ। ଅନେକ ସମୟ ଚିନ୍ତା କରିବା ପରେ କଥାର ଗତି ବଦଳାଇ ଦେଇ କହିଲେ ଦୁର୍ଲଭ ସିଂହ—"ଛାଡ଼ ସେ ସବୁ କଥା ! ସବୁ ଆମ ଦୁର୍ଭାଗ୍ୟର ଫଳ। ଆଜି ଯଦି ଆମ ପାଖରେ ସେହି ଭାଗ୍ୟଲକ୍ଷ୍ମୀ ସ୍ୱରୂପ ସୁନାର ମୂର୍ତ୍ତିକାଟି ଥାଆନ୍ତା, ଆମର ଏ ଦୁର୍ଦ୍ଦଶା ହୋଇଥାନ୍ତା କାହିଁକି ?"

ଏଇ ସାମାନ୍ୟ କଥାପଦକ ଦୁର୍ବଳ କରିଦେଲା ରାଣୀ ବଳାସବତୀଙ୍କୁ। ସେ ଆଖି ଛଳ-ଛଳ କରି ନୀରବ ହୋଇଗଲେ ଏବଂ ତାଙ୍କଠାରୁ ଅଧିକ ବ୍ୟସ୍ତ ହୋଇପଡ଼ିଲେ ଜ୍ୟେଷ୍ଠ କୁମାର ରାଜାରାୟ।

( ଚବିଶ )

ରାତ୍ରିର ପ୍ରଥମ ପ୍ରହର । ଝିଁ ଝିଁ ଆ ପୋକ ରାତ୍ରିର ନିସ୍ତବ୍ଧତା ଭଙ୍ଗକରି ସ୍ୱର ମେଲିଛନ୍ତି ଗଛପତ୍ରର ଡାଳ ସନ୍ଧିରେ । ଦୂର ନଦୀତୀର ବଣରେ ଶିଆଳମାନେ ପ୍ରହରର ସୂଚନାଦେଇ ଡାକ ଛାଡ଼ିଛନ୍ତି—ହୁକେ ହୋ’ ହୁକେ···। ଆଖପାଖ ଫଳଭରା ଗଛରୁ ବାଦୁଡ଼ିମାନେ ପକ୍ଷ ମେଲାଇ ଫଡ଼୍ ଫଡ଼୍ ଶବ୍ଦକରି ଉଡ଼ିଯାଉଛନ୍ତି ଅନ୍ୟଗଛକୁ । ଏପରି ଏକ ସାନ୍ଦ୍ର ତଥା ନିବିଡ଼ ଅନ୍ଧକାର ମଧ୍ୟରେ ନଈକୂଳ ଘାଟ ପାଖରେ ଅଧୀର ତଥା ଆଗ୍ରହରେ ନିର୍ଦ୍ଦିଷ୍ଟ ଏକ ଉଦ୍ଦେଶ୍ୟରେ ଘୂରିବୁଲୁଛନ୍ତି ରାଜାରାୟ । ସୁବର୍ଣ୍ଣରେଖାର କଳକଳ ଛଳଛଳ ଧ୍ୱନିରେ ଶବ୍ଦାୟିତ ହୋଇଉଠୁଛି ତଟବର୍ତ୍ତୀ ପଥରବନ୍ଧା ଘାଟଟା ।

ହଠାତ୍ ରାଜାରାୟ ଛିଡ଼ାହୋଇଗଲେ ସେଇ ଘାଟ ପାଖରେ । ସେ ଚାହିଁରହିଲେ ଏକଲୟରେ ପୂର୍ବଦିଗ ଆଡ଼କୁ । ଚନ୍ଦ୍ର ପଡ଼ିମାଣ ଉଠିବାକୁ ଆଉ କେତେ ବିଳମ୍ବ ହେବ ଏଇ ପ୍ରଶ୍ନ ଉଙ୍କି ମାରୁଛି ତାଙ୍କର ବିହ୍ୱଳ ମନରେ । ଧୀରେ ଧୀରେ ସେ ଦେଖି ପାରିଲେ —ଘନ ଅରଣ୍ୟାନୀ ଭେଦକରି ଆଲୋକମୟ ହୋଇଉଠିଲା ପୂର୍ବଦିଗର ଆକାଶ । ଗୋଟିଏ ଆଲୋକରେଖା କ୍ରମେ କ୍ରମେ ବୃଦ୍ଧି ପାଇ ଏକ ଆଲୋକମୟ ରାଗିଣୀରେ ପରିଣତ ହୋଇଗଲା । ବିମୁଗ୍ଧ ଦୃଷ୍ଟିରେ ସେଇ ଆଲୋକମୟ ରେଖା ଆଡ଼କୁ ଏକଲୟରେ ଚାହିଁରହି ରାଗିଣୀର ମହକରେ ଆମୋଦିତ ହୋଇଉଠିଲା ରାଜାରାୟଙ୍କ ସ୍ୱରଝଙ୍କାର । ମନେହେଲା—ସତେ ଯେପରି ତରଙ୍ଗାୟିତ ଅନ୍ଧକାରର ପ୍ରବାହରେ ଭାସିଆସୁଛି ଗୋଟିଏ ଆଲୋକିତ ତରଣୀ ନଦୀର ବକ୍ଷଭେଦକରି ଏବଂ ଅନ୍ଧକାରର ନିବିଡ଼ତା ଅପସାରିତକରି ।

ଚନ୍ଦ୍ରୋଦୟ ସମ୍ପୂର୍ଣ୍ଣ ହେଲା । ରାଜାରାୟ ବିହ୍ୱଳତାରେ ସ୍ୱର ଜଗତରେ ଆତ୍ମହରା ହୋଇ-ଉଠିଲେ । ସ୍ୱରର ଝଙ୍କାର ଯେତେବେଳେ ବିରାମ ହେଲା, ସେ ଚମକିପଡ଼ି ପଛକୁ ଅନାଇ ଦେଇ କହିଉଠିଲେ—‘‘କିଏ ତୁମେ···ନା, ନା କ୍ଷମା କରିବେ ମିସ୍ ହେପବାର୍ନ ! ପ୍ରଥମେ ‘ତୁମେ’ ବୋଲି ସମ୍ବୋଧନ କରିଥିବାରୁ ମନେ ମନେ ସଙ୍କୁଚିତ ହୋଇଉଠିଲେ ରାଜାରାୟ ।

‘‘ମୁଁ ଦେଖୁଛି—ଖୁବ୍ ସହଜରେ ଆପଣ ପରକୁ ଆପଣାର କରିନେଇପାରନ୍ତି କୁମାର ବାହାଦୁର ।’’ ହସି ହସି କହିଲା ଆନା ।

‘‘ସଙ୍ଗୀତ ମଧ୍ୟରେ ବୁଡ଼ିରହିଥିଲି ଏପର୍ଯ୍ୟନ୍ତ । ତେଣୁ ଆପଣଙ୍କ ଉପସ୍ଥିତି ଆଦୌ ଜାଣିପାରିନି । ତେଣୁ ଦ୍ୱିତୀୟବାର କ୍ଷମା ପ୍ରାର୍ଥନା କରୁଛି ।’’

‘‘ଏହା ମୋର ଅଧିକ ଲାଭ କୁମାର ସାହେବ । ବାପାଙ୍କ ସହିତ ଲକ୍ଷ୍ନୌରେ ଥିବାବେଳେ ଜଣେ ପଡ଼ୋଶୀଙ୍କ କଣ୍ଠରୁ ଶୁଣିଥିଲି—ଭାରତୀୟ ସଙ୍ଗୀତର ଏଇ ଅପୂର୍ବ ସ୍ୱରଝଙ୍କାର, ଅବଶ୍ୟ

ମୁଁ ସେତେବେଳେ ଭାରତୀୟ ସଙ୍ଗୀତର ମାଧୁର୍ଯ୍ୟ ବିଶେଷ ଭାବରେ ହୃଦୟଙ୍ଗମ କରି-ନଥିଲି......"

"ସଙ୍ଗୀତରେ ଆପଣଙ୍କର ଖୁବ୍ ଆଗ୍ରହ ଅଛି ଦେଖୁଛି..." କହିଲେ ରାଜାସାହେବ ।

"ମୋ' ମାଆ ଥିଲେ ସଙ୍ଗୀତର ବିଶେଷ ଅନୁରାଗିଣୀ । ତାଙ୍କର ଶିକ୍ଷାଯୋଗୁ ସ୍ୱରଜଗତ ହିହିତ ମୋର ପରିଚୟ"—କହିଲି ଆନା ।

ରାଜାସାହେବ ଉଲ୍ଲସିତ ହୋଇ କହିଲେ—"ଆମର ପ୍ରଥମ ସାକ୍ଷାତରେ ମୋତେ ଜଣେ ଶିଳ୍ପୀ ବୋଲି ଆପଣ ଧାରଣା କରିଥିଲେ ଏବଂ...।"

"ଆପଣ ମୋତେ ଜଣେ ବନ୍ଧୁକଧାରିଣୀରୂପେ ଦେଖିଥିଲେ..." ବାକ୍ୟଟି ପୂର୍ଣ୍ଣଚ୍ଛେଦ ପର୍ଯ୍ୟନ୍ତ ଟାଣିଅଣିଲି ଆନା—"ଏବଂ ତା'ପରେ ଦେଖୁଛି—ମୋ' ପ୍ରତି ଆପଣଙ୍କ ଧାରଣାର ପରିବର୍ତ୍ତନ ଘଟିଛି ।"

"ମନର ଧାରଣା ସବୁବେଳେ ଚିରସ୍ଥାୟୀ ହୁଏନା ମିସ୍ ହ୍ୱେପବାର୍ନ ।"

"ମୁଁ କେବଳ ଆନା । ମିସ୍ ହ୍ୱେପବାର୍ନ କହି ମୋତେ ସ୍ୱର-ଜଗତର 'ବିଲମ୍ବିତ' ଭିତରକୁ ଟାଣିନିଅନ୍ତୁନି କୁମାର !"

"ତା'ହେଲେ ଏଣିକି ମୁଁ କେବଳ 'ଆନା' ବୋଲି ଆପଣଙ୍କୁ ସମ୍ବୋଧନ କରିବି ?"

"ଆପଣ ପରିବର୍ତ୍ତେ ଅଧିକ 'ଦ୍ରୁତ' ହେବ 'ତୁମେ' କହିଲେ ଏବଂ ସେଇଥିରେ ହିଁ ମୁଁ ବିଶେଷ ଖୁସି ହେବି"—କହିଲି ଆନା ।

"ତା'ହେଲେ ଚାଲ ଆନା ମୋର ଉଦ୍ୟାନବାଟିକାକୁ ।"

"ଆଜି ମୁଁ ଆପଣଙ୍କର ଅତିଥି—ତେଣୁ ମୋତେ ଯେକୌଣସି ସ୍ଥାନକୁ ନେଇଯିବାର ଅଧିକାର ଆପଣଙ୍କର ଅଛି ।"

ରାଜାସାହେବ ବାଟ କଢ଼ାଇ ଆଗେଇଗଲେ ଏବଂ ସେଇ କ୍ଷୀଣ ଚନ୍ଦ୍ରାଲୋକରେ ପଥୁରିଆ ଚାଲିପଥରେ ଅନୁସରଣ କଲି ଆନା । କିଛି ଦୂର ଅତିକ୍ରମ କଲା ପରେ ତାହାଣପଟେ ଦେଖାଗଲା ଗୋଟିଏ ହ୍ରଦ । ଅଜସ୍ର ଶ୍ୱେତ, ନୀଳ ତଥା ରକ୍ତକୁମୁଦରେ ହ୍ରଦଟି ପରିପୂର୍ଣ୍ଣ । ଚନ୍ଦ୍ରାଲୋକରେ ହ୍ରଦଟି ଏକ ରହସ୍ୟମୟ ସ୍ଥାନରେ ପରିଣତ ହୋଇଛି । ହ୍ରଦଟିର ଗୋଟିଏ ତଟରେ ଦୀର୍ଘବପୁଷ୍ମାନ୍ ଛାୟାଧାରୀ ପ୍ରହରୀ ପରି ଛିଡ଼ାହୋଇଛନ୍ତି ଧାଡ଼ି ଧାଡ଼ି ତାଳବୃକ୍ଷ । ଗୋଟିଏ ବାଙ୍କ ବୁଲିଯିବା ପରେ ଆନା ଲକ୍ଷ୍ୟକଲା ହ୍ରଦଟି ଅନେକ ଦୂରଯାଏଁ ପ୍ରସାରିତ ହୋଇଯାଇଛି । ହଠାତ୍ ପାଦ ଅଟକିଗଲା ଆନାର । ସେ ସ୍ପଷ୍ଟ ଦେଖିପାରିଲା ହ୍ରଦଭିତରେ କ୍ଷୁଦ୍ର ଦ୍ୱୀପଟିଏ, ଆଉ ସେଇ ଦ୍ୱୀପରେ କ୍ଷୁଦ୍ର ଦ୍ୱିତଳ ପ୍ରାସାଦ । ଗୃହର ଗବାକ୍ଷ ମାର୍ଗ ଦେଇ ଜଳରେ ପ୍ରତିବିମ୍ବିତ ହେଉଛି ନୀଳଗଗନର ତାରକାବଳୀ ପରି ଆଲୋକରଶ୍ମି । ମୁଗ୍ଧ ନୟନରେ ଚାହିଁରହିଲା ଆନା ସେଇ ଜଳମହଲର ଅପରୂପ ଶୋଭା ସମ୍ପଦ ଆଡ଼କୁ ।

ହଠାତ୍ ନୀରବତା ଭଙ୍ଗକରି କହିଉଠିଲେ ରାଜାସାହେବ—"ଆନା, ଏଇଟି ହେଉଛି ମୋର ବୈଠକଖାନା ଅଥବା ବିଶ୍ରାମଗୃହ ଯାହା ବୋଲି କହିପାର । ଯଦି କିଛି ଆପତ୍ତି

କଥାଏ, ଆମେ ଯିବା ସେଇଠିକି ।"

"ଆପତ୍ତି କ'ଣ କୁମାର ବାହାଦୁର—ଯେକୌଣସି ମଣିଷ ପକ୍ଷରେ ସ୍ଥାନଟି ଅତ୍ୟନ୍ତ ରମଣୀୟ ଏବଂ ଜଣେ ଶିଳ୍ପୀ ପକ୍ଷରେ ତ 'ନନ୍ଦନକାନନ' ।

ରାଜାରାମ୍ ଉତ୍ଫୁଲ୍ଲିତ ହୋଇ କହିଲେ—"ସ୍ଥାନଟି ଯେତେବେଳେ ତୁମର ପସନ୍ଦ ହୋଇଛି, ତେବେ ଚାଲ ଯିବା ।"

"କେବଳ ପସନ୍ଦ ନୁହେଁ କୁମାର ସାହେବ—ଈର୍ଷ୍ୟା ହେଉଛି ଆପଣଙ୍କ ପ୍ରମୋଦ ଗୃହଟିକୁ ଦେଖି । ବାସ୍ତବିକ ଆପଣ ଜଣେ ଶିଳ୍ପୀ ।"

ହସି ହସି କହିଲେ କୁମାର ରାଜାରାମ୍—"ଅଉ ଟିକିଏ ଆଗେଇ ଚାଲନ୍ତୁ, ଘାଟରେ ବନ୍ଧାହୋଇଛି ଗ୍ରେଟ ନୌକାଟିଏ ।"

ଦୁହେଁଯାକ ଆଗପଛ ହୋଇ ଆସି ପହଞ୍ଚିଗଲେ ହ୍ରଦର ଜଳଘାଟରେ । ଖଣ୍ଡିଏ ଗ୍ରେଟ ସୁସଜ୍ଜିତ ନୌକା ଉପରକୁ ଉଠିଗଲେ ରାଜାରାମ୍ ଏବଂ ହାତ ଧରି ଉଠାଇନେଲେ ନୌକା ଉପରକୁ ବସୁନ୍ଧର ବମୁରୁଧା ଆନାକୁ ।

ପ୍ରମୋଦ କୁଟୀରକୁ ପ୍ରବେଶ କରି ଆନା ଅଧିକ ଅଶ୍ଚର୍ଯ୍ୟ ହୋଇଗଲା । ପାଦତଳେ ନାନାରଙ୍ଗ ତଥା ଲତାବିତାନରେ ରଞ୍ଜିତ ପର୍ଶିଆନ୍ କାର୍ପେଟ୍ । ଗୃହଟିର ଶ୍ରୁତରେ ଝୁଲୁଛି ଆଲୋକବର୍ତ୍ତିକାପୂର୍ଣ୍ଣ ଫୁଲଝାଡ଼ । ବଲୋଆ କାଚଗୁଡ଼ିକରୁ ଝରିପଡ଼ୁଛି ଇନ୍ଦ୍ରଧନୁର ସାତଗୋଟି ରଙ୍ଗ । ଧାଡ଼ିହୋଇ ସଜାଯାଇଛି ବିଭିନ୍ନ ବାଦ୍ୟଯନ୍ତ୍ର । ତନ୍ମୟ ହୋଇ ଆନା ଦେଖିଗଲା ଗୋଟି ଗୋଟି କରି ଗୃହଟିର ସାଜସଜ୍ଜା । ମନେହେଲା ସତେ ଯେପରି, ସ୍ୱରର ଗୋଟିଏ ଢେଉ ଉଠିଲା ଝଲକାଏ ଶୀତଳ ପବନରେ । ପ୍ରତିଟି ଯନ୍ତ୍ର ସତେଅବା ବାଜିଉଠିଲା ମନ୍ଦ୍ର ମଧୁର ତାନରେ ଏବଂ ସେ ସ୍ୱର ଝଙ୍କାର ବିଲୀନ ହୋଇଗଲା ହ୍ରଦର ବିମଳ ଜଳରାଶିରେ । ସତେବା ପ୍ରକମ୍ପିତ ହୋଇଉଠିଲା ହ୍ରଦର ବୀଚିମାଳା ସ୍ୱର ଝଙ୍କାରର ଅପରୂପ କମ୍ପନରେ ।

ବମୁରୁଧ ଦୃଷ୍ଟିରେ ଚାହିଁରହିଥିଲା ଆନା ସେଇଆଡ଼େ ଅପଲକନେତ୍ର ତଥା ଖିବବିହ୍ୱଳିତ ମନରେ ।

"ଏ କ'ଣ, ତୁମେ ଏଇଠି ଛିଡ଼ାହୋଇଛ ଆନା ! ମୁଁ ଭାବୁଛି ତୁମେ ମୋର ପଛେ ପଛେ ଆସୁଛ ବୋଲି ।"

"ଖୁବ୍ ଭଲଲାଗୁଛି କୁମାର ବାହାଦୁର !" କହିଲା କୁମାରୀ ଆନା ।

"କ'ଣ ଭଲଲାଗୁଛି ଆନା ?" ପଚାରିଲେ ରାଜାରାମ୍ ।

ଭାବଉଦ୍‌ବେଳିତ କଣ୍ଠରେ କରୁ ନମ୍ରବ କହିଲା ଆନା—"ସବୁ କିଛି···।" ହଠାତ୍ ସେ ସତର୍କ ହୋଇଉଠି, କଥାଟାକୁ ଘୁରେଇନେଇ ମୃଦୁ ହାସ୍ୟରେଖା ମୁହଁରେ ଖେଳାଇ ଦେଇ କହିଲା—"ଆପଣ ନିଃସଙ୍କୋଚରେ ମୋ' ନାଆଁ ଧରି ଡାକିବାଟା ମୋତେ ଖୁବ୍ ଭଲ ଲାଗୁଛି ।"

ମନେ ମନେ ହଲୁସି ଉଠିଲା ରାଜାବାହାଦୁରଙ୍କର ଅନ୍ତର । ସେ ଧୀରେ କହିଲେ—"ସାହସ ଭରି କଥାଟିଏ କହିବ ତୁମକୁ ?"

"କୁହନ୍ତୁ" ଅନ୍ୟମନସ୍କତାର ସହିତ କହିଲା ଆନା—"କଥା କହିବାରେ ପୁଣି ସଙ୍କୋଚ କାହିଁକି ?"

ତୁମେ ମୋତେ କେବଳ 'ରାଜା' ବୋଲି ଡାକ ଆନା ।" ହଠାତ୍ ସତର୍କ ହୋଇପଡ଼ିଲା ପରି କହିଲେ ରାଜାବାହାଦୁର—"ମୁଁ ଅବଶ୍ୟ କେବଳ ନାମକୁ ମାତ୍ର ରାଜା..."

ଦୁହେଁଯାକ ଖିଲ୍‌ଖିଲ୍ ହୋଇ ହସିଉଠିଲେ । ସେଇପରି ହସର ଲହରୀ ଖେଳାଇ କହିଲା ଆନା—"ଆପଣ କେବଳ ନାମରେ ମାତ୍ର ରାଜା ନୁହନ୍ତି, ସ୍ୱପ୍ନଜଗତର ମହାରାଜା ।"

ସେଦିନ ସଙ୍ଗୀତର ଆସର ଜମିଲା, କେତେ କ'ଣ କଥା କୁହାକୁହି ହେଲେ ଦୁ'ଜଣ ଏବଂ ରାଜାବାହାଦୁର ଓ ଆନା ହେଲପବାର୍ଦ ଦୁହେଁଯାକ ଦୁହିଁଙ୍କର ନିକଟତର ହୋଇପଡ଼ିଲେ । ଫେରି-ଯିବା ସମୟରେ ଆନାର ଆଖି ଲାଖିଗଲା ଗୋଟିଏ ମିଥୁନ ପ୍ରସ୍ତର ମୂର୍ତ୍ତିରେ । ମୁଗ୍ଧ ପ୍ରେମିକ ପ୍ରେମିକାର ଚିବୁକଟିକୁ ଡାହାଣ ହାତରେ ଟେକିଧରିଛି ଏବଂ ବାମହାତଟି ବେଢ଼ି ରହିଛି ନାୟିକାର ଗ୍ରୀବା ବେଷ୍ଟନ କରି ।

ହଠାତ୍ ଦୃଷ୍ଟି ଫେରାଇ ନେଇ ଦ୍ରୁତ ଗତିରେ ମର୍ମର ପାଷାଣ ମାର୍ଗ ଦେଇ ଓହ୍ଲାଇ-ଗଲା ଆନା ତଳ ମହଲାକୁ । ଆତଙ୍କିତ ହୋଇଉଠିଲା ମନ ତା'ର—ଜାଲେ ଧରାପଡ଼ିଗଲା କି କ'ଣ ବୋଲି ରାବି ଦେଇ ? ମନେ ମନେ ଶିହରିଉଠିଲା ଆନା । ଗ୍ରୀବାରେ ତା'ର ଛନକା ପଶିଗଲା ।

ନୌକାଟିକୁ ଅହ୍ଲା ମାରି ଚଲାଇ ଚଲାଇ କହିଲେ ରାଜାବାହାଦୁର—"ପୁଣି କେବେ ଦେଖାହେବ ଆନା ?"

"ଶତ୍ରୁପକ୍ଷୀୟ ଲୋକମାନଙ୍କ ସହିତ ଘନଘନ ଦେଖାସାକ୍ଷାତ୍ କରିବା କ'ଣ ମଙ୍ଗଳକର ରାଜା ?" ହସି ହସି କହିଲା ଆନା ।

"ସ୍ୱପ୍ନ ଜଗତରେ ଶତ୍ରୁ ବା ମିତ୍ର ବୋଲି କେହି ନାହାନ୍ତି । ସେ ଜଗତରେ ବିଚରଣ କରନ୍ତି କେବଳ ଶିଳ୍ପୀ, ଭାବୁକ ଓ ରସିକ ପ୍ରାଣୀ ।"

ରାଜାବାହାଦୁରଙ୍କ କଥାଟିକୁ ଲଘୁ ପରିହାସରେ ପରିଣତ କରି କହିଲା ଆନା—"ଶତ୍ରୁତାରୁ ପରିତ୍ରସ୍ତ ଅମର ମିତ୍ରତାରେ ପରିଣତ ହେବାପାଇଁ ସମୟ ଲାଗିବନି ରାଜା ?"

ରାଜାବାହାଦୁର ନିବଦ୍ଧ ଚିତ୍ତରେ ଅହ୍ଲା ମାରିବା ସଙ୍ଗେ ସଙ୍ଗେ ହସର ଢେଉଟିଏ ଖେଳାଇ ଦେଇ ଚାହିଁରହିଲେ ଆନା ଆଡ଼କୁ ।

( ପନ୍ଦର )

"ତୁମକୁ ଆଜକାଲି ଅନ୍ୟମନସ୍କ ରହୁଥିବାର ମୁଁ କେଇଦିନ ହେଲା ଲକ୍ଷ୍ୟ କରୁଛି ଦିଦି ! କଥା କ'ଣ ?"

ଝରକା ପାଖରେ ଛିଡ଼ାହୋଇ ସୁବର୍ଣ୍ଣରେଖା ଆଡ଼କୁ ଏକଲୟରେ ଚାହିଁରହିଥିଲା ଆନା । ସେ ମୈତ୍ରେୟୀର କଥାରେ ଚମକିପଡ଼ିଲା ପରି ହୋଇଗଲା । ବୁଲିପଡ଼ି ସେ ବଡ଼ ବଡ଼ ଆଖିରେ ଚାହିଁରହିଲା ମୈତ୍ରେୟୀ ଆଡ଼କୁ । ତା'ର ଧ୍ୟାନ ଧାରଣା ଭାଙ୍ଗିଗଲା । ମନେ ମନେ ଭାବିଲା—'ଅରେ, ଧରାପଡ଼ିଗଲି କି ?'

ମୁହଁରେ ମନୋଭାବ ପରିବର୍ତ୍ତନର ଅଭିନୟ କରି ହସି ହସି କହିଲା ଆନା—"କାହିଁକି ? ମୋର କିଛି ନୂଆ ଭାବଧାରା ତୋ' ଆଖିରେ ପଡ଼ୁଛି କି ମେଘା ?"

"ନା" ଖାମଖିଆଲି ଭାବରେ କହିଲା ମୈତ୍ରେୟୀ—"ସେପରି କିଛି ନୁହେଁ; ତେବେ···"

ଆନା କହିଲା—"ବୁଝିଲି, ତୋ' ଦୃଷ୍ଟିରେ ମୁଁ କିଛିଟା ବଦଳିଯାଇଛି ନା···?" ପୁଣି ଅନ୍ୟମନସ୍କ ହୋଇଯାଇ କହିଲା ଆନା—"ଅଚ୍ଛା ମେଘା, ଆମ ଘର ସାମ୍ନାରେ ଥିବା ଏଇ ଗଛଟିକୁ ତୁ ଶୀତଦିନେ ନିଶ୍ଚୟ ଦେଖିଛୁ ?"

"କାହିଁକି କହିଲ ?"—ଓଲଟା ପ୍ରଶ୍ନକଲା ମୈତ୍ରେୟୀ ।

"ସେତେବେଳେ ଗଛଟାର ସବୁତକ ପତ୍ର ଝଡ଼ିଯାଇଥିଲା, ନୁହେଁ କି ?"

"ହଁ···! ହେଲା କ'ଣ ?" କହିଲା ମେଘା ।

"କିନ୍ତୁ···ଆଜି ତା' ଚେହେରା ଦେଖିଲୁ ? ଅଜସ୍ର କଅଁଳ ପାଟଳ ରଙ୍ଗର ପତ୍ର-ଗୁଚ୍ଛକରେ ଗଛଟି ଭରପୂର ଦିଶୁଛି । ପୁଣି ପେନ୍ଥା ପେନ୍ଥା ଫୁଲ ଦୋହଲୁଛି ସେଥିରେ···"

ଆନା ଏଇ ଭୂମିକା ମାଧ୍ୟମରେ କ'ଣ ବୁଝାଇବାକୁ ଚାହୁଁଥିଲା କିଛି ବୁଝିନପାରି ଜାଡ଼ିଙ୍କ ପରି ଚାହିଁରହିଲା ତା' ମୁହଁକୁ ମୈତ୍ରେୟୀ ।

ଆନା ମୁହଁର ଭାବ ଧୀରେ ଧୀରେ ପରିବର୍ତ୍ତନ କରି କହିଲା—"ଯଦି ଗୋଟିଏ ଜଡ଼ ବୃକ୍ଷଠାରେ ଅବସ୍ଥାର ଏପରି ପରିବର୍ତ୍ତନ ଘଟୁଛି, ତେବେ ମଣିଷ ପକ୍ଷରେ ତାହା କେଡ଼େ ସୁଖକର ନହେବ କହିଲୁ ?"

"କିଛି ଖରାପ ଧାରଣା କରିବନି ଦିଦି ! ମୋ ମନକୁ ଗୋଟାଏ କ'ଣ ଆସିଲା—ମୁଁ ତୁମକୁ ତାହାହିଁ କହିଦେଇଛି । କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନେଇ ନୁହେଁ ।" କହିଲା ମୈତ୍ରେୟୀ ।

ଆନା ନିତାନ୍ତ ସ୍ୱାଭାବିକ ଢଙ୍ଗରେ କହିଲା—"ଅଚ୍ଛା ମେଘା, ତୁ ମୋତେ ଖୁବ୍ ଭଲ ପାଉନା ?"

"ମୋଟେ ନୁହେଁ···" ଖିଲ୍‌ଖିଲ୍ ହୋଇ ହସି ହସି ମୁହଁ ବୁଲାଇ ନେଇ କହିଲା

ମୈତ୍ରେୟୀ ।

ହଠାତ୍ ଆନାର ମନରେ ଏକ ଅହେତୁକ କୌତୂହଳ ଜାଗିଉଠିଲା । ସେ କହିଲା—"ମେତ୍ରି, ସତରେ ତୁ ତୋର ମନକଥା ମୋ ଆଗରେ ସ୍ପଷ୍ଟ ଖୋଲିକରି କହିବୁ ?"

ଆନା ଆଡ଼କୁ ମୁହଁ ନବୁଲାଇ କହିଲା ମୈତ୍ରେୟୀ—"କ'ଣ ତୁମେ ଜାଣିବାକୁ ଚାହୁଁଛ ସେ ?"

"ଆଚ୍ଛା କହିଲୁ, ଆଜକାଲି ହିରଣ୍ୟଗଡ଼ ସହିତ ଆମର ଯେଉଁ କଳହ ଚାଲିଛି, ଏ ସମ୍ବନ୍ଧରେ ତୋ' ମନର ଧାରଣା କ'ଣ ?"

"ବିଶେଷକିଛି ନୁହେଁ"—କହିଲା ମୈତ୍ରେୟୀ ପୂର୍ବପରି ଆନା ଆଡ଼କୁ ପଛକରି ।

"ନା, ତୁ ତୋ' ମନର ସତ୍ୟଟିକୁ ଏଡ଼େଇଦେଉଛୁ ନୁହେଁ ?"

"ତା'ହେଲେ ତୁମେ ହିଁ କୁହ ମୁଁ କ'ଣ କହିଲେ ତୁମେ ଖୁସି ହେବ ?" କହିଲା ମୈତ୍ରେୟୀ ।

"ଖୁସି ବା ଦୁଃଖର ପ୍ରଶ୍ନ ଉଠୁନାହିଁ । କେବଳ ତୋ' ମନର ଭାବ ଜାଣିବାର ଗୋଟିଏ କୌତୂହଳ ଜାଗିଛି ମୋ' ଅନ୍ତରରେ"—କହିଲା ମିସ୍ ଆନା ହେପ୍‌ବାର୍ନ ।

"ହୁଏତ ଭିନ୍ନ ପରିସ୍ଥିତିରେ ତୁମକୁ ଶତ୍ରୁବୋଲି ଭାବିଥାଆନ୍ତି ନିଶ୍ଚୟ; କିନ୍ତୁ ଆଜି ତୁମେ ମୋର ଅତି ଆପଣାର ଦିଦୀ ! ହଜାରେ ଚେଷ୍ଟା କଲେ ବି, ମୁଁ ତୁମକୁ ପରବୋଲି ଭାବି ପାରିବି ନାହିଁ"—କହିଲା ମୈତ୍ରେୟୀ ।

"ମୋ ପ୍ରଶ୍ନଟି କିନ୍ତୁ ଭିନ୍ନ ଧରଣର··"କହିଲା ଆନା—"ଆଚ୍ଛା ଶୁଣ, ଏଇ ବିବାଦରେ ହିରଣ୍ୟଗଡ଼ ରାଜକୁମାର ଯୁବରାଜ ଆଗେଇ ଆସିଲେ ମୋ' କୋଠି ଉପରେ ଆକ୍ରମଣ କରିବାକୁ, ଆଉ ମୁଁ ଏଇ ଝରକା ପାଖରେ ହାତରେ ବନ୍ଧୁକ ଧରି ତାଙ୍କ ଆଡ଼କୁ ନିଶାନା କରି ଟ୍ରିଗର୍ ଉପରେ ଆଙ୍ଗୁଳି ରଖିଥିବି, ସେତେବେଳେ ତୋ ମନର ଅବସ୍ଥା କ'ଣ ହେବ କହିଲୁ ?"

"ଜାଣେନି···" ଏତିକି କହି ମୁହଁଟିକୁ ନୁଆଇଁନେଲା ମୈତ୍ରେୟୀ । ଆଖିରୁ ତା'ର ଝଡ଼ବତାସରେ ଝରିପଡ଼ୁଥିବା ଯୁଇଫୁଲ ପରି ଝରିପଡ଼ିଲା ବନ୍ଦ୍ୟୁ ବନ୍ଦ୍ୟୁ ହୋଇ ଅଶ୍ରୁର ଝର ।

"ତୁ କାନ୍ଦୁଛୁ ମେତ୍ରି···" ପାଖକୁ ଲାଗିଯାଇ ମୈତ୍ରେୟୀର ପିଠିରେ ହାତରଖି ପଚାରିଲା ଆନା ।

ଓଠ ଦୁଇଟିକୁ ଚାପିଧରି ମୈତ୍ରେୟୀ ମୁଣ୍ଡ ହଲାଇଦେଲା । ସ୍ତବ୍ଧ ହୋଇ ବସିପଡ଼ିଲା ଚେୟାର୍‌ରେ ଆନା । ସେ ମନେ ମନେ ଭାବିଲା—'ଆଶ୍ଚର୍ଯ୍ୟ, ସେ ସମ୍ପୂର୍ଣ୍ଣଭାବେ ଉପେକ୍ଷିତା ବୋଲି ଜାଣି ମଧ୍ୟ ଆଜିଯାଏ ନିଜ ମନ ମନ୍ଦିରରେ ସଜାଇ ରଖିଛି ଯୁବରାଜ ପ୍ରତି ସ୍ନେହ ଓ ମମତା । ହୃଦୟର ସୁପ୍ତ ଭାବନା ଏକ ମନବଗିଚାରେ ତା'ର ମେଲିଯାଇଥିବା ପ୍ରେମଲତାଟି ଏ ଯାଏଁ ତାର ଶୁଖିଯାଇନି ? କୌଣସି ପରିଚୟ ନାହିଁ—ଦେଖାହୁଏତ ହୋଇଛି ଦୀପଶିଖାର କ୍ଷୀଣ ଆଲୋକରେ କ୍ଷଣକାଳ ପାଇଁ, ତଥାପି ଏମାନେ···ଏ ଦେଶର ଝିଅଗୁଡ଼ିକ

ନିଜ ମନର ମଣିଷଟିକୁ ଏତେ ଭଲପାଇପାରନ୍ତି ? ବିବାହ ଅନୁଷ୍ଠାନ ଏମାନଙ୍କ ପକ୍ଷରେ ଏତେ ଶିବ ଓ ଶୁଭଙ୍କର ? ଏତେ ମୈତ୍ରୀର ! ଏତେ ବିମଳ ଭାବନା···?"

ଆଉ ବେଶି କିଛି ଭାବିପାରିଲା ନାହିଁ ଆନା । ତା' ମାନସ-ମନ୍ଦିରରେ ଖେଳିଗଲା ଭାଗୀରଥୀ ଚନ୍ଦ୍ରାଧାରାର ମଞ୍ଜୁଳ ତଥା ବିମଳ ପ୍ରବାହ । ତା' ହୃଦୟର ପ୍ରେମଲତାରେ ବିକଶିତ ହୋଇଉଠିଲା ଅଦ୍ଧନରେ ରଙ୍ଗବିରଙ୍ଗର କମ୍ରକମ୍ରନ୍ତ କୁସୁମ ସ୍ତବକ ।

( ଛବିଶ )

ଅଲ୍ପ ଦିନେ ପାଇ ନୌକା ଲାଗିଲା ରାଜାରାମଙ୍କ ଜଳମହଲ ଘାଟରେ । ପଥରରେ ବନ୍ଧା ନଦୀଘାଟରୁ ଉପରକୁ ଉଠିବାବେଳେ ନିରବତା ଭଙ୍ଗକରି କହିଲା ଆନା—"ବୁଝିଲ ରାଜା, ଆଜି କାହିଁକି ନଦୀସ୍ରୋତର ବେଗ ଖୁବ୍ ପ୍ରବଳ ଥିଲା । ଭାବୁଥିଲି, ବୋଧହୁଏ ଆଜି ନଈର ସୁଅ କାଟି ତୁମ ଏଠାକୁ ଆସିବା ସମ୍ଭବ ହେବ ନାହିଁ ।"

ରାଜାରାମ ପଛକୁ ଫେରିପଡ଼ି ହସି ହସି କହିଲେ—"ତେଣୁ ମନେହେଉଛି ସ୍ରୋତର ବେଗଠାରୁ ଆଉ କିଛି ଗୋଟିଏ ବେଗ ନିଶ୍ଚୟ ପ୍ରବଳ ଥିଲା; ତେଣୁ ତୁମର ନଉକା ଆସି ଲାଗିଲା ଆମ ଘାଟରେ ।"

ଆନା ମଧ୍ୟ ହସି ହସି କହିଲା—"ତୁମ ସଙ୍ଗୀତର ସ୍ୱର ମୂର୍ଚ୍ଛନା ମୋତେ ଟାଣି ଆଣି ପାରିଲା ତୁମ ପାଖକୁ । ସ୍ରୋତର ନଦୀମୁଅଁଟାର ଶକ୍ତି କେତେ ଯେ, ସେ ମୋତେ ମୋର ଗନ୍ତବ୍ୟ ପଥରୁ ବିଚ୍ୟୁତ କରିପାରିଥା'ନ୍ତା ?"

ଯେଉଁଠି ପାହାଚ ଶେଷ ହୋଇଯାଇଛି, ଠିକ୍ ସେଇ ଉପରେ ମୋଗଲ ସ୍ଥାପତ୍ୟର ଗୋଟିଏ ଜାଲିଘେରା ବାରନ୍ଦା ଲମ୍ବିଅଛି ସୁନ୍ଦର ପ୍ରସାରିତ ଜଳଭାଗ ଆଡ଼କୁ । ତା'ରି ଉପରେ ବସିବାଲାଗି ରହିଛି ଏକ ସୁନ୍ଦର ଶଙ୍ଖମଲମଲ୍‌ରେ ନିର୍ମିତ ବେଦିକା । ରାଜାରାମ ଆନାକୁ ସେଇଠି ବସିବାକୁ ଇଙ୍ଗିତ କରି, ନିଜେ ବସିପଡ଼ିଲେ ବେଦୀର ଅନ୍ୟ ଏକ ପ୍ରାନ୍ତରେ ।

କିଛି ସମୟ ନିରବତାରେ ବିତିଯିବା ପରେ କହିଲେ ରାଜାରାମ—"ତୁମେ ସ୍ୱରର ଆହ୍ୱାନରେ ଏଠାକୁ ଆସିଯାଇଛ, ଏହା ସତ୍ୟ ନୁହେଁ କି ? ତା'ହେଲେ ତୁମକୁ ଗୋଟିଏ ଗୀତର ସୁ ର ଲହରୀରେ ଅଭ୍ୟର୍ଥନା କରୁଯାଉ ।" .

ଠୁମ୍‌ରୀର ଗୋଟିଏ ସୁମିଷ୍ଟ ତାନ ଝଂକୃତ ହୋଇଉଠିଲା ରାଜାରାମଙ୍କ ଓସ୍ତାଦୀ କଣ୍ଠରୁ ।

ନଦୀୟାଁ ବୈଷା ହୋ ରାମ,
ସୈଁୟା ଉତ୍ରେ ଓଇ ପାର୍ ।
ଗହିରୀ ନଦୀୟାଁ ନୈୟା ପୁରାନୀ,
ଅବ୍ କୈସେ ଉତର ପାର୍ ରେ···"

ଝିକ ଝିକ ହୋଇ ଗୀତର ଲହରୀ ସ୍ୱର ପକ୍ଷ ଉପରେ ଆଶ୍ରୟ କରି ଉଡ଼ିବାକୁ ଲାଗିଲା ଜଳମହଲର ଚତୁର୍ଦ୍ଦିଗରେ । ବିମୁଗ୍ଧ ଚିତ୍ତରେ ଶୁଣିଲା ଗୀତଟି ଆନା । ତା'ର ମନେହେଲା ଯେତେ ଯେପରି ସେ ସ୍ୱରଝଙ୍କାର ସୃଷ୍ଟି କରିଛି ତା' ଆଗରେ ଏକ ରୂଦ୍ଧଦ୍ୱାରର ମାୟାଲୋକ ଏବଂ ସେ ତା' ଭିତରେ ପ୍ରବେଶ କରିବାର ପଥ ଖୋଜି ପାଉନାହିଁ । କିନ୍ତୁ ସ୍ୱର ମହଲର ନାନା ଅଳିନ୍ଦ ମଧ୍ୟରୁ କେହି ଯେପରି ତାକୁ ହାତରେ ଇସାରା ଦେଇ ବାରମ୍ବାର ଡାକୁଛି—ଆସ ! ଆସ ! ଚାଲିଆସ !

ଗୀତ ଶେଷ ହେଲା; କିନ୍ତୁ ସ୍ୱରର ଲହରୀ ଅନେକ ରଙ୍ଗବେରଙ୍ଗ ପ୍ରଜାପତି ପରି ଡେଣାମେଲି ଉଡ଼ି ଉଡ଼ି ଶେଷରେ ଅନନ୍ତ ଗଗନରେ ହଜିଗଲା । କେଇ କ୍ଷଣ ପରେ ଆନା ଫେରିଆସିଲା ସ୍ୱରର ସ୍ୱପ୍ନମୟ ଜଗତରୁ । ତା'ପରେ ଖିଲ୍‌ଖିଲ୍ ହୋଇ ହସିଦେଇ କହିଲା—"ସତରେ ରାଜା, ତୁମେ ସ୍ୱରଜଗତର ଏକ ସୁଦକ୍ଷ ଯାଦୁକର ।"

ରାଜାସାହୁ ବେଖିଆଲ ଭାବରେ କହିଲେ—"ଆଜି ଯଦି ଗୋଟିଏ ଗୀତ ଗାଇ ମୁଁ ମୋର ମାନସୀପ୍ରିୟା ଅତିଥିଙ୍କୁ ମୁଗ୍ଧ କରିଥାଏ, ତେବେ ସେ କୃତିତ୍ୱ ମୋର ନୁହେଁ, କେବଳ ତାଙ୍କରି ।"

"ଏ କ'ଣ କହୁଛ ରାଜା, ତୁମେ ଶୁଣାଇଲ ମଧୁର ମୂର୍ଚ୍ଛନାଭରା ସଙ୍ଗୀତ, ଯାହାକୁ ଶୁଣି ମୁଁ ମୁଗ୍ଧ ହେଲି । ଏଥିରେ ମୋର କୃତିତ୍ୱ ରହିଲା କେଉଁଠି ? ସବୁକିଛି ତୁମର ।"

"ନା ଆନା ! ଆଜି ତୁମେ ହିଁ ମୋ କଣ୍ଠରେ ଭରିଦେଇଛ ଏଇ ସଙ୍ଗୀତର ଅପରୂପ ଛନ୍ଦ । ତୁମେ ଆସି କହିଲ—ଏଇ ଦୁରନ୍ତ ନଦୀ ପାର ହୋଇ ଆସିବାର କାହାଣୀ, ସେଇଥିରୁ ମୋ କଣ୍ଠରେ ମଧୁର ମୂର୍ଚ୍ଛନା ତୋଳିଲା ଏଇ ଗୀତଟି ।"

"ଅଚ୍ଛା ରାଜା, ତୁମ ଏ ଗୀତର ଅର୍ଥ କ'ଣ ? ମୋ' ମନ ଭିତରେ ଏହାର ଅର୍ଥ ଖୋଜିବାରେ ମୁଁ ଧନ୍ଦିହେଉଛି ।"

ରାଜାସାହୁ ତା'ର ପ୍ରଶାନ୍ତ ତଥା ପ୍ରସନ୍ନ ମୁଖମଣ୍ଡଳରେ ସୁନିର୍ମଳ ହାସ୍ୟରେଖା ଫୁଟାଇ କହିଲା—"ଏହା ଏକ ବଧୂର ପ୍ରିୟତମର ଖେଦୋକ୍ତି । ଆଗରେ ତା'ର ବହି-ଯାଉଛି ଦୁରନ୍ତ ପ୍ରଖର ସ୍ରୋତଭରା ତରଙ୍ଗିଣୀ । ନୌକାଟି ତା'ର ଜରାଜୀର୍ଣ୍ଣ । ନଦୀର ବିପରୀତ ତଟରେ ତା' ମନର ମଣିଷଟି ଅନାଇ ବସିଛି ତା'ରି ପ୍ରତୀକ୍ଷାରେ । କିପରି ସେ ଯାଇ ମିଳିତ ହେବ ପ୍ରିୟତମ ସହିତ ? ସେଇ ଅବସ୍ଥାରେ ଏ ନଦୀଟି ହୋଇଛି ତା' ଚଲାପଥର ବାଧକ; ତେଣୁ ଏ ନଦୀଟି ହୋଇଛି ତା'ର ବୈରୀ ବା ଶତ୍ରୁ ।"

"ତୁମେ ଏପରି ଭାବରେ ମନର କଥାକୁ କିପରି ଭାବରେ ସଙ୍ଗେ ସଙ୍ଗେ ଅପରୂପ ସାଜସଜ୍ଜାରେ ସଜାଇ ପାରୁଛ ରାଜା ?"

"ନା, ଆନା ! ଏହା ମୋ' ରଚନା ନୁହେଁ । ଯୁଗ ଯୁଗ ଧରି ଦୁଇଟି ମନର ମିଳନ-ପଥର ବାଧାଗୁଡ଼ିକ କୌଣସି ଏକ ଦରଦୀ କବିର ଲେଖନୀରୁ ଝରିପଡ଼ିଛି ଝରଝର ହୋଇ । ମୁଁ କେବଳ ସେଇ ଶବ୍ଦ ଓ ଅର୍ଥଯୁକ୍ତ ଅକ୍ଷରଗୁଡ଼ିକୁ ଦୋହରାଇଲି ମୋ କଣ୍ଠରେ । ସ୍ୱର

ମୂର୍ଚ୍ଛନାର ବିଭିନ୍ନ ଆରୋହ ଅବରୋହ ମଧ୍ୟଦେଇ ପହଞ୍ଚାଇଦେଲି ତୁମ ପାଖରେ ।"

"ଆଜିର ପରିସ୍ଥିତି ସହିତ କି ଆଶ୍ଚର୍ଯ୍ୟକର ମିଳନ ଏଇ ସଙ୍ଗୀତର ?"

ରାଜାବସ୍ତୁ ଅନାର କଥା ମଝିରେ କହିଲା—"ସେଇ ମିଳନଟି ହେଉଛି ଶାଶ୍ବତ । ତାହାହିଁ ମୋ' କଣ୍ଠରୁ ଗାନ ରୂପେ ଝରିପଡ଼ିଲା ।"

"ତେବେ ଶୁଣ, ଆଜିଠୁଁ ଯେଉଁଦିନ ମୁଁ ଆସିବି ତୁମର ଏଇ ଜଳମହଲକୁ ଅଥବା ଆଉ ଯେଉଁଠି ଆମର ସାକ୍ଷାତ ହେବ, ତୁମେ ମୋତେ ଗୋଟିଏଲେଖାଏଁ ଗୀତ ଶୁଣାଇବ ।"

"ତୁମକୁ କଥାଦେଉଛି ଅନା, ଆଜିଠାରୁ ତୁମେ ହେବ ମୋ ସଙ୍ଗୀତ-କୁଞ୍ଜର ଅଭିସାରିକା ।"

"ଆଉ ତୁମେ ମଧ୍ୟ ଆଜି ପରି ମୋତେ ଗୀତଟିର ଅର୍ଥ ନିଃସଙ୍କୋଚରେ ବୁଝାଇଦେବ" —କହିଲା ଅନା ।

ହସି ହସି କହିଲେ ରାଜା—"ନୋହିଲେ ମୁଁ ମୋର ସ୍ବରର କଣ୍ଠିକୁ ଧରାଇଦେବି ତୁମରି ହାତରେ, ତୁମେ ନିଜେ ହିଁ ବାଛିନେବ ସେଥିରୁ ଅର୍ଥର ଅଳଙ୍କାର ।"

ସେତିକିରେ ଅନା ହସି ହସି ଲୋଟିପଡ଼ିଲା ଏବଂ ରାଜାବସ୍ତୁଙ୍କ ହସଫେଡ଼ ମଧ୍ୟ ଖୋଲିଗଲା ଆପଣାଛାଏଁ ।

ଫେରିଯିବାର ସମୟ ହୋଇଯିବା ମାତ୍ରେ ରାଜାବସ୍ତୁ ସାଙ୍ଗରେ ଯାଇ ପହଞ୍ଚାଇଦେବାର ଇଚ୍ଛା ପ୍ରକାଶକଲେ ।

ରାଜାବସ୍ତୁଙ୍କ ପ୍ରସ୍ତାବ ଶୁଣି ହସି ହସି କହିଲା ଅନା—"ଏକାକୀ ଯଦି କଷ୍ଟକରି ଆସି-ପାରିଛି, ତେବେ ଏକୁଟିଆ ମଧ୍ୟ ଫେରିଯାଇ ପାରିବି । ତା' ପରେ ଆଉ ଦିନେ ଆସିଲେ, ମୁଁ ତୁମ ଆଗରେ ଗର୍ବର ସହିତ କହିପାରିବି—ମୋ ଯିବାଆସିବା ପଥରେ ମୁଁ ଏକାକୀ ନାବିକ—ମୁଁ କାହାରି ହାତରେ ଟେକିଦେଇନି ମୋ' ଆହୁଲିଟିକୁ ।"

ରାଜାବସ୍ତୁ କୌତୁକ କରି କହିଲେ—"ବଡ଼ ଅହଙ୍କାର ତୁମର ଅନା···"

"ତୁମେ ଈଶ୍ବରଙ୍କଠାରେ ପ୍ରାର୍ଥନା କର ଚିରଦିନ ଯେପରି ଏ ଅହଙ୍କାର ମୋ ମନର ସମ୍ପଦ ହୋଇ ରହିଥାଉ ।"

ଏତିକି କହିଦେଇ ଅନା ବସିପଡ଼ିଲା ନିଜର ଶ୍ରେଷ୍ଠ ତରଣୀରେ କାଠର ଆହୁଲିଟି ଧରି । ଧୀରେ ଧୀରେ ଭାସିଚାଲିଲା ନଉକାଟି ସ୍ରୋତ କାଟି କାଟି ଏବଂ କୂଳରେ ଠିଆହୋଇ ଗୁଣୁଗୁଣୁ ହୋଇ ଗୀତ ଗାଇବାରେ ମନଦେଲେ ରାଜାବସ୍ତୁ ; ସତେ ଯେପରି ସେ ଖରସ୍ରୋତା ନଦୀକୁ ପ୍ରାର୍ଥନା କରି କହୁଛନ୍ତି—"ନଦୀୟା ଧୀରେ ବହନା, ମେଘ ପିୟା ଉତରେଗୀ ପାର୍···"

## ( ସତେଇଶ )

ଏ କ'ଣ ହେଲା ଆନାର ? ବିଛଣାରେ କଟିଗଲା ଶନ୍ଦ୍ର ରଜନୀ । ବନଗିରି ଛୁଇଁ ଖେଳ ପବନର ହିଲ୍ଲୋଳର କଲତାନରେ କମ୍ପି ଉଠିଲା ନଦୀର ଜଳ । ଶୀତଳ ଜଳରାଶିକୁ ଛୁଇଁ ବହିଆସିଲା ଶିର୍ ଶିର୍ ହୋଇ ଶୀତୁଆ ପବନ । ସେହି ହେମାଳିଆ ପବନ କି ମନ୍ତ୍ର ପଢ଼ିଲା କେଜାଣି, ଆନାର ଆଖିପତା ଦୁଇଟି ବୁଜିହୋଇ ଆସିଲା । ଠିକ୍ ସେହି ଗାନରେ ତାଳ ମିଶାଇ ଝାଉଁବଣରୁ ସାଏଁ···ସାଏଁ··· ପବନ ମାଡ଼ିଆସି ଆନାର ଆଖିରେ ନିଦରୁ ମେଞ୍ଚାଏହେବ ଗୁଞ୍ଜି ଦେଇଗଲା ।

ତା'ର ଆଖିପତା ଯୋଡ଼ିକ ଖୋଲିବା ମାତ୍ରେ ସେ ଦେଖିବାକୁ ପାଇଲା ପାଖରେ ତା'ର ବସିଛି ମୈତ୍ରେୟୀ ଅଶ୍ରୁସିକ୍ତ ହୋଇ । ବୋଧହୁଏ ଏଇ କ୍ଷଣକ ନିଦ୍ରା ମଧ୍ୟରେ ସେ ଦେଖିଥିଲା ଏକ ମଧୁର ସ୍ୱପ୍ନ । ଆଉ ସେହି ମଧୁର ସପନ ଗୁନ୍ଥିଦେଇ ଗଲା ତା' ଆଖି କୋଣରେ ଦୁଇଟି ସ୍ୱଚ୍ଛ କଣିକା ପରି ଦୁଇଟୋପା ଅଶ୍ରୁ ।

ଆନାର ଶନ୍ଦ୍ର ଚକ୍ଷୁରେ ଟଳମଳ କରୁଥିବା ଅଶ୍ରୁର ସଙ୍କେତ ପାଇ ମେରୀ ଅଧୈର୍ଯ୍ୟ ହୋଇ ପଚାରିଲେ—"କ'ଣ ହୋଇଛି କି ତୁମର ଦଦା । ଦେହ ଭଲ ନାହିଁକି ? ଏତେବେଳ-ଯାଏଁ ତୁମେ କେବେହେଲେ ତ ଶୋଇରହୁନାହିଁ ବିଛଣାରେ ?"

ଓଠ ଫାଙ୍କରେ ଝଲକାଏ ମଧୁର ହସ ବିଛୁଡ଼ି ଦେଇ, ବିଛଣାରେ ଉଠି ବସୁ ବସୁ କହିଲା ଆନା—"ଖୂ···ଉ···ବ···ଭଲ···ଅଛି···ମେରୀ ।" ତା'ପରେ ଆଖି ପୋଛିବା ବେଳକୁ ହଠାତ୍ ଅଶ୍ରୁବୁନ୍ଦା କେଇଟି ହାତରେ ଝରିପଡ଼ିଲା ମାତ୍ରେ ଲଜରେ ଜଡ଼ସଡ଼ ହୋଇଗଲା ଆନା ।

ମୈତ୍ରେୟୀ ବିଛଣାରୁ ଉଠିପଡ଼ି କହିଲା—"ଏଇଥିପାଇଁ ମୁଁ ପଚାରୁଥିଲି ତୁମ ଦେହ ଭଲ ନାହିଁ କି ବୋଲି···।"ଏତିକ କହି ମୈତ୍ରେୟୀ ଗୁଲିଯାଉଥିବାର ଦେଖି, ତା' ହାତ ଦୁଇଟିକୁ ଧରିପକାଇ ବିଛଣାରେ ବସାଇଦେଇ ଛଳକୋପରେ ଛଳନାମୟୀ ଆନା ଆଖି ନଚାଇ କହିଲା, "ବୁଝିଲୁ ଲୁଚଛପି କାହାର କଛି ଗୁମର ଜାଣିଗଲେ ସେଥିପାଇଁ ଶାସ୍ତି ଭୋଗିବାକୁପଡ଼େ ।"

"ଦେଉନ ଯେତେ ଇଚ୍ଛା ଶାସ୍ତି; ସେଇଥିରେ ମୋର ଆନନ୍ଦ, ସେଇଥିରେ ମୋର ଶାନ୍ତି ।" ହସି ହସି କହିଲା ମୈତ୍ରେୟୀ—"ତୁମଠାରୁ କେବଳ ସ୍ନେହ ଓ ସୋହାଗ ପାଇ-ଆସିଛି ହେଳ୍ଗେଳ୍ । ମନରେ ଭୟ ହୁଏ—ସତେ କ'ଣ ମୁଁ ଏତେ କରୁଣାର ଯୋଗ୍ୟ ?"

"ତୁ ପଣ୍ଡିତ ମହାଶୟଙ୍କ ଝିଅ କି ନା—ସେଇଥିପାଇଁ କଥାଗୁଡ଼ିକ ବେଶ୍ ବନେଇ ଚୂନେଇ କହିପାରୁଛୁ ।"

ଆନାର କଥା ଶୁଣି ଫେଁକରି ହସିଦେଲା ମୈତ୍ରେୟୀ । କ୍ଷଣକ ମଧ୍ୟରେ ମୁହଁରେ

ଗମ୍ଭୀର ଭାବର ଛାୟା ଖେଳିଗଲା ତା'ର । ସେ ଆନା ଆଡ଼କୁ ଅପଲକ ଦୃଷ୍ଟିରେ ଚାହିଁ କହିଲା—"ବାପାଙ୍କ ପାଖରୁ ହିନେହେଲେ ପାଠ ପଢ଼ିବାର ସୁଯୋଗ ମୋତେ ମିଳିନ ଥିଲା ! ବରଂ ମୁଁ ଦେଖୁଛୁ—ବାପାଙ୍କର ଶିଷ୍ୟା ହେବା ପରେ ତୁମେ ଅନେକ କଥା ବାଗେଇଦେଇ କହିଶିଖିଲଣି । ସତରେ କହୁଛି ହିଏ, ତୁମେ ଯେତେ ଗଣିତ ତତ୍ତ୍ୱ ସମ୍ବଳିତ କଥା ଆଲୋଚନା ଛଳରେ କହୁଛ, ସେଥିରୁ ମନେହେଉଛି ତୁମେ କେବଳ ଆମ ଦେଶର ଗୋଟିଏ ଝିଅ ନୁହଁ ; ବରଂ ପ୍ରାଚୀନ ଭାରତର ବିଦୁଷୀ ନାରୀ ତୁମର ମାଧ୍ୟମରେ ଉଙ୍କିମାରୁଛନ୍ତି ନୂତନ ଭାବରେ ଏବଂ ନୂଆ ରୂପରେ ।

ମୁହଁରେ ମେଞ୍ଚାଏ ହେବ ଅବଶ୍ୟ ହସ ବିଞ୍ଚିଦେଇ ଆଖି ନଚାଇ କହିଲା ଆନା—"ଯା, ଯେତେ ପାରିବୁ କହିଯା । ସକାଳୁ ସକାଳୁ ତୋ' ମୁହଁରୁ କଞ୍ଚା ମିଛର ପ୍ରଶଂସାଗୁଡ଼ାକ ବେଶ୍ ଭଲଲାଗୁଛି ଶୁଣିବାକୁ ।"

"ମୋ' ଦୁଃଖ ଯାଉନି…" କହିଲା ମୈତ୍ରେୟୀ—"ମୁଁ କାହିଁକି ବା ପ୍ରଂଶଯା କରନ୍ତି ? ହେଲେ, ତୁମର କନ୍ଦାଗାନ ପାଇଁ ଯଦି ହିନେ ସୁଯୋଗ ପାଆନ୍ତି ନା, ତା'ହେଲେ କେମିତି ମୋତେ କଥା କହିଆସେ ଜାଣନ୍ତି ।"

ସକାଳର ଗମ୍ଭୀର ପରିବେଶକୁ ଅତ୍ୟନ୍ତ ଲଘୁ କରି ଦେଇ ଦୁହେଁ ଯାକ ଠୋ' ଠୋ' କରି ହସି ହସି ଘରଟିକୁ କମ୍ପାଇଦେଲେ । ଦୁହିଁଙ୍କ ହସର ଆବାଜରେ ପାରାପେଣ୍ଟରେ ବସିଥିବା ଲୋଟଣି ପାରା ଯୋଡ଼ାକ ଫଡ଼୍ ଫଡ଼୍ କରି ଡେଣା ମେଲାଇ ଉଡ଼ିଗଲେ ମୁକ୍ତ ଗଗନରେ । ସେଇ ପାରାଯୋଡ଼ାକ ଆଡ଼କୁ ଆଙ୍ଗୁଳି ଦେଖାଇ କହିଲା ଆନା—"ଜୀବନଟା କେବଳ ମୁକ୍ତ ଆଉ ଧ୍ୱନିମୟ ନା ମେଣ୍ଟି ?"

ଆନାର କଥା କହିବାର ଅଦ୍ଭୁତ ଶୈଳୀ ଓ ପରିପାଟୀ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ମୈତ୍ରେୟୀ । ସେ ହସି ହସି କହିଲା—"ସତରେ ହିଏ, ତୁମେ ଯେତେବେଳେ ଏମିତି ଭାବ-ଗମ୍ଭୀର କଥାଗୁଡ଼ାକ କବିତ୍ୱରେ ଡଗ ଡଗ କରି କହିଯାଅ, ମୋତେ ଖୁବ୍ ଭଲଲାଗେ । ତୁମର ବିଶୁଦ୍ଧ ଭାଷା ତଥା ତାତ୍ପର୍ଯ୍ୟପୂର୍ଣ୍ଣ କଥାଗୁଡ଼ାକର ଅର୍ଥ ମୁଁ ହଠାତ୍ ଠଉରେଇ ପାରେନି ।"

ଏଥର ଭାବନାର ସ୍ତରରୁ ଓହ୍ଲାଇ ଆସିଲା ଆନା । ସେ ଅତ୍ୟନ୍ତ ସରଳ ଓ ସହଜ ଭାବରେ କହିଲା—"ଅଚ୍ଛା ମେଣ୍ଟି ! ମୁଁ ଗୋଟିଏ ପ୍ରଶ୍ନ ପଚାରିବି, ତୁ ତା'ର ଠିକ୍ ଠିକ୍ ଉତ୍ତର ଦେବୁ ତ ?"

"କୁହ… ନ ଦେବ କାହିଁକି ?" କହିଲା ମୈତ୍ରେୟୀ ।

"ମୁଁ ଯେତେବେଳେ ତୁମ ଭାଷାରେ କଥାବାର୍ତ୍ତା କରୁଛି, ସେତେବେଳେ ମୋ' ଉଚ୍ଚାରଣରେ ଅନେକ ଭୁଲ ରହିଯାଉଥିବ ।"

"କିଲୁ କାହିଁ – ମୋ' କାନରେ ତ ତୁମ ଭୁଲ ଧରାପଡ଼ୁନି ।"

"ନା, ତୁ ମିଛ କହୁଛୁ ମେଣ୍ଟି । ସେଦିନ ପଣ୍ଡିତ ମହାଶୟ ସଂସ୍କୃତ ଉଚ୍ଚାରଣରେ

ମୋର ଦ' ଦ'ଟା ଭୁଲ ସଂଶୋଧନ କରିଦେଇଥିଲେ···"—କହିଲା ଆନା ।

"ସଂସ୍କୃତ ବିଷୟରେ ମୋର ଧାରଣା ନାହିଁ; କିନ୍ତୁ ତୁମେ ଆମ ମାତୃଭାଷାରେ କଥା କହିବାବେଳେ, ଏ ଦେଶର ଝିଅ ନୁହଁ ବୋଲି ତୁମକୁ କେହି କହି ପାରିବ ନାହିଁ । ତୁମେ କେବଳ ଖଣ୍ଡିଏ ଶାଢ଼ି ପିନ୍ଧିଦେଲେ ତୁମକୁ ଆଉ କେହି ଆନା ବୋଲି ନଚିହ୍ନି ମୈତ୍ରେୟୀ ବୋଲି କହିବେ ।"

"ଯା"—କହିଲା ଆନା—"ତୁ ଗୋଟେ ଅତି ଖୋସାମତି କରି ଶିଖିଲୁଣି । ହଁ, ଜାଣିଛୁ, ଅତି ପ୍ରଶଂସା କଲେ ମୋ' ମୁଣ୍ଡଟା ପୁଣି ବିଗିଡ଼ି ଯିବ ଯେ···।"

କିଛି ସମୟ ନୀରବ ରହିବା ପରେ ପୁଣି କହିଲା ଆନା···"ପିଲାଟି ଦିନରୁ ଏଇ ଦେଶରେ ରହିଛି । ଏଇ ଦେଶକୁ ମୁଁ ମୋର ମାତୃଭୂମି ବୋଲି ଭାବିନେଇଛି । ତେଣୁ ଏ ଦେଶର ଭାଷା ମୋ ମାତୃଭାଷା ହେବା ଅତି ସ୍ୱାଭାବିକ ମେରି । ମୁଁ ପ୍ରାଣଭରି ଏ ଦେଶ ଓ ଭାଷାକୁ ଭଲପାଏ; ତେଣୁ ଏ ଦେଶର ଝିଅ ବୋଲି ମୋ' ମନରେ ଗର୍ବ ।"

ମୈତ୍ରେୟୀ କେବଳ ମୁଣ୍ଡହଲାଇ ତା' କଥାକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ ଜଣାଇଲା ।

ସତେ ଯେପରି ତା' ମନର ଦୁଆରଟିକୁ ଖୋଲିଦେବା ଲାଗି ଆନା ଆଜି ସଜବାଜ ହୋଇ ବସିଛି । ତା'ପରେ ସେ କହିଚାଲିଲା—"ମୁଁ ଯେଉଁ ଦେଶରେ ଜନ୍ମଗ୍ରହଣ କରିଛି, ସେ ଦେଶକୁ ଜନ୍ମଭୂମି ବୋଲି ମନେ ମନେ ଭାବିଲେ ମଧ୍ୟ ମାତୃଭୂମି ରୂପେ ସାଦରେ ଗ୍ରହଣ କରିପାରିବ ନାହିଁ ।"

"ମାଆର ଗୋଟିଏ ଦାୟିତ୍ୱ ହେଉଛି ଜନ୍ମ ଦେବା ଏବଂ ଅନ୍ୟ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହେଉଛି ତାକୁ ସୁଖଦୁଃଖ ମଧ୍ୟ ଦେଇ ଲାଳନ-ପାଳନ କରିବା । ମୁଁ କେବଳ ପାଶ୍ଚାତ୍ୟ ଦେଶରେ ଜନ୍ମ ହୋଇଛି; କିନ୍ତୁ ଏ ଦେଶର ପାଣି, ପବନ, ମାଟି ଓ ମଣିଷ ମୋତେ ପିଲାଟି ଦିନରୁ ପାଳି ପୋଷି ଏଡ଼ିକିଏ କରିଛନ୍ତି । ତେଣୁ ଏମାନଙ୍କଠାରୁ ମୁଁ ପ୍ରକୃତରେ ପୃଥକ୍ ହେବାକୁ ଚାହେଁନା ମେରି । ମୁଁ ରକ୍ତର ସମ୍ପର୍କକୁ ଯେତେ ବିଶ୍ୱାସ କରେ, ତା'ଠାରୁ ଅଧିକ ଆସ୍ଥା ମୋର ରହିଛି, ହୃଦୟ ତଥା ମନର ସମ୍ପର୍କ ଉପରେ । ତୁମେ ମୋ' ବେଶପୋଷାକ ଦେଖି ମୋତେ ଦୂରେଇ ଦେଇପାର; କିନ୍ତୁ ମୁଁ ତୁମମାନଙ୍କୁ ଦୂରକୁ ଠେଲି ଦେବାକୁ ଆଦୌ ପ୍ରସ୍ତୁତ ନୁହେଁ ।"

ଏକା ଝୁଙ୍କ୍‌ରେ କଥାଗୁଡ଼ିକ ଉଗ ଉଗ ହୋଇ କହିଗଲା ଆନା ସତେ ଯେପରି—କୌଣସି ଏକ ଅଜାଣତର ଅନୁଭୂତି ତା'ର ସର୍ବାଙ୍ଗକୁ ଆଚ୍ଛନ୍ନ କରିପକାଇଛି ।

କିଛିକ୍ଷଣ ନୀରବ ରହିବା ପରେ ପୁଣି ଆରମ୍ଭ କଲା ଆନା—"ଜାଣିଲୁ ମେରି ! ବାପା ଯେତେବେଳେ ଦେଶକୁ ଚିରଦିନ ଲାଗି ଫେରିଯିବାର ପ୍ରସ୍ତାବ ମୋ' ଆଗରେ ଥୋଇଲେ, ସେ ସମୟରେ କେତେ ବିନିଦ୍ର ରଜନୀ ମୋର ବିତିଯାଇଛି, ତୁ ଆଦୌ ଚିନ୍ତା କରି ପାରିବୁନି । ଅବଶ୍ୟ ଏଠାରେ ଏକୁଟିଆ ରହିବାକୁ ମୋ' ମନରେ ଆଦୌ ଭୟ ନଥିଲା, କେବଳ ମୋ' ଚାରିପଟେ ଗର୍ଜି ଘୂମୁରି ବୁଲୁଥିବା ରକ୍ତପିପାସୁ ମଣିଷଖିଆ ବାଘ

ହାତୁଡ଼ିରୁ କିପରି ନିଜକୁ ରକ୍ଷାକରିବି ତାହାହିଁ ଥିଲା ମୋର ଏକମାତ୍ର ଭାବନା ।"

ଅନାର କଥା ଶୁଣି ଅବାକ୍ ହୋଇ ପଚାରିଲେ ମୈତ୍ରେୟୀ—"ତୁମେ ରକ୍ତପିପାସୁ ମଣିଷଖିଆ ବୋଲି କାହାକୁ କହୁଛ ?"

ଅନାର ଭାବଗମ୍ଭୀର ମୁଖମଣ୍ଡଳଟି ଉଦ୍ଦୀପ୍ତ ହୋଇଉଠିଲା । ସେ ମୈତ୍ରେୟୀର ସରଳତାରେ ହସିଦେଇ କହିଲା—"ଏତ ସାମାନ୍ୟ କଥାଟା ବି ବୁଝିପାରୁନ ତୁମ୍ଭେ ? ଯେଉଁମାନେ ତୋତେ ଅପହରଣ କରିନେବାର ଚେଷ୍ଟା କରୁଥିଲେ; ଅଥ ଯେଉଁ ନିରୀହ ମଣିଷଗୁଡ଼ିକ୍ ନାଲି ଆଖି ଦେଖାଇ ସେମାନଙ୍କ କଲିଜାଟାକୁ ଚିରି ଖାଇବାକୁ ଜିଭ ଲହଲହ କରୁଛନ୍ତି, ଆଉ ଯେଉଁମାନେ ମନରେ କୂଟକପଟରୁ ମେଞ୍ଚାଏ ହେବ ପୁରାଇ, ମୁହଁରେ ଭଦ୍ର, ସଭ୍ୟ ଓ ସୁଶୀଳତାର ମୁଖା ପିନ୍ଧି ଶଠ ମିତ୍ରତାର ଛଳନା କରିଚାଲିଛନ୍ତି, ସେମାନଙ୍କଠାରୁ ବଣର ଚିତାବାଘଗୁଡ଼ାକ କ'ଣ ଅଧିକ ହିଂସ୍ର ? ନା, 'ଆଦୌ ନୁହନ୍ତି ।"

ମୈତ୍ରେୟୀ ନିତାନ୍ତ ସରଳ ଓ ସହଜ ଭାବରେ କହିଲା—"ତୁମେ କେଡ଼େ ମହାନ୍ ଅନା !"

"ମୁଁ ଭଲ ବା ମନ୍ଦ ସେ ବିଷୟରେ ମୋର ଧାରଣା ନାହିଁ ।" କହିଲା ଅନା—"କିନ୍ତୁ ଏଇ ଭଦ୍ରମୁଖା ପିନ୍ଧା ଜାନୁଆରମାନଙ୍କୁ ଦେଖିଲେ ମୋ ହାତ ଜଳିଯାଏ ଏବଂ ଘୃଣାରେ ମୋର ସାରା ଶରୀର କମ୍ପିଉଠେ । କିନ୍ତୁ···ମୁଁ ନିଜକୁ ଅପରାଧିନୀ ବୋଲି କେତେବେଳେ ଭାବେ ଜାଣ, ଯେତେବେଳେ ମୁଁ ସେଇ ଧୂର୍ତ୍ତଗୁଡ଼ାକଙ୍କ ସାଙ୍ଗରେ ବସି ନାନା ବିଷୟରେ ଆଲୋଚନା କରେ ଏବଂ ସେଇମାନଙ୍କ ସହିତ କରମର୍ଦ୍ଦନ କରି ଶୁଭେଚ୍ଛା ଜଣାଏଁ ।" ଟିକିଏ ରହିଯାଇ ପୁଣି କହିଲା ଅନା—"ଉପାୟ ନାହିଁ, ଏଠି ବଞ୍ଚିରହିବାକୁ ହେଲେ ସେଇମାନଙ୍କ ସହିତ ଚଳିବାକୁ ବାଧ୍ୟ; ତାହାହିଁ ମୋ ମନରେ ବେଶି ଆଘାତ ଦିଏ । ସେମାନଙ୍କ ସହିତ ମିଳାମିଶା କରିବାକୁ ଘୃଣା କଲେ ବି ଛାଡ଼ିପାରୁଛି କେଉଁଠି ?" ତା'ପରେ କିଛି ସମୟ ତଳକୁ ମୁହଁପୋତି ନୀରବ ରହିବା ପରେ ପୁଣି କହିଲା ଅନା—"ମୋ ମନର ଦୁର୍ବଳତା ହେଉଛି ଯେ ମୁଁ ଏ ଦେଶଟିକୁ ଭଲପାଏ ।"

## ( ଅଠାଇଶ )

ପଣ୍ଡିତ ରମାକାନ୍ତ ଭଟ୍ଟାଚାର୍ଯ୍ୟ ଆସିଗଲେଣି ବୋଲି ଆସି ଖବରଦେଲା ବୃନ୍ଦାବନୀ । ଅନା ଚମକିପଡ଼ି ଅପ୍ରସ୍ତୁତ ହୋଇଗଲା । ସେ ମୈତ୍ରେୟୀ ସହିତ କଥା ଲହରରେ ମାତି ନିତ୍ୟକର୍ମ ମଧ୍ୟ ଶେଷକରିନଥିଲା । ସେ ସକାଳୁ ସକାଳୁ ମୈତ୍ରେୟୀ ସହିତ କଥାରେ ମାତି-ଯାଇ ଅଜି ପଣ୍ଡିତ ମହାଶୟଙ୍କ ଆସିବା ଦିନ ବୋଲି ପାସୋରି ଦେଇଥିଲା । ଅନା ତରବର ହୋଇ ସବୁ କାମ ଶେଷକରି ତଳକୁ ଓହ୍ଲାଇ ଆସିଲା ପଢ଼ାଘରକୁ ଏବଂ ମୈତ୍ରେୟୀ ଆତ୍ମଗୋପନ କରି ରହିଲା ତା' ଶୋଇବାଘରେ ।

ଗୁରୁଦେବଙ୍କ ପାଦଛୁଇଁ ପ୍ରଣାମ କଲା ଆନା ଏବଂ ପଣ୍ଡିତ ମହାଶୟ ଅଣ୍ଡାଳି ଅଣ୍ଡାଳି ତା' ମୁଣ୍ଡ ଉପରେ ହାତ ରଖି ଆଶୀର୍ବାଦ କଲେ । ଗୁରୁ ଓ ଶିଷ୍ୟାଙ୍କର ଏଭଳି ସୌଜନ୍ୟ-ଟିକକ ଆନା ପାଠ ଆରମ୍ଭର ପ୍ରଥମ ଦିନରୁ ହିଁ ଆରମ୍ଭ କରିଥିଲା । ଗୋଟିଏ ବିଦେଶିନୀ ଶାସକ ଜାତିର ଏ ସୌଜନ୍ୟରେ ମନେ ମନେ ଆନନ୍ଦିତ ହୋଇ ପ୍ରାଣଭରି ଆଶୀର୍ବାଦ ଅଜାଡ଼ିଦେଇଥିଲେ ଆନା ମୁଣ୍ଡରେ ।

ଆନାର ମୁଣ୍ଡ ଉପରେ ହାତ ରଖି କହିଲେ ବୃଦ୍ଧ ପଣ୍ଡିତ ମହାଶୟ—"ଆଜି ଆସିବା ବିଳମ୍ବ ହେଲା କାହିଁକି ମାଆ ? ଶରୀର ଓ ମନ ତୋର ସୁସ୍ଥ ଅଛି ତ ?"

"ଦେହ ଭଲଅଛି; ମାତ୍ର କାଲି ରାତିରେ ଟିକିଏ ଡେରିହୋଇଯାଇଥିଲା ଶୋଇବାରେ, ତେଣୁ ଆଜି ନିତ୍ୟକର୍ମ ସାରିବା ବିଳମ୍ବ ହେଲା । ସେଇଥିପାଇଁ ଠିକ୍ ସମୟରେ ଆସିପାରିଲି ନାହିଁ ।"

ପଣ୍ଡିତ ମହାଶୟ ଗମ୍ଭୀର ହୋଇଯାଇ କହିଲେ—"ତୋର ଆସିବାରେ ବିଳମ୍ବ ହେଲା ବୋଲି ମୋର ଚିନ୍ତା ନାହିଁ; କିନ୍ତୁ ଅଧ୍ୟୟନ ପାଇଁ ଶରୀର ଓ ମନର ସୁସ୍ଥତା ଏକାନ୍ତ ଆବଶ୍ୟକ । ବିଶେଷତଃ ମନ ପ୍ରସନ୍ନ ଥିଲେ ଯେକୌଣସି ଗହନ ବିଷୟ ଅନାୟାସରେ ଗ୍ରହଣ କରିହେବ...।" "ପଣ୍ଡିତ ମହାଶୟ", କହିଲା ଆନା—ଆପଣ ଅଭିସାର ଶବ୍ଦଟିର ଅର୍ଥ ଏବଂ ତା'ର ପ୍ରୟୋଗ କିପରି ଓ କେଉଁଠି ହେବ ଟିକିଏ ପ୍ରାଞ୍ଜଳ କରି ବୁଝାଇ ଦିଅନ୍ତୁ ତ ।"

ଗୋଟିଏ ଯୁବତୀ କିଆଁ ଅଭିସାର ଶବ୍ଦର ଅର୍ଥ ଜାଣିବାକୁ ଚାହୁଁଛି ବୋଲି ପଣ୍ଡିତ ରମାକାନ୍ତଙ୍କ ମନରେ ଧାରଣା ହେବା ଆଗରୁ, ବିଦେଶିନୀ ସେଇ ଶିଷ୍ୟାର ସନ୍ଦେହ ମୋଚନ କରିବାପାଇଁ ନିର୍ବିକାର ଚିତ୍ତରେ ସେ ବୁଝାଇବାକୁ ଲାଗିଲେ—"ନିର୍ଦ୍ଦିଷ୍ଟ ଗୋଟିଏ ମିଳନ-ସ୍ଥଳକୁ ନାୟକ ବା ନାୟିକାର ଗମନ ହେଉଛି ଅଭିସାର । ପ୍ରାଚୀନ କବିମାନେ ଅନେକ କାବ୍ୟରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ଅଭିସାର ଲୀଳାର ବର୍ଣ୍ଣନା କରିଛନ୍ତି । ସେ ପଦ-ଗୁଡ଼ିକ ଭକ୍ତ ତଥା ସାଧାରଣ ପାଠକ ପାଠିକାଙ୍କ ପ୍ରାଣରେ ଅନିର୍ବଚନୀୟ ପୁଲକ ଭରିଦିଏ ।

ବୃନ୍ଦାବନର ମାନସଗଙ୍ଗାର ପରପାରରେ ରହିଛନ୍ତି ଶ୍ରୀକୃଷ୍ଣ । ଗୋଟିଏ ମନୋରମ କୁଞ୍ଜରେ ସେ ମାନସୀ ପ୍ରିୟା ରାଧାର ଅପେକ୍ଷାରେ କାତର ଭାବେ ପ୍ରତୀକ୍ଷା କରି ରହିଛନ୍ତି । ବାହାରେ ଗୋଟିଏ ପତ୍ର ଖସିପଡ଼ିବା ମାତ୍ରେ ସେ ଚକିତ ନୟନରେ ଚାହୁଁଛନ୍ତି—ବୋଧହୁଏ ଶ୍ରୀମତୀ ପ୍ରବେଶ କରିଛନ୍ତି କି କୁଞ୍ଜରେ ! କବିରାଜ ଜୟଦେବ ସେହି ପ୍ରତୀକ୍ଷାର ଗୋଟିଏ ସୁନ୍ଦର ଚିତ୍ର ଆମମାନଙ୍କୁ ଉପହାର ଦେଇ ଲେଖିଛନ୍ତି—

ପତତି ପତତ୍ରେ ବିଚଲିତ ପତ୍ରେ ଶଙ୍କିତ ଭବଦୁପଯାନମ୍,
ରଚୟତି ଶୟନଂ ସଚକିତ ନୟନଂ ପଶ୍ୟତି ତବ ପନ୍ଥାନମ୍ ।"

ପ୍ରାଣପ୍ରିୟା ଦୟିତାଙ୍କ ପାଇଁ ଏହି ବ୍ୟାକୁଳତାର ଚିତ୍ର ଗୋଟିଏ ଦିଗରେ, ଅନ୍ୟ ଦିଗରେ ପ୍ରେମାସ୍ପଦ ଶ୍ରୀକୃଷ୍ଣଙ୍କ ସହିତ ମିଳନଆକାଂକ୍ଷା ପାଇଁ ପ୍ରସ୍ତୁତ ହେଉଛନ୍ତି ଶ୍ରୀରାଧା । ଘରେ ଦାରୁଣସ୍ୱଭାବର ନଣନ୍ଦ, ପ୍ରାକୃତିକ ବାଧା, ଆକାଶରେ ଅବନମିତ ମେଘର ଘନଘୋର

ଅନ୍ଧକାର, ମାର୍ଗ ପିଚ୍ଛିଳ, ବିଦ୍ୟୁତର ଚମକ ଏବଂ ବଜ୍ରପାତର ଶବ୍ଦ—ଏହି ସମସ୍ତ ବାଧା ଅତିକ୍ରମ କରି ଶ୍ରୀମତୀ ଚାଲିଛନ୍ତି ଶ୍ୟାମଙ୍କ ନିକଟକୁ ଅଭିସାରରେ । ସଖୀମାନେ ତାଙ୍କୁ ସଜାଇ-ଦେଇଛନ୍ତି ସୁଗନ୍ଧିତ ବନକୁସୁମ ମାଳରେ, ଅଙ୍ଗରେ ନୀଳ ଦୁକୂଳ । ଶ୍ରୀରାଧା ପାଦରେ ପିନ୍ଧିବାକୁ ଖୋଜୁଛନ୍ତି ନୂପୁର; କାରଣ କଳହଂସ ସଦୃଶ ଧ୍ୱନି କରି ସେ ନୂପୁର ଜଣାଇ-ଦେବ ତାଙ୍କ ପ୍ରାଣପ୍ରିୟଙ୍କୁ ପ୍ରଣୟିନୀ ଆସୁଛନ୍ତି ବୋଲି ।

କିନ୍ତୁ ସଖୀମାନେ ବାଧା ଦେଉଛନ୍ତି ସେ ପ୍ରକାର ଅଭିଳାଷରେ । କାରଣ 'ମୁଖର ମଧୀରଂ ତ୍ୟଜ ମଞ୍ଜୀରଂ' । କାରଣ ଦର୍ଶାଇ ସଖୀମାନେ କହୁଛନ୍ତି—ଅଭିସାର କରିବାକୁ ହୁଏ ଗୋପନରେ । ନୂପୁରର ରୁଣ୍ଣୁଝୁଣ୍ଣୁ ଧ୍ୱନିରେ ଗୁରୁଜନଙ୍କର ନିଦ୍ରାଭଙ୍ଗ ହେବାର ସମ୍ଭାବନା ରହିଛି । ତା' ବ୍ୟତୀତ ଦୂରରୁ ତୁମର ନୂପୁରଧ୍ୱନି ଶୁଣିପାରି ସାବଧାନ ହୋଇଯିବେ ଚତୁର କୃଷ୍ଣ । ଯେ ତୁମର ପ୍ରତୀକ୍ଷାରେ ଅଧୀର ହୋଇଉଠିଥିବାର କୌଣସି ଲକ୍ଷଣ ତୁମେ ଦେଖିବାକୁ ପାଇବନାହିଁ । ତେଣୁ ସଖୀମାନେ ପରାମର୍ଶଦେଇ କହୁଛନ୍ତି—ଯଦି ତୁମେ ଅଭିସାରରେ ଯିବାକୁ ଚାହୁଁଛ ତେବେ ଏ ନୂପୁର ତ୍ୟାଗକର ।''

ଏତିକି କହିସାରି ନୀରବ ହୋଇଗଲେ ରାମକାନ୍ତ ମହାଶୟ । ତା' ପରେ ସେ କହିଲେ —''ଅଭିସାରରେ ଏକାନ୍ତରେ ପ୍ରଜ୍ୱଳିତ ହୋଇଉଠିବ ଗୋଟିଏ ପ୍ରତୀକ୍ଷାର ପ୍ରଦୀପ, ଅନ୍ୟ ଦିଗରେ ମନ ମଧ୍ୟରେ ଉଦ୍‌ବେଳିତ ହୋଇଉଠିବ ଆକାଙ୍‌କ୍ଷା । ମଝିରେ ରହିଥିବ ବିଘ୍ନ ତଥା ଦୁଃଖପୂର୍ଣ୍ଣ ବନ୍ଧୁର ପଥ । ଯେତିକି ବିଘ୍ନ, ବାଧାବିଘ୍ନର ଦୂରୀକରଣରେ ସେତିକି ଆନନ୍ଦ । ଏହାହିଁ ହେଉଛି—ଅଭିସାରର ମୌଳିକ ତଥ୍ୟ ।''

କିଛି ସମୟ ନୀରବ ରହିବା ପରେ ପୁଣି କହିଲେ ପଣ୍ଡିତ ମହାଶୟ—''ସେଥିପାଇଁ ମନର ପ୍ରସ୍ତୁତି ଆବଶ୍ୟକ । କେବଳ ବାହାରର ବାଧାବିଘ୍ନ ବଡ଼କଥା ନୁହେଁ; ମନରୁ ଲଜ୍ଜା, ସଙ୍କୋଚ ଓ ଆଶଙ୍କା ବିମୋଚନ କରିବା ହେଉଛି ମୁଖ୍ୟ ।''

ଏହିପରି ଭାବରେ ଅନେକ ପ୍ରକାର ଉଦାହରଣଦେଇ ବୁଝାଇଲେ ପଣ୍ଡିତ ରାମକାନ୍ତ ଅଭିସାରର ସ୍ୱରୂପ । ଅନା ମୁଗ୍‌ଧ ହୋଇ ମନୋଯୋଗ ସହକାରେ ଶୁଣିବାକୁ ଲାଗିଲା । ଗତ ସନ୍ଧ୍ୟାରେ ରାଜାରାୟଙ୍କ ମୁହଁରୁ ଶୁଣିଥିବା 'ଅଭିସାରିକା' ଶବ୍ଦଟି ତା' ମନରେ ସାକାର ହୋଇଉଠିଲା । ରାଜାରାୟ ଭାବବିହ୍ୱଳତା ମଧ୍ୟରେ କହିପକାଇଥିଲେ—''ମୋ' ସଙ୍ଗୀତ-ରାଜ୍ୟରେ ତୁମେ ହେବ ପ୍ରକୃତ ଅଭିସାରିକା ।'' ସେଇ ଉକ୍ତିଟିକୁ ଅନା ମନେ ମନେ ଅଧରରେ ଗୁଣୁଗୁଣୁ ହୋଇଥିଲା ।

ତା' ସହିତ 'ଗୀତଗୋବିନ୍ଦ'ର ଅନ୍ୟ ଉକ୍ତିଟି ମଧ୍ୟ ତା' ମନମନ୍ଦିରରେ ଝଂକୃତ ହେବାକୁ ଲାଗିଲା—'ମୁଖର ମଧୀରଂ ତ୍ୟଜ ମଞ୍ଜୀରମ୍ ।' ଅଭିସାରରେ ଯିବାକୁ ହୁଏ ଗୋପନରେ । କେବଳ ଘରଅଡ଼ର ମନୁଷ୍ୟଙ୍କଠାରୁ ଗୋପନରେ ଯିବାର ନୁହେଁ; ବରଂ ପ୍ରାଣପ୍ରିୟଙ୍କୁ ମଧ୍ୟ ଚମକାଇଦେବା ଉଦ୍ଦେଶ୍ୟରେ ପ୍ରଣୟିନୀ ସାଜେ ଅଭିସାରିକା । ଗୋପନ ରଖିବାକୁ ହୁଏ ମିଳନଯାତ୍ରାର ମହନୀୟ ଉଦ୍ଦେଶ୍ୟ ।

( ଅଣଅଶୀ )

ପୁଣି ଗୋଟିଏ ସପ୍ତାହ ଆସିଗଲା । ଏଇ ସପ୍ତାହର ଶେଷ ଦିନ ନିର୍ଦ୍ଦିଷ୍ଟ ସମୟରେ ଅନାକୁ ଯିବାକୁ ହେବ ରାଜାବାପୁଙ୍କ ଜଳମହଲକୁ । ଏଥର କିନ୍ତୁ ନିର୍ଦ୍ଦିଷ୍ଟ ସମୟର ଢେର୍ ଆଗରୁ ବାହାରିପଡ଼ିଲା ଅନା । ମେଲିଦେଲା ତା'ର ଶ୍ଳେଟ ତରଣୀଟିକୁ ସୁବର୍ଣ୍ଣରେଖାର ପ୍ରଶସ୍ତ ବକ୍ଷରେ ଠିକ୍ ମୁହଁସଞ୍ଜରେ । ଘାଟଠାରୁ କିଛି ଦୂର ପୂର୍ବରୁ ସେ ଲଗାଇ ବାନ୍ଧିଦେଲା ତା'ର ଡଙ୍ଗାଟିକୁ । ତା'ପରେ ସନ୍ଧ୍ୟାର ଆସ୍ତରଣ ଯେଉଁଠି ରାଜାବାପୁଙ୍କ ଉଦ୍ୟାନର ବିଶାଳ ଦ୍ରୁମ ଗୁମ୍ଫାରେ ଘନୀଭୂତ ହୋଇଉଠିଛି, ତା'ରି ଭିତର ଦେଇ ସେ ଆଗେଇ ଚାଲିଲା । ହିଁ, ତା' ଅନୁମାନ ଠିକ୍—ଏ ପର୍ଯ୍ୟନ୍ତ ରାଜାବାପୁ ଆସି ପହଞ୍ଚିନାହାନ୍ତି ଜଳମହଲରେ ।

ଅନା ଚୁପ୍‌ଚାପ୍ ଛିଡ଼ାହୋଇ ରହିଲା ଗୋଟିଏ ପ୍ରକାଣ୍ଡ ବୃକ୍ଷର ବହଳ ଛାଇ ତଳେ । ପାଦତଳେ ତା'ର କଙ୍କରିଲ ଭୂମି । ଗଛର ଗୋଟିଏ ପଟେ ଝିଲ୍‌ମିଲ୍ ହୋଇ ଦିଶିଯାଉଛି ନଦୀର କିଛି ଅଂଶ ଏବଂ ଅନ୍ୟ ପଟେ ଅଦୂରରେ ଦିଶିଯାଉଛି ରାଜାବାପୁଙ୍କ ଜଳମହଲ । ହଠାତ୍ ଜୁଳୁଜୁଳିଆ ପୋକଙ୍କୁ ମେଞ୍ଚାଏ ହେବ ଦପ୍‌ଦପ୍ ଆଲୁଅ ଜଳେଇ ନୃତ୍ୟର ତାଳେ ତାଳେ ଆଗେଇଗଲେ ନଈଆଡ଼କୁ । ଝିଙ୍କାରିର ଝିଁ ଝିଁ ଶବ୍ଦ କାନ ପାଖରେ ଅନୁରଣିତ ହୋଇଉଠୁଛି ! ଗଛଟିର କୌଣସି ଏକ ଶାଖା ଉପରେ ବସା ବାନ୍ଧିଥିବା ପକ୍ଷୀର ଡେଣା ହଠାତ୍ ଫଡ଼୍ ଫଡ଼୍ କରି ଅନାକୁ ଚମକାଇଦେଲା । ତା'ପରେ ପକ୍ଷୀଟିର ଡେଣା ଝଡ଼ା ଶବ୍ଦ ବନ୍ଦହୋଇଗଲା । ନଈ ପାଣିକୁ ଛୁଇଁ ବହିଆସିଲା ଝଲକାଏ ଶୀତଳ ପବନ ଅନାର ବ୍ୟସ୍ତ ମନକୁ ଆହୁରି ଚଞ୍ଚଳ କରାଇ । ନାନା ଧରଣର ଫୁଲର ମିଶ୍ରିତ ମହକ ଭାସିଆସିଲା ପବନର ପିଠିରେ ବସି । ଶିରଶିର ପବନର କମ୍ପନରେ ବୃକ୍ଷର ପତ୍ରଗୁଡ଼ିକ ଦୋହଲି ଉଠିଲେ ସତେ ଅବା ତଳେ ଛିଡ଼ାହୋଇ ଅତିଥି ସାଥିରେ ଦି'ପଦ ଖୁସିଗପ କରିବାପାଇଁ ସେମାନେ ସଜବାଜ ହେଉଛନ୍ତି । ଅନା ସେଇଠି ଘନଅନ୍ଧକାର ମଧ୍ୟରେ ଛିଡ଼ାହୋଇ ଆଘ୍ରାଣ କଲା ମନଭରି ଫୁଲଗୁଡ଼ିକର ମିଶ୍ରିତ ସୁଗନ୍ଧ ।

ତନ୍ମୟ ଅବସ୍ଥାରେ ଆନା କେତେ ସମୟ ଧରି ଛିଡ଼ାହୋଇଥିଲା ତା'ର କଳନା ନଥିଲା । ମନେହେଲା ସତେଯେପରି ପ୍ରସ୍ତରମୂର୍ତ୍ତି ପରି ଯୁଗ ଯୁଗ ଧରି ସେ ଛିଡ଼ା ହୋଇ-ଥିଲା କାହାରି ପ୍ରତୀକ୍ଷାରେ । ରାତ୍ରିର ଘନଅନ୍ଧକାର ଭେଦକରି ଚନ୍ଦ୍ରମା ଉଠିଆସିଲା ଉପରକୁ । ଆନା ନିଜକୁ ଗୋପନ କରିବାପାଇଁ ଚାଲିଗଲା ଆହୁରି ନିବିଡ଼ ଜଙ୍ଗଲ ଭିତରକୁ ।

ଆସିଗଲେ ରାଜାବାପୁ । ତାଙ୍କ କଣ୍ଠରୁ ଭାସିଆସୁଛି ମଧୁର ସ୍ୱରର ଝଙ୍କାର । ଧୀରେ ଅତି ଧୀରେ ଚାଲିଗଲେ ରାଜାବାପୁ ଆନାକୁ ପାରହୋଇ । ତାଙ୍କ କଣ୍ଠର ସ୍ୱର ମୂର୍ଚ୍ଛନା ବିଚ୍ଛୁରି ହୋଇ ପଡ଼ିଲା ସାନ୍ଦ୍ର ବନଭୂଇଁର ନିବିଡ଼ତା ମଧ୍ୟରେ । ଶିରଶିର ପବନରେ ଗଛର ପତ୍ରଗୁଡ଼ିକ ପ୍ରକମ୍ପିତ ହୋଇଯାଉଛି । ନଦୀର ଜଳସ୍ରୋତ କଳ ନାଦରେ ବହିଚାଲିଛି ।

ରାଜାବାବୁ ଏକଲୟରେ ଚାହିଁରହିଲେ ଆରପାଖର ନୀଳକୋଠି ଆଡ଼କୁ । ତା'ପରେ କେତେକ୍ଷଣ ଧରି ଅନ୍ତର୍ଦ୍ଧୃଷ୍ଟ ଭାବରେ ନଦୀଘାଟରେ ପଦଚାରଣ କରିବାକୁ ଲାଗିଲେ ।

ଆନା ଚାହିଁରହିଥିଲା ରାଜାବାବୁଙ୍କ ଆଡ଼କୁ । କେଉଁଠାରୁ ଆସି ତା' ମନ ଭିତରେ ଏକ କୌତୂହଳ ଜାଗିଉଠିଲା । କିନ୍ତୁ ସେ କୌତୂହଳ ତା' ମନ ମଧ୍ୟରେ ଦୀର୍ଘସ୍ଥାୟୀ ହୋଇ-ରହିଲା ନାହିଁ । ସେହି ମୂହୂର୍ତ୍ତରେ ତାର ସମସ୍ତ ଇନ୍ଦ୍ରିୟ ଏକାକାର ହୋଇଗଲା । ସେ ଅପଲକ ଦୃଷ୍ଟିରେ ଚାହିଁରହିଲା ଗୋଟିଏ ପ୍ରତୀକ୍ଷାରତ କାତର ଶିଳ୍ପୀ ଆଡ଼କୁ । ତା'ପରେ ପୁଣି ସ୍ୱରଝଙ୍କାର ଫୁଟିଉଠିଲା ରାଜାବାବୁଙ୍କ କଣ୍ଠରେ—ସତେଅବା, କାହାର ପ୍ରତୀକ୍ଷାରେ ସେ ରହିଛନ୍ତି, କିନ୍ତୁ ସେ ଆସିଲା ନାହିଁ । ମନେହେଉଛି ତାଙ୍କର ସହନ ଶକ୍ତି ସୀମା ଅତିକ୍ରମ କରି ଚାଲିଛି—

"ପ୍ରିୟା ନହିଁ ଆୟେ
ବହୁତ ଦିନନ ବୀତି ।
ଜବ ସେ ଗୟେ ମୋରି
ଶୁଧିହୁ ନ ଲିନୀ
ଚୈନ ନହିଁ ଜିୟରା ମୋରା ।"

ଯନ୍ତ୍ରଚାଳିତ ପରି ଆନା ଚାଲିବାକୁ ଲାଗିଲା ଜଳମହଲ ଆଡ଼କୁ; ଯେଉଁଠି ବନ୍ଧାହୋଇ ରହିଥିଲା ରାଜାବାବୁଙ୍କ ନୌକାଟି । ସେ ଯାଇ ବସିପଡ଼ିଲା ରାଜାବାବୁଙ୍କ ନୌକାରେ । ପ୍ରତୀକ୍ଷା କରି ରହିଲା ଆଉ କାହାର ଆଗମନକୁ । ଅନେକ ସମୟ ପରେ ସେଠାରେ ଆସି ପହଞ୍ଚିଗଲେ ରାଜାବାବୁ ଏକ ନିରାଶ ମନର ଭଗ୍ନବାଞ୍ଛାସ ନେଇ । ରାଜାବାବୁଙ୍କ ଏପରି ସ୍ଖଳିତ ପଦକ୍ଷେପ ସେ ପୂର୍ବରୁ କେବେହେଲେ ଦେଖିନଥିଲା ।

ମଣିଷଟି ହଠାତ୍ ଚମ୍‌କିପଡ଼ି ଛିଡ଼ାହୋଇଗଲେ । ସହଜା ନିଜ ଆଖିକୁ ସେ ବିଶ୍ୱାସ କରି-ପାରିଲେ ନାହିଁ । ନା, ଏତେଦୂର କୌତୁକ ଆନା ପକ୍ଷରେ ଅତ୍ୟନ୍ତ ଅଶୋଭନୀୟ ନିଶ୍ଚୟ । ଏଥର ଆନା ନିଜ ମୁଖମଣ୍ଡଳରେ ହାସ୍ୟର ଅପରୂପ ଛଟା ଖେଳାଇ ଦେଇ କହିଲା— "ସମାଗତା ଅତିଥିର ଏପ୍ରକାର ଅମର୍ଯ୍ୟାଦା ମୁଁ ଆଦୌ ଆଶାକରିନ ରାଜା !"

ଚମକି ଉଠିଲେ ରାଜାବାବୁ । ସତେଅବା ନିଜ ଆଖି ଦୁଇଟିକୁ ସେ ବିଶ୍ୱାସ କରିପାରୁ ନାହାନ୍ତି । ସେ କହିଲେ—"ତୁମେ ଆନା···ସତରେ କ'ଣ ତୁମେ ଆସିଛ ?"

ହିଯର ତରଙ୍ଗ ହୃଦର ନିସ୍ତରଙ୍ଗ ଜଳରେ ଖେଳାଇ ଦେଇ କହିଲା ଆନା—"ତୁମେ···; ତୁମେ କ'ଣ ସତରେ ମୋତେ ଚହ୍ନି ପାରୁନ ରାଜା । ଏହାଠାରୁ ଆଉ ବଡ଼ଧରଣର ଅପମାନ ଅତିଥି ପକ୍ଷରେ କ'ଣ ହୋଇପାରେ···।" କଥା କହୁଁ କହୁଁ ନୌକା ଉପରେ ଆନା ଉଠିପଡ଼ି ଛିଡ଼ା ହେବାକୁ ଯାଉଥିବାବେଳେ କହିଲେ ରାଜାବାବୁ—"ଆଜି ତୁମେ ହିଁ ତୁମର ନୌକା ଉପରେ ମୋତେ ଆଶ୍ରୟ ଦିଅ ଆନା ।"

ଆନା ନୌକା ଉପରେ ଛିଡ଼ାହୋଇ କହିଲା—"ଯା'ହେଉ, ବେଶ୍ ଖୁବ୍ ମଜା କଥା

ହୋଇଗଲେ । ଗୁଡ଼ ସେ କଥା । ଏଥର କୁହ, ତୁମେ ମୋର ଅତିଥି କମ୍ବା ମୁଁ ତୁମର···?"

କିଛି ନଭାବି ରାଜକୁମାର କହିପକାଇଲେ—"ଆମେ ଦୁହେଁ ଆଜି ଦୁହିଁଙ୍କର ଅତିଥି । ରାତି ଏତେ ବେଶି କିଛି ହୋଇନାହିଁ । ଏଣିକି ଆସ ମୋର ଜଳମହଲକୁ, ତା'ପରେ ମୋତେ ତୁମେ ସୁଯୋଗ ଦେବ ତୁମ ନୀଳକୋଠିକୁ ଯାଇ ତୁମକୁ ପହଞ୍ଚାଇଦେଇ ଆସିବାକୁ ।"

"ତା' ଅପେକ୍ଷା ଆଉ ଗୋଟିଏ ମଧ୍ୟମପନ୍ଥା ଗ୍ରହଣ କରାଯାଇପାରେ" କହିଲା ଆନା— "ଆଜି ଆମେ ଦୁହେଁ କେହି କାହାର ଅତିଥି ହେବା ନାହିଁ; ବରଂ ଚାଲ, ନଦୀର ଉଜାଣିରେ ଭାସିଯିବା ପକ୍ଷୀଦ୍ୱୀପକୁ । ସେଇଠି ଆମେ ଆକାଶର ରୁପେଲି ଚାନ୍ଦ ଆଉ ସୁନେଲୀ ବାଲିଚରର ଅତିଥି ହୋଇପାରିବା ।"

ସୁବର୍ଣ୍ଣରେଖାର ଜଳସ୍ରୋତର ଠିକ୍ ମଝାମଝିରେ ସେ ଦୁହିଁଙ୍କ ଡଙ୍ଗାଟି ଯାଇ ଲାଗିଲା ଗୋଟିଏ କ୍ଷୁଦ୍ର ଦ୍ୱୀପରେ । ଦ୍ୱୀପଟିକୁ ଘେରି ନଦୀଟି ଦୁଇଭାଗରେ ବିଭକ୍ତ ହୋଇ ବହିଯାଇ, ଟିକିଏ ଦୂରରେ ପୁଣି ମିଳିତ ହୋଇଯାଇଛି । ଲୋକଲୋଚନଠାରୁ ଦ୍ୱୀପଟି ଥିଲା କିଛି ଦୂରରେ । ଅବଶ୍ୟ ତା' ବୋଲି ଜନକୋଳାହଳ ସେଠାରେ ନଥିଲା, ତା' ନୁହେଁ । ହଜାର ହଜାର ପକ୍ଷୀ ସେ ଦ୍ୱୀପରେ ସକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ କେଁ···କାଁ···ଚେଁ···ଚାଁ··· କଳକୂଜନ କରି ମେଳା ବସାଇଥାଆନ୍ତି । ସେଇଥିପାଇଁ ଲୋକମାନେ ବାଲିଚରଟିର ନାମ 'ପକ୍ଷୀଦ୍ୱୀପ' ବୋଲି ନାମିତ କରିଥିଲେ । ରାତ୍ରିରେ ଏ ବାଲିଚରଟାରେ ବିରାଜିଥାଏ ଶାନ୍ତିର ପରମ ନିସ୍ତବ୍ଧତା । କେବଳ ବାଲିଚର ଉପରେ ମୁଣ୍ଡ ଟେକିଥିବା କେଇଟି ଝାଉଁଗଛରୁ ସାଏଁ···ସାଏଁ ଶବ୍ଦ ଭାସିଆସୁଥିଲା ଏବଂ ବାଇଗଣୀ ରଙ୍ଗର ଗୋଟିଏ ପ୍ରକାର ଫୁଲର ମହକ ପବନରେ ଖେଳିବୁଲୁଥିଲା ଦ୍ୱୀପଟିର ସବୁଆଡ଼େ ।

ରାଜକୁମାର ଆନାର ଏ ପ୍ରସ୍ତାବରେ ଆଦୌ ଆପତ୍ତି କରିନଥିଲେ ଏବଂ ପକ୍ଷୀଦ୍ୱୀପରେ ପହଞ୍ଚିବା ପରେ ସେ କହିଲେ—"ଆନା, ତୁମର ପ୍ରସ୍ତାବ ଅତ୍ୟନ୍ତ ଚମତ୍କାର, ସମୟୋପଯୋଗୀ ।"

ରାଜକୁମାର ଆନା ସାଥିରେ ବୁଲୁବୁଲୁ କହିଲେ—"ଅଚ୍ଛା ଆନା, ଆଜି ତୁମେ ମୋ ଆଖିକୁ ଫାଙ୍କିଦେଇ କପରି କେତେବେଳେ ଓ କେଉଁବାଟେ ଆସି ପହଞ୍ଚିଗଲ ଆମ ଘାଟରେ ?"

ଆନା ରାଜକୁମାରଙ୍କ କଥା ଶୁଣି ମନେ ମନେ ଅତ୍ୟନ୍ତ ପୁଲକିତ ହୋଇ କହିଲା —"ତୁମେ ହିଁ ସେଦିନ ମୋତେ କହିଥିଲ ନା, ମୁଁ ତୁମ ସ୍ୱପ୍ନ-ଝଙ୍କାରର ଅଭିସାରିକା···। ତେଣୁ···" ହସରେ ଫାଟିପଡ଼ି କହିଲା ଆନା—"ମୁଁ ଅଭିସାରର ନିୟମ ଭଙ୍ଗ ନକରି ତୁମ ପାଖକୁ ଚାଲିଆସିଛି ଆଜି···।"

ରାଜକୁମାର ହଠାତ୍ ଦପ୍‌କରି ଛିଡ଼ାହୋଇଗଲେ । ସେ ଆନା ଆଡ଼କୁ ସନ୍ଦିଗ୍ଧଦୃଷ୍ଟିରେ ଚାହିଁ କହିଲେ—"ସେ ପୁଣି କ'ଣ ? ଅଭିସାରର ନିୟମ ତୁମେ ଜାଣିଲ କପରି ?"

ରାଜାଗୁରୁଙ୍କ କୌତୁକଭରା ପ୍ରଶ୍ନରେ ଆନା ଟିକିଏ ଲଜ୍ଜାପାଇ କ'ଣ ଉତ୍ତର ଦେବ ବୋଲି ମନେ ମନେ ତଥ୍ୟଗୁଡ଼ିକ ସଜେଇ ନେଇ କହିଲା—"ମହାକବି ଜୟଦେବଙ୍କ 'ଗୀତଗୋବିନ୍ଦ' ପୁସ୍ତକରେ ଶ୍ରୀକୃଷ୍ଣଙ୍କ ନିକଟକୁ ଶ୍ରୀରାଧାଙ୍କ ଅଭିସାରର ଚମତ୍କାର ବର୍ଣ୍ଣନା ରହିଛି । ରସିକ କବି ଜୟଦେବ ଶ୍ରୀମତୀଙ୍କ ଅଭିସାର ସମୟରେ ତାଙ୍କ ପାଦରେ ନୂପୁର ପିନ୍ଧିବା ପାଇଁ ବାରଣ କରି ଲେଖିଛନ୍ତି—"ମୁଖର ମଧୀରଂ ତ୍ୟଜ ମଞ୍ଜୀରଂ ।' କାରଣ, ଅଭିସାର ଯାହା ହୁଏ ନିଃଶବ୍ଦ ତଥା ନୀରବ ପରିବେଶରେ । ତା'ହେଲେ ଯାଇ ଅଭିସାର ସରସ ତଥା ସୁନ୍ଦର ହୋଇଉଠିବ ।"

ବିସ୍ମୟରେ ରାଜାଗୁରୁଙ୍କ ଆଖି ଯୋଡ଼ିକ ଖୋସି ହୋଇଗଲା । ସେ ଆନାର ତୋଫା ମୁଖକୁ ସନ୍ତୁଷ୍ଟ ଦୃଷ୍ଟିରେ ଚାହିଁ କହିଲେ—"ତୁମ କଥା ଶୁଣି ପ୍ରକୃତରେ ମୁଁ ଅବାକ୍ ନ ହୋଇ ରହିପାରୁନି ଆନା ! ତୁମେ କିପରି ଜାଣିଲ ମହାକବି ଜୟଦେବଙ୍କ ଗୀତ-ଗୋବିନ୍ଦର ଏଇ ନିଗୂଢ଼ ରହସ୍ୟ ? ତୁମେ କ'ଣ ଗୀତଗୋବିନ୍ଦ ପଢ଼ିଛ ନା କାହା ପାଖରୁ ଶୁଣିଛ ?"

ଆନା ଉଦ୍ଦେଶ୍ୟମୂଳକ ଭାବରେ ଗୀତଗୋବିନ୍ଦର ପ୍ରସଙ୍ଗ ଉତ୍ଥାପନ କରିଥିଲା । ତେଣୁ ସେ ଅତ୍ୟନ୍ତ ଗମ୍ଭୀର ହୋଇ କହିଲା—"ସଂସ୍କୃତ ଭାଷା ଉପରେ କେବଳ ତୁମରି ହିଁ ଏକଚାଟିଆ ଅଧିକାର ରହିବ ବୋଲି କ'ଣ ପରମାତ୍ମା ନିୟମ ତିଆରି କରିଛନ୍ତି ? ଆକାଶ, ସୂର୍ଯ୍ୟ ଓ ଚନ୍ଦ୍ରମାଙ୍କ ଦର୍ଶନ କରିବା ପାଇଁ ଯେପରି ଜାତି ଧର୍ମ ତଥା ସମ୍ପ୍ରଦାୟର ଅନୁଶାସନ ଲାଗୁ ହୁଏନି, ସେହିପରି ସଂସ୍କୃତ ଭାଷା ହେଉଛି ସ୍ୱର୍ଗଙ୍ଗା ପରି ସମୁଜ୍ଜ୍ୱଳ ଭାଷା । ସେ ଭାଷାର ସାହିତ୍ୟ ପାଠ କରିବା ପାଇଁ କେବଳ ହିନ୍ଦୁ ହୋଇ ଜନ୍ମଗ୍ରହଣ କରିବାର ଆବଶ୍ୟକତା ରହିଛି ବୋଲି ତୁମେ ଅବାନ୍ତର ଚିନ୍ତା କରୁଛ କାହିଁକି ? ମୁଁ ଶାଶ୍ୱତ କବିତା ଗୁଚ୍ଛ ମଧ୍ୟରେ ଅନନ୍ତ ଆକାଶର ସନ୍ଧାନ ପାଉଛି !"

ରାଜାଗୁରୁ ବିନୀତ କଣ୍ଠରେ କହିଲେ—"ମିଛଟାରେ ତୁମେ ମୋତେ ଭୁଲ ବୁଝିଲ ଆନା । ସଂସ୍କୃତ ଭାଷା ଶିଖିବା ଓ ତା'ର ବିପୁଳ ଭଣ୍ଡାରକୁ ଅନୁଧ୍ୟାନ କରିବାରେ ତୁମର ଅଧିକାର ଅଛି କି ନା ମୁଁ ସେ ପ୍ରଶ୍ନ ଉଠାଉ ନାହିଁ । ତୁମେ ସମ୍ପୂର୍ଣ୍ଣ ପୃଥକ୍ ପରିବେଶ ମଧ୍ୟରେ ରହି ସଂସ୍କୃତ ଭାଷାର ସବୁଠାରୁ ସରସ ତଥା ସାବଲୀଳ ଗୀତିକାବ୍ୟର ରସ ମାଧୁରୀକୁ ଅବଲୋକନ କଲ କିପରି ?"

ରାଜାଗୁରୁଙ୍କ ବିଶ୍ଳେଷଣରେ ସରଳ ହୋଇଆସିଲା ଆନା ସେ ବିନୟଭରା କଣ୍ଠରେ କହିଲା—"ମୁଁ ଭୁଲବୁଝିଥିବାରୁ ତୁମକୁ କ୍ଷମା ମାଗୁଛି । ମୁଁ ଜଣେ ପଣ୍ଡିତ ମହାଶୟଙ୍କ ଠାରୁ ସଂସ୍କୃତ ଅଧ୍ୟୟନ କରୁଛି । ସେ ବିଚରା ଚକ୍ଷୁହୀନ; କିନ୍ତୁ ଅସାଧାରଣ ତାଙ୍କର ଅନ୍ତର୍ଦୃଷ୍ଟି । ମେଘଦୂତ ପଢ଼ାଉଥିବା ସମୟରେ ସେ ବର୍ଷାକାଳୀନ କୁସୁମର ମନୋରମ ଛବି ଦେଖିବାକୁ ପାଆନ୍ତି ଅନ୍ତର୍ଦୃଷ୍ଟିରେ ।"

"ତୁମେ ପଣ୍ଡିତ ରାମକାନ୍ତ ଭଟ୍ଟାଚାର୍ଯ୍ୟଙ୍କ କଥା କହୁନାହଁ ତ ଆନା ?" ରାଜାଗୁରୁଙ୍କ

କଣ୍ଠରେ ବ୍ୟାକୁଳଭରା ଶୀହ୍ନଲତା ।

ଆନା କିନ୍ତୁ ରାଜାରାୟଙ୍କ ଉତ୍ତର ପ୍ରତି କର୍ଣ୍ଣପାତ ନକଲା ପରି କହିଗଲା ଅନର୍ଗଳ ଭାବରେ, ସତେ ଯେପରି ସେ ପରିସ୍ଥିତିର ଗୁରୁତ୍ୱ ସମ୍ବନ୍ଧରେ କିଛି ହେଲେ ଜାଣିନି—"ତାଙ୍କ ପରି ଜ୍ଞାନୀ ସଂସ୍କୃତ ବିଦ୍ୱାନ୍ ଅତ୍ୟନ୍ତ ବିରଳ । ହଁ, ରାଜା ! ତୁମେ ପଣ୍ଡିତ ମହାଶୟଙ୍କୁ ଚିହ୍ନିଛ କି ?"

ସତେଅବା ମନ ମଧ୍ୟରେ ବଢ଼ୁଥିବା ପ୍ରବଳ ଝଡ଼ବତାସର କବଳରୁ ରାଜାରାୟ ନିଜ ଜୀବନତରଣୀଟିକୁ କୌଣସିମତେ ରକ୍ଷା କରିବା ପାଇଁ ଛଳନାରୂପକ ଆହୁଲାର ବେଗ ବଢ଼ାଇବାରେ ଲାଗିଛନ୍ତି । ତାଙ୍କର ମୁଖ ରୂପକ ଦର୍ପଣରେ ମନର ଭାବ ସ୍ପଷ୍ଟ ରୂପେ ପ୍ରତିବିମ୍ବିତ ହୋଇଉଠିଲା ।

ରାଜାରାୟଙ୍କ ଅବସ୍ଥା ଦେଖି ମନେ ମନେ ହସିଉଠିଲା ଚତୁରୀ ଆନା । ସେ ମୁହଁରେ କିଛି ପ୍ରକାଶ ନକରି ଭାବିଲା—'ପରିସ୍ଥିତିରୁ ରକ୍ଷା ପାଇବା ପାଇଁ ଚେଷ୍ଟା କରୁଛି ରାଜା···'

କିଛି ସମୟ ନୀରବତାରେ ବିତିଗଲା । କାହାରି ମୁହଁରୁ ପଦେହେଲେ କଥା ବାହାରିଲା ନାହିଁ । କିନ୍ତୁ ଆନାର ମନ ମଧ୍ୟରେ ଆଉ ଏକ କୌତୂହଳ ଜାଗିଉଠିଲା । ସେ ଜାଣିବାକୁ ଚାହେଁ—ରାଜାରାୟଙ୍କ ମନରେ ଅଦ୍ୟାପି ମୈତ୍ରେୟୀର ସ୍ମୃତି ଜମାଟ ବାନ୍ଧି ରହିଛି କି ନାହିଁ । ନାରୀର ମନରେ ଏ ଧରଣର ପ୍ରଶ୍ନବାଚୀ ଯୁଗ ଯୁଗ ଧରି ରହିଆସିଛି—ଆନା ଅବା ସେଥିରୁ ବାଦ୍‌ପଡ଼ନ୍ତା କିପରି ? ତେଣୁ ସେ ପୂର୍ବ ପ୍ରଶ୍ନଟିକୁ ପୁଣି ଥରେ ଦୋହରାଇ କହିଲା —"କାହିଁ, ମୋ ପ୍ରଶ୍ନର ଉତ୍ତର ଦେଲନାହିଁ ତ ରାଜା ?"

"ମୋତେ କ୍ଷମାକର ଆନା·· । ନିତାନ୍ତ ବିବ୍ରତ ହେଲାପରି ଉତ୍ତରଦେଲେ ରାଜା ରାୟ —"ଏ ପ୍ରଶ୍ନର ଉତ୍ତର ଦେବା ମୋ ପକ୍ଷରେ ଯେତେ ସହଜ ବୋଲି ତୁମେ ମନେକରୁଛ, ସେତେ ସହଜ ନୁହେଁ ଆନା···!"

ଆନା ଅଧୈର୍ଯ୍ୟ ହୋଇଗଲା ପରି ମୁଖଭଙ୍ଗୀ ଦେଖାଇ କହିଲା—"ମୁଁ କ'ଣ ଏ ପ୍ରଶ୍ନ ପଚାରି ତୁମ ମନରେ ଆଘାତ ଦେଲି କି ରାଜା ?"

ଗୋଟିଏ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ ରାଜାରାୟ—"ସେ ଏକ ଦରଦୀ ମନର ବ୍ୟଥାଭରା କାହାଣୀ ଆନା । ମୋ ମନରେ ଗଭୀର ଆଘାତ ଲାଗିଛି ସତ; କିନ୍ତୁ ତାହା ତୁମଦ୍ୱାରା ନୁହେଁ; ବରଂ କହିପାରେ, ତାହା ହେଉଛି ବିଧାତାକୃତ ଏକ ଦାରୁଣ ଆଘାତ । ଏ ସମ୍ବନ୍ଧରେ କିଛି···"

"ନା, ନା" କିଛି ନଜାଣିଲାପରି କହିଲା ଆନା—"ଛାଡ଼ ସେ କଥା, ଆମେ ଏବେ ପୂର୍ଣ୍ଣପ୍ରାଣରେ ଉପଭୋଗ କରିବା ପକ୍ଷୀଦ୍ୱୀପର ମନୋରମ ପ୍ରାକୃତିକ ସୌନ୍ଦର୍ଯ୍ୟ । କେଡ଼େ ନିର୍ଜନ ଏ ସ୍ଥାନ, ପୁଣି ଜ୍ୟୋତ୍ସ୍ନାଲୋକରେ ଦେଖ ଏ କିପରି ଗୋଟିଏ ଅପ୍‌ସରାଲୋକରେ ପରିଣତ ହୋଇଛି ।" ଏତିକି କହି, ଆନା ପୁଣି ଲକ୍ଷ୍ୟକଲା ରାଜାରାୟର ମନସ୍ଥିତିକୁ ।

ଗୁଲିଲା ଗୁଲିଲା ହୋଇ ଦୁହେଁ ଆସି ଛିଡ଼ାହୋଇଗଲେ ଗୋଟିଏ ଝାଉଁଗଛମୂଳରେ ।

ନୌକାଟି ତାଙ୍କର ସେଇ ଗଛରେ ବନ୍ଧାଯାଇଥିଲା । ହଠାତ୍ କଛୁ ଗୋଟାଏ ମନୋରମ ଦୃଶ୍ୟ ଦେଖିଥିବାର ଛଳନା କରି କରତାଳି ଦେଇ କହିଲା ଆନା—"ରାଜା, ଦେଖିଲ ! ଦେଖିଲ..."

କିନ୍ତୁ ରାଜାରାସ୍ତୁଙ୍କ ମୁଖମଣ୍ଡଳ ପୂର୍ବପରି ଭାରାକ୍ରାନ୍ତ । କେଉଁ ଗଭୀର ସ୍ମୃତି ମନ୍ଥନରେ ସେ ଭସାଇ ଦେଇଛନ୍ତି ନିଜକୁ—ଆନା ତା' ବେଶ୍ ବୁଝିପାରିଲା । ଅବଶ୍ୟ ପରମୁହୂର୍ତ୍ତିରେ ସେ ନିଜର ଅବୁଝା ମନଟାକୁ କୌଣସିମତେ ଆୟତ୍ତ କରି କହିଲେ—"ହଁ ..ତୁମେ କ'ଣ କହୁଥିଲ ଆନା ?"

ଆନା ରାଜାରାସ୍ତୁଙ୍କ ମନର ଭାବକୁ ବେଶ୍ ଭଲଭାବରେ ଠଉରେଇ ପାରିଲା । ସେ ଅବଶ୍ୟ ରାଜାରାସ୍ତୁଙ୍କ ପ୍ରଶ୍ନର କୌଣସି ଉତ୍ତର ଦେଲନାହିଁ । ଦୁହେଁଯାକ ପାଖାପାଖି ହୋଇ ଚାଲିଲେ ଧୀର ମନ୍ଥର ପଦକ୍ଷେପରେ ଆହୁରି କଛୁଦୂର । ଠିକ୍ ବାଲିଚରର ମଝାମଝିରେ ଗୋଟିଏ ବାଲିକୁଦ ପାଖରେ ରାଜାରାସ୍ତୁ ନିଜର ମନୋଭାବକୁ ସଂପୂର୍ଣ୍ଣ ଭାବରେ ଆୟତ୍ତ କରିନେଇ କହିଲେ—"ଆନା, ଆମେ ଏଇଠି କଛୁ ସମୟ ବସିଲେ କପରି ହୁଅନ୍ତା ? ଏ ଜାଗାଟି ବେଶ୍ ମନୋରମ, ନୁହେଁ କି ? ମୁଁ ଭାବୁଛି, ତୁମେ ନିଶ୍ଚିତ ଭାବରେ ମୋ ସହିତ ଏକମତ ହେବ । ସତରେ କ'ଣ ତୁମକୁ ଏ ସ୍ଥାନଟି ଭଲଲାଗୁଛି ?"

"ତୁମକୁ କ'ଣ ଭଲଲାଗୁନ ?" ଓଲଟା ପ୍ରଶ୍ନକଲା ଆନା ।

ଗୋଟିଏ ମ୍ଳାନ ହାସ୍ୟରେଖା ଫୁଟିଉଠିଲା ରାଜାରାସ୍ତୁଙ୍କ ମୁଖମଣ୍ଡଳରେ । ଚନ୍ଦ୍ରମାର ସ୍ୱଚ୍ଛ ଆଲୋକରେ ରାଜାରାସ୍ତୁଙ୍କ ମୁଖର ହାବଭାବ ଫୁଟିଉଠିଲା । ସେ ଧୀରେ କହିଲେ—"ତୁମେ ଖୁସିହେଲେ । ସେଇଥିରେ ହେବ ମୋର ଆନନ୍ଦ ।" ଅନ୍ୟମନସ୍କ ଭାବରେ ପୃଥ୍ୱୀ ନିଜକୁ ହଜାଇଦେଲେ ରାଜାରାସ୍ତୁ ।

ପାଖରେ ବହିଯାଉଥିବା ଗୋଟିଏ ଜଳସ୍ରୋତ ଆଡ଼କୁ ଆନା ରାଜାରାସ୍ତୁଙ୍କ ଦୃଷ୍ଟି ଆକର୍ଷିତ କରାଇ କହିଲା—"ଦେଖ, ଦେଖ ରାଜା, ଜଳର ଗୋଟିଏ ସ୍ୱଚ୍ଛଧାରା କପରି ଦ୍ୱୀପର ଗୋଟିଏ ପ୍ରାନ୍ତରରୁ ଅନ୍ୟ ପ୍ରାନ୍ତକୁ କଳକଳ ନାଦରେ ବହିଚାଲିଛି..." ଏତିକି କହିଦେଇ କଶୋରୀ ମନର କୌତୂହଳ ନେଇ ଧାଇଁଗଲା ଆନା ଜଳପ୍ରବାହ ଆଡ଼କୁ । ସେ ସେଇଠି ବସିପଡ଼ି ହାତରେ ଜଳଧାରାକୁ ସ୍ପର୍ଶକରି କେତେ କ'ଣ କହିଗଲା ।

ହଠାତ୍ ଜଳପ୍ରବାହରେ ଗୋଟିଏ ଛାୟା ପ୍ରତିବିମ୍ବିତ ହୋଇଉଠିଲା । ସେ ଜାଣିପାରିଲା ରାଜାରାସ୍ତୁ ଆସି ତା'ର ପଛରେ ଛିଡ଼ାହୋଇଗଲେଣି । ସେ ପଛକୁ ମୁହଁ ନବୁଲାଇ କହିଲା —"ଆଜି ମନେହେଉଛି ଶିଳ୍ପୀଙ୍କ କଣ୍ଠରୁ କେହି ସଙ୍ଗୀତର ମାଦକତା ଚୋରାଇ ନେଇଛି । ନଇଲେ ଏଇ ମାଦକ ମୁହୂର୍ତ୍ତିରେ ଶିଳ୍ପୀ ନିରବ କପରି ?"

ଆନାର ପାଖାପାଖି ଆସି ବସିପଡ଼ିଲେ ରାଜାରାସ୍ତୁ । ସେ ଦାର୍ଶନିକଙ୍କ ପରି କହିଲେ— "ଅଚ୍ଛା ଆନା, ମନର ବେଦନାକୁ କ'ଣ କୌଣସିମତେ ଭୁଲିହୁଏନ ?"

"ମନର ବ୍ୟଥାକୁ କୌଣସିମତେ ଭୁଲିହୁଏନ ରାଜା ! ଦୁଃଖକୁ ଭୁଲିଗଲେ, ମନ

ମଧ୍ୟରେ ଆଉ କ'ଣ ବା ସଞ୍ଚୟ କରି ରଖାଯାଇପାରିବ ?''

ଦୁହେଁ ନିରବରେ ବସିରହିଲେ କିଛି ସମୟ । କାହାରି ମୁହଁରୁ କିଛିହେଲେ ବାହାରିଲା ନାହିଁ । କେତେ ସମୟ ପରେ ନିରବତା ଭଙ୍ଗକରି କହିଲେ ରାଜାସାହୁ—''ନିଆଁକୁ ଶୃଙ୍ଖଳ ପଦରେ ଯେତେ ଘୋଡ଼ାଇ ରଖିଲେ ବି, ସେ ପୁଣି ସାମାନ୍ୟ ପବନର ଆଘାତରେ ଦାଉ ଦାଉ ହୋଇ ଜଳିଉଠେ ନାହିଁ କି ? ଦୁଃଖକୁ ଭୁଲିଯିବା ପାଇଁ ମଣିଷ ନାନାଭାବରେ ଉପାୟ କରିବସେ ସତ; କିନ୍ତୁ ସେ ପୁଣି ବହୁଭାବରେ ଫୁଟିଉଠେ ।''

''ମୁଁ ତ ସେଇକଥା ତୁମକୁ କହୁଥିଲି ରାଜା । ଦୁଃଖକୁ ଭୁଲିଯିବା ଆଦୌ ଉଚିତ ନୁହେଁ; କିନ୍ତୁ ଦୁଃଖକୁ ସହ୍ୟ କରିବାର ଅମୋଘ ମନ୍ତ୍ର ଶିଖିବାକୁପଡ଼େ । ହେଉ, ଆଜି ଏଇଠିକରେ ଶେଷହେଉ ଆମର ନିର୍ଜନ ଯାତ୍ରା । ଏଥର ଫେରିବା ଚାଲ...''

ଦୁହେଁଯାକ ଛିଡ଼ାହୋଇପଡ଼ିଲେ ଏବଂ ନିରବତା ମଧ୍ୟରେ ଆଗେଇଚାଲିଲେ ନୌକା ପାଖକୁ । ଫେରିଚାଲିଲା ନୌକାଟି ବିପରୀତ ଦିଗରେ । କିଛି ସମୟ ଧରି ନିରବତାରେ ବିତିଗଲା ସମୟ । ଚନ୍ଦ୍ରର ନିର୍ମଳ ଜ୍ୟୋତ୍ସ୍ନାଲୋକରେ ନଈ ମଝିରେ ଚାଲିଛି ନୌକାଟି । କିଛି ସମୟ ପରେ ନିରବତା ଭଙ୍ଗକରି କହିଲେ ରାଜାସାହୁ—''ହିଁ, ତୁମକୁ ମୋ ଗୀତର ଅର୍ଥଟି ବୁଝାଇଦେବାର ଥିଲା ନା । କିନ୍ତୁ ଦେଖିଲ, ମୁଁ କିପରି ତାହା ଭୁଲିଯାଇ ତୁମ ସହିତ ଏଣ୍ଡୁତେଣ୍ଡୁ ଗପିଚାଲିଛି...''

ଆନା ତଳକୁ ମୁହଁ ପୋତି ଭାବନାର କେଉଁ ଅତଳ ଗହ୍ୱରରେ ବୁଡ଼ିରହିଥିଲା । ସେ ରାଜାସାହୁଙ୍କ କଥାର ଉତ୍ତରଦେଇ କହିଲା—''ସବୁ କଥାର ଅର୍ଥ ବୁଝାଇବାର ଆବଶ୍ୟକତା ଅନୁଭୂତ ହୁଏନି ରାଜା । ବେଳେବେଳେ ମନ ମଧ୍ୟରେ ସ୍ୱତଃ ଫୁଟିଉଠେ ଗହନ ଭାବର ଅର୍ଥ । ମନ ଆପଣାଛାଏଁ ସବୁଯାକ ଅର୍ଥ ବୁଝିନିଏ...''

## ( ତେର )

ଆନାର ଆଖିରୁ ଝରଝର ହୋଇ ବହିଚାଲିଛି ଅବାରିତ ଗତିରେ ଶ୍ରାବଣର ଧାରା ପରି ଅଶ୍ରୁର ଝର । ବିଚାର, ବୁଦ୍ଧି ଓ ଧୈର୍ଯ୍ୟର ବନ୍ଧଦେଇ ସେ କୌଣସିମତେ ସେ ଧାରାକୁ ରୋକିପାରୁନି । ଉହାଳୁଉହା ମାଡ଼ିଆସୁଛି କ୍ରନ୍ଦନର ଢେଉ । ମନେପଡ଼ିଲେ ତା'ର ପ୍ରଥମ ଦିନର ଘଟଣା । ଜଣେ ଦୃଢ଼ମନା ଅଶ୍ୱାରୋହୀ ଯୁବକକୁ ସେ ପ୍ରାୟ ବନ୍ଦୀ କରି ଆଣିଥିଲା ତା'ର ମାଲକୋଠିକୁ । ସେଦିନ ଯେଉଁ ବନ୍ଦୀଟିକୁ ସେ ମନର ସମସ୍ତ ଅନୁରାଗ ଦେଇ ଅଭ୍ୟର୍ଥନା ଜଣାଇଥିଲା ଏବଂ ତା' ପଛରେ ଥିଲା ଏକ ନିଃସ୍ୱାର୍ଥପର ଉଦ୍ଦେଶ୍ୟ । ଭଲ-ପାଇବାର ଜାଲ ପାତି ସେ ଧରିବାକୁ ଚାହିଁଥିଲା ଗୋଟିଏ ସୁନ୍ଦର ହରିଣକୁ । ସେ ତାକୁ ନିଜର କରି ରଖିବାକୁ ଚଳେହେଲେ ଭାବିନଥିଲା; ବରଂ ତା' ମନରେ ଥିଲା ଏକ

ସୁଖଦ କାମନା । ଯାହାର ହରିଣଟି ହଜିଯାଇଛି, ତାକୁଇ ଫେରାଇଦେବାକୁ ଭାବିଥିଲା ସରଳ ତଥା ସହଜ ଭାବରେ ।

କିନ୍ତୁ ଆଜି ଏ କ'ଣ ହେବାକୁ ଯାଉଛି ? ସେ ସୁଦୃଢ଼ ଜାଲ ପାତି ହରିଣଟିକୁ ଧରିବାକୁ ଯାଇ, ନିଜେ ସେଇ ଜାଲରେ ବନ୍ଧ ହୋଇଯାଇଛି । ବର୍ତ୍ତମାନ କିଏ କାହା ପାଖରେ ଧରାପଡ଼ିଛି ତା' କିଏ କହିପାରିବ ?

ମୁଣ୍ଡଟିକୁ ଧୀରେ ଧୀରେ ହଲାଇ ମନେ ମନେ ଗୁଣୁଗୁଣୁ ହୋଇ କହିବାକୁ ଲାଗିଲା ଆନା—"ମୁଁ ବୁଝେହେଁନା; ରାଜା ଓ ମୋ ମଧ୍ୟରେ ଆଉ କାହାକୁ ଜଡ଼ିତ କରାଯିବାକୁ । ମୁଁ କିପରି ଭାବରେ ନିଜ ଜାଲରେ ନିଜେ ଧରାପଡ଼ିଗଲି ? ଆଜି କି ଅସହାୟ ଅବସ୍ଥା ମୋର ? ଦୁଇ ହାତ ଯୋଡ଼ି ମୁଁ ପ୍ରାର୍ଥନା କରୁଛି—ରାଜା, ତୁମେ ମୋର ବନ୍ଧନ ଖୋଲିଦିଅ । ତୁମ ବ୍ୟତୀତ ଆଉ କେହି ଏ' ବନ୍ଧନ ଖୋଲିପାରିବନି ରାଜା ।

ନିଜର ଅବୁଝା ମନ ସହିତ ଏହିପରି ଭାବରେ ସାରାରାତି ସଂଘର୍ଷ କରିଚାଲିଥିଲା ଆନା ଏବଂ ଅଶ୍ରୁଜଳରେ ଭିଜାଇ ଦେଇଥିଲା ତା'ର ତୂଳୀତଳ୍ପ । କେତେବେଳେ ଯେ ତା' ଆଖିକୁ ନିଦ ଆସିଯାଇଛି ସେ ଜାଣେନା । ଶୁକ୍ରତାରା ଠିକ୍ ପାହାନ୍ତି ଆକାଶରେ ଦେଖା ଦେବା ବେଳେ ତା'ର ନିଦ ଝୁଉଁକନା ଭାଙ୍ଗିଗଲା ।

ଆନାର ଶୋଇବା ଘର କାନ୍ଥରେ ଟଙ୍ଗାଯାଇଥିଲା ଯୀଶୁଙ୍କର ଫଟୋଟିଏ । ସେ ବିଛଣାରୁ ଉଠିଯାଇ ନତଜାନୁ ହୋଇ ବସିପଡ଼ିଲା ସେଇ ଫଟୋ ପାଖରେ । ଶିଳ୍ପୀର ହାତରେ ଅଙ୍କାହେଲାପରି ଆକାଶରେ ଜଳୁଥିଲା ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର । ଗୋଟିଏ କୁଟୀରର ଅଗଣାରେ ମାତା ମେରୀଙ୍କ କୋଳରେ ଖେଳୁଥିଲେ ଜଗତର ମୁକ୍ତିଦାତା ଯୀଶୁ । ଆକାଶର ସେହି ଉଜ୍ଜ୍ୱଳ ନକ୍ଷତ୍ର ପରି ମାତାଙ୍କ କୋଳରେ ଶୋଭାପାଉଥିଲେ ନବଜାତ ସ୍ନିଗ୍ଧ ଶିଶୁଟି ।

ଆନା ମନଭରି ପ୍ରାର୍ଥନା ଶେଷକରି ଉଠିବା ମାତ୍ରେ ତା' ମନ ସମ୍ପୂର୍ଣ୍ଣ ଶାନ୍ତ ହୋଇ-ଯାଇଥିଲା । ତା'ର ମନକୁ ଏକ ଅପାର ଆନନ୍ଦ ଆଚ୍ଛନ୍ନ କରି ରଖିଥିଲା । ସେ ଅନୁଭବ କଲା—କୌଣସି ଦୈହିକ ବା ମାନସିକ ଯାତନା ତାକୁ କୌଣସିମତେ ପରାଭୂତ କରି-ପାରିବ ନାହିଁ । ବର୍ତ୍ତମାନ ତା'ର ମନ ଉନ୍ମୁକ୍ତ । ଯାହା କିଛି ତା'ର ଆପଣାର ସବୁକିଛି ସେ ଅନ୍ୟକୁ ଦାନକରିଦେବାକୁ ପ୍ରସ୍ତୁତ ।

ପ୍ରଭାତୀ ତାରା ଆକାଶରୁ ଉଭେଇ ଯିବା ମାତ୍ରେ ପୂର୍ବଦିଗ ଅରୁଣିମା ବିସ୍ତାରିଦେଇ ନବରଙ୍ଗରେ ରଞ୍ଜିତ ହୋଇଉଠିଲା । ଆନା ଧୀର ପଦକ୍ଷେପରେ ଉଠିଗଲା ଛାତ ଉପରକୁ । ସେ ଧୀର ଗତିରେ ବୁଲୁବୁଲୁ ଲକ୍ଷ୍ୟ କଲା--ନଈର ଆରପାରିରେ ଡେଣା ମେଲି ଉଡ଼ି-ଯାଉଥିଲେ ଅଙ୍କାବଙ୍କା ହୋଇ ବକପଙ୍କ୍ତି । ଆନାର କ୍ଳାନ୍ତ ଶ୍ରାନ୍ତ ଆଖିକୁ ବେଶ୍ ସୁନ୍ଦର ଦେଖାଗଲା ସେ ଦୃଶ୍ୟ ।

ଆନା ଆସି ଛାତର ଗୋଟିଏ କୋଣରେ ଛିଡ଼ାହୋଇ ରହିଲା । ସେ ଲକ୍ଷ୍ୟକଲା କେହି

ଜଣେ ଧୀର ପଦକ୍ଷେପରେ ଆଗେଇ ଚାଲିଛି—'କିଏ…? ମେଘା…ହଁ ମେଘା ତ !'

କୋଠିର ବଗିଚାରୁ ତାଲୁ ହୋଇ ଲମ୍ବିଯାଇଛି ଯେଉଁ ଅଞ୍ଚଳଟି, ସେଇ ବାଟଦେଇ ଆଗେଇଯାଇ ଗଙ୍ଗଶିଉଳି ଗଛ ପାଖରେ ଛିଡ଼ାହେଲା ମୈତ୍ରେୟୀ । ଝରିପଡ଼ିଥିବା ଫୁଲରୁ ଅଞ୍ଜୁଳାଏ ନେଇ ଫୁଲ ଗୋଟାଇ ଆଗେଇ ଚାଲିଲା ସେ ନଦୀକୂଳ ଆଡ଼କୁ । ନଦୀକୂଳରେ ପୂର୍ବ ଦିଗକୁ ମୁହଁକରି ହାତଯୋଡ଼ି କେତେ ସମୟ ପ୍ରାର୍ଥନା କଲା ମୈତ୍ରେୟୀ । ତା'ପରେ ଅଞ୍ଜଳି କରି ନଦୀଜଳରେ ମେଲିଦେଲା ସେ ଗଙ୍ଗଶିଉଳି ଫୁଲତକ । ପୁଣି ଥରେ ଭକ୍ତି ଦହକାରେ ପ୍ରଣାମ ଜଣାଇ ସେ ଉଠିଆସିଲା ନଈ ଅଠଡ଼ାରୁ ।

ସ୍ଥିତର ଗୋଟିଏ ପ୍ରାନ୍ତରୁ ମଝାମଝିକୁ ଚାଲିଆସିଲା ଆନା । ସ୍ଥିତରେ ତା'ର କୋହ ଭରିଉଠିଲା । ସ୍ୱପ୍ନରେ ରାଜାସାହେବଙ୍କ ବିଦାୟ ଦେଇ ଘରକୁ ଫେରିବା ପରେ ପରେ ଯାହା ଯାହା ଘଟିଥିଲା ଗୋଟି ଗୋଟି ହୋଇ ମନେପଡ଼ିଗଲା ତା'ର ।

ସେ ଘର ଉପରକୁ ଉଠିଆସିବାମାତ୍ରେ ଲକ୍ଷ୍ୟ କଲା ପଛାଘରର ଜଳୁଛି ଆଲୁଅ । ସେ ଆଗେଇଯାଇ ଦେଖିଲା ଯେଖଣ୍ଡିଏ ବହି ଉପରେ ଦୃଷ୍ଟି ନିବଦ୍ଧ କରି ବସିରହିଛି ମୈତ୍ରେୟୀ ।

ଅନେକ ସମୟ ପର୍ଯ୍ୟନ୍ତ ତା' ଆଡ଼କୁ ଏକଲୟରେ ଚାହିଁରହିଲା ଆନା । ନିଜ ଚେହେରା ସହିତ ମୈତ୍ରେୟୀର ଚେହେରାକୁ ସେ ମିଳାଇ ଦେଖିଲା । ତା'ର ଅନ୍ତଃକରଣରୁ ପ୍ରତିଧ୍ୱନିତ ହେଲା—'ମୈତ୍ରେୟୀ ସୁନ୍ଦରୀ…!' ଏଇ ଭାବନା ତା ମନରେ ଉଦିତ ହେବାକ୍ଷଣି ହଠାତ୍ ତା'ର ବକ୍ଷ ଭେଦକରି ଉଠିଲା ଏକ କାଳବୈଶାଖୀର ଝଡ଼ । ପୁଣି ତା' ସହିତ ମନ-ଗଗନରେ ଛାଇଗଲା ମେଘର ଘନଘଟାର ପ୍ରଚଣ୍ଡ ଅଚ୍ଛ୍ୱାସ । ଆନାର ମନେହେଲା—ମୈତ୍ରେୟୀ ତା'ର ଏକମାତ୍ର ପ୍ରତିଦ୍ୱନ୍ଦ୍ୱୀ । ତାକୁ ବାଟରୁ କଣ୍ଟା ଛଣ୍ଡାଇ ଦଳି ଫିଙ୍ଗି ଦେବା ଲାଗି ତା' ମନରେ ପ୍ରଚଣ୍ଡ ପ୍ରତିହିଂସା ଜାଗରିତହୋଇଉଠିଲା ।

ଆଗେଇଗଲା ଆନା ଦ୍ରୁତ ପଦକ୍ଷେପରେ । ମୈତ୍ରେୟୀ ପାଖରେ ପହଞ୍ଚିଯାଇ, ଦୁ'ହାତରେ ତାକୁ ଜୋର୍‌ରେ ହଲାଇ ଦେଇ କହିଲା ଆନା—"ତୋର ଇଚ୍ଛା କ'ଣ ମେଘା ? ଦେଖୁଛି ଦିନକୁ ଦିନ ତୁ ନିତାନ୍ତ ଅମାନିଆ ହୋଇଗଲୁଣି । ତୋର ଏ ଅବାଗିଆ କାମ ଦେଖି ମୁଁ ପାଗଳୀ ହୋଇଗଲଣି । କାହିଁକି ତୁ ଏତେ ସ୍ୱିଡଯାଏଁ ଏଠାରେ ବସିରହିଛୁ ?"

ଭୟ, ଆଶ୍ଚର୍ଯ୍ୟ ତଥା ସନ୍ଦିଗ୍ଧ ମନରେ ଚେୟାର୍‌ରୁ ଠିଆହୋଇପଡ଼ିଲା ମୈତ୍ରେୟୀ । ସେ ବିବ୍ରତ ହେଲା ପରି ଚାହିଁରହିଲା ଆନାର ମୁହଁକୁ । କାନ୍ଦଣିଆ ସ୍ୱରରେ କହିଲା ମୈତ୍ରେୟୀ—"ତୁମେ କେତେବେଳୁ ଘରୁ ଗଲଣି, ଏପର୍ଯ୍ୟନ୍ତ ଫେରିଲେନି । ତେଣୁ ତୁମରି ଅପେକ୍ଷାରେ ଏଇଠି ବସିରହିଛି ଦିଦି !"

ମୈତ୍ରେୟୀର କଥା ଶୁଣି ନିଆଁରେ ଘିଅ ପଡ଼ିବା ପରି ଜଳିଉଠିଲା ଆନା । ସେ ଆଖି ବଡ଼ ବଡ଼ କରି ତଡ଼ାଗଳାରେ କହିଲା—"ମୋ'ରି ଅପେକ୍ଷାରେ ବସିଥିଲୁ ନା ? କିଏ କହିଲା ତୋତେ ମୋ ପଛରେ ଏପରି ଗୁପ୍ତଚର ପରି ଲାଗିବାକୁ ? ଛିଃ…ଛିଃ… ଯେ ତୋତେ ବାଟରୁ ଗୋଟାଇଆଣି ତୋର ପ୍ରାଣ ରକ୍ଷାକରିଛି, ତା'ରି ପଛରେ ତୁ ଲାଗିଛୁ ଗୁପ୍ତ ପଡ଼ାଇ

ଯୁଝିବା ପାଇଁ । ତୋତେ କିଏ କହିଲା ଏଇ ନିଶବ୍ଦ ରାତ୍ରିରେ ମୋ' ଘରକୁ ଆସି ମୋ ଖୋଜ୍‌ଖବର ନେବାପାଇଁ କିଏ ତୋତେ ଏ ଅଧିକାର ଦେଲା ?"

କାଳବୈଶାଖୀର ଦୁରନ୍ତ ଝଡ଼ ବହିଗଲା ମୈତ୍ରେୟୀର ମନରେ । ସେ ଆନାର କଟୂ-କଥାରେ ଆହତ ହୋଇ ଛିନ୍ନଭିନ୍ନ ହୋଇଗଲା । ସେ ଲୋଟିପଡ଼ିଲା ମାଟିରେ ମିଶିଯିବାକୁ ବସିଲା । ଆଖିରୁ ଝରିପଡ଼ିଲା ତା'ର ଧାର ଶ୍ରାବଣର ଝର । ସେ ନିତାନ୍ତ ଅପରାଧିନୀ ପରି ମୁଣ୍ଡଟି ତଳକୁ ନୁଆଁଇ ଧୀରେ ଧୀରେ ଆଗେଇଗଲା ତା' ଶୋଇବା ଘରକୁ । ମୈତ୍ରେୟୀର ଚାଲିପଥକୁ ଆନା ଚାହିଁରହିଲା ବେଦନାପ୍ଲୁତ ଆଖିରେ ।

ଏଇଲେ ସେହି ସମସ୍ତ ଘଟଣା ଗୋଟି ଗୋଟି କରି ମନେପଡ଼ିଗଲା ଆନାର । ସେ ଅନୁତପ୍ତ ହୋଇ ମନେ ମନେ ଭାବିଲା—'କି ନିଷ୍ଠୁର ବ୍ୟବହାର ମୁଁ କଲି ମେଗ୍ ସହିତ ? ସେ ବିଚାରୀ ନିତାନ୍ତ ଅସହାୟ; ତା'ର ସେହି ଅସହାୟତାର ସୁଯୋଗ ନେଇ ତା' ଉପରେ କି ନିର୍ମମ ଅତ୍ୟାଚାର ମୁଁ କଲି ? ଛି···ଛି···ମୁଁ ଏତେ ତଳକୁ ଖସିଯାଇ ପାରିଲି କିପରି ? ତେବେ କ'ଣ ମୋ' ଭିତରେ ଆନା ହେପବାର୍ଣ୍ଣଙ୍କୁ ହତ୍ୟାକରି ଆଉ କେହି ରାକ୍ଷସୀ ଜାଗ୍ରତ ହୋଇଉଠିଥିଲା ଆଜି···।'

ଅନୁତାପାନଳରେ ଦଗ୍ଧ ହେବାକୁ ଲାଗିଲା ଆନା । ତା'ର ମନେହେଲା—ଏଇ ମୁହୂର୍ତ୍ତରେ ଧାଇଁଯାଇ ସେ ମୈତ୍ରେୟୀକୁ ଭିଡ଼ିଧରିବ ତା' ବୁକୁରେ । ଆଖିର ଲୁହଧାରରେ ସେ ଧୋଇଦେବ ତା' ମନର ଦୁଃଖଗ୍ଲାନି । ଅଥବା ତା'ର ଲୋତକଧାରରେ ସେ ସ୍ନାନ କରାଇ ଶୀତଳ କରିଦେବ ମୈତ୍ରେୟୀର ଦୁଃଖ କାତର ମନକୁ । କିନ୍ତୁ ସେଇ ମୁହୂର୍ତ୍ତରେ ମନକୁ ଆୟତ୍ତ କରିନେଇ ସେ ମୈତ୍ରେୟୀ ପାଖକୁ ଗଲାନାହିଁ କିମ୍ବା ଡାକିଦେଇ ତାକୁ ନିଜ ପାଖକୁ ଆଣିବାକୁ ଚେଷ୍ଟା କଲାନାହିଁ ।

( ଏକତ୍ରିଂଶ )

ଅନେକଦିନ ହେଲା ଆନା ତାଙ୍କ ଜମିଦାରୀରେ ବୁଲବୁଲି କରିନଥିଲା । ତା' ବ୍ୟତୀତ ସେ ମାଲକୋଠିର ହିସାବ କିତାବ ମଧ୍ୟ ଅନେକଦିନ ହେଲା ଦେଖିନଥିଲା । ସେ ଫିରସ୍ତା ଭିତରେ ଦକାଲଓଲାଗାନ ବସି ହିସାବକିତାବ ତନଖି କରିବାକୁ ଲାଗିଲା । ଶେଷରେ ଗୁମାସ୍ତା, ନାଏବ ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ଜମିଦାରୀ ବିସ୍ତାର କେତେକ ଆବଶ୍ୟକୀୟ ପରାମର୍ଶ ଦେଲା । ସେ ପ୍ରଜାମାନଙ୍କୁ ପ୍ରତିଶ୍ରୁତି ଦେଇଥିବା ଅନୁସାରେ ଜଳକୃଷି ପରିବର୍ତ୍ତେ ଧାନକୃଷି ସମ୍ବନ୍ଧରେ କର୍ମଚାରୀମାନଙ୍କ ସହ ପରାମର୍ଶ କରି ନାଏବଙ୍କ ମତାମତ ନେଇଥିଲା ।

ଦଙ୍ଗାହଙ୍ଗାମା ଶେଷହେବା ପରେ ପ୍ରଜାମାନଙ୍କ ମନୋଭାବ ଜାଣିବାପରେ ସେ କହିଲା—"ମୁଁ ଯେଉଁ ପ୍ରତିଶ୍ରୁତି ଦେଇଛି ତାକୁ ଯେପରି ଠିକ୍ ଭାବରେ ପାଳନ କରାଯାଏ,

ସେଥିପ୍ରତି ଆପଣମାନେ ଦୃଷ୍ଟି ଦେବେ । ଯଦି କୌଣସି ଚାଷୀ ନିଜ ଇଚ୍ଛାରେ ନୀଳଚାଷ କରିବାକୁ ଚାହେଁ, ସେହି ବାବଦ ଯେତିକି ଲାଭ ହେବ ତହିଁରୁ ଅର୍ଦ୍ଧେକ ଲଭ୍ୟାଂଶ ତାଙ୍କୁ ଦିଆଯିବ ।"

ନାଏବ ମାଲକାର୍ଣ୍ଣୀଙ୍କ କଥା ଶୁଣି କହିଲେ—"ମେମ୍ ସା'ବ ! ଆପଣଙ୍କ ନୂତନ ବ୍ୟବସ୍ଥା ଫଳରେ ପ୍ରଜାମାନେ ଖୁବ୍ ଆନନ୍ଦିତ । ସେମାନେ ନିଜ ନିଜ ମଧ୍ୟରେ ବିଚାର ଆଲୋଚନା କରି ଅଧେ ଜମିରେ ଧାନଚାଷ ଓ ଅଧେଜମିରେ ନୀଳଚାଷ କରିବାକୁ ଘୋଷଣା କରିଛନ୍ତି । କିନ୍ତୁ ମେମ୍ ସାବ ! ଏହି ବ୍ୟବସ୍ଥା ଫଳରେ ଆମ ହାଲଖାତାରେ କିଛି ମାଡ଼ ପଡ଼ିବ ।"

ଆନା ହସିଦେଇ କହିଲା—"ଏତେଦିନ ହେଲା ଆପଣମାନେ ଅନେକ ଲାଭ କରିଛନ୍ତି, ଏଇଲେ ଟିକିଏ କ୍ଷତି ସହିବେ—ସେଥିରେ ଗରିବଗୁରୁବାଙ୍କ ମୁହଁରେ ଟିକିଏ ହସ ଫୁଟିବ ତ ।"

ଜଣେ ଅସୁଲ୍‌କାରୀ ଗୋମାସ୍ତା ମୁହଁ ତଳକୁ କରି ବସିରହିଥିବାର ଦେଖି କହିଲା ଆନା—"ମୁଁ ଜାଣେ, ଆମ ଜମିଦାରୀରେ ଯେଉଁ କର୍ମଚାରୀମାନେ ଅଛନ୍ତି ସେମାନଙ୍କର ଉପରି ଆୟ ପ୍ରାପ୍ୟ ନାହିଁ; କିନ୍ତୁ ଏଇ ନୂତନ ବ୍ୟବସ୍ଥା ଫଳରେ ଆମର ଯାହା କ୍ଷତି ହେଲେ ମଧ୍ୟ ଆପଣଙ୍କ ବେତନରେ କିଛି ଅଞ୍ଚ ଆସିବନାହିଁ । ତା' ବ୍ୟତୀତ ଆପଣମାନେ ପ୍ରକୃତରେ କୁହନ୍ତୁ ତ, ଆମ ଜମିଦାରୀରେ କର୍ମଚାରୀମାନଙ୍କ ବେତନ ଅନ୍ୟାନ୍ୟ ନୀଳକୋଠିର କର୍ମଚାରୀଙ୍କ ତୁଳନାରେ ଯଥେଷ୍ଟ ବେଶୀ ନୁହେଁ କି ? ଆମ ତୁଳନାରେ ଅନ୍ୟମାନେ ଅଧେସୁଦ୍ଧା ଦରମା ଦେଉଛନ୍ତି କି ?"

ଉପସ୍ଥିତ କର୍ମଚାରୀମାନେ ମୁଣ୍ଡ ହଲାଇ ଆନାର କଥାକୁ ସମର୍ଥନ ଜଣାଇଲେ ।

ସିରସ୍ତାର ସମସ୍ତ କାର୍ଯ୍ୟ ଶେଷକରି ଦ୍ୱିପ୍ରହର ବେଳକୁ ଆନା ଘରକୁ ଫେରିଆସିଲା । ତା'ପରେ ସେ ରାଧୁଆପାଧିଆ ଭାତ ଖାଇବା ପର୍ବ ଶେଷକଲାପରେ, ଖଣ୍ଡିଏ ଇଜିଚେୟାର୍ ଟାଣିଆଣି ବସି ବିଶ୍ରାମ ନେଉଥିବାବେଳେ ହଠାତ୍ ତା'ର ମନେପଡ଼ିଗଲା—ସେ ଅନେକ-ଦିନରୁ ତା' ବାପାଙ୍କୁ ଚିଠି ଲେଖିନାହିଁ । ତେଣୁ ସେ ଗୁଣ୍ଡୁଗୁଣ୍ଡୁ ହୋଇ କହିଲା—"ନା, ଆଜି ସେ କାମ ଶେଷ କରିବାକୁ ହେବ ।"

ଆନା ଚିଠିଲେଖି ବସିଲା ତା' ବାପାଙ୍କୁ । କେତେ ରକମର ଖବରରେ ସେ ଭରିଦେଲା ଚିଠିଟି ଯେ ତା'ର ଇୟତ୍ତା ନାହିଁ । ଶେଷରେ ସେ ବାପାଙ୍କୁ ସ୍ମରଣ କରାଇଦେଲା ତା' ମାଆଙ୍କର ସ୍ମରଣୀୟ ମୃତ୍ୟୁ ତାରିଖଟି ।

ଚିଠି ଲେଖି ଲେଖି ଆନା ଉଠିଗଲା ବଗିଚା ଭିତରକୁ । ତା' ମାଆର କବର ଉପରେ ତିଆରି ହୋଇଥିଲା ଶଙ୍ଖ ମର୍ ମର୍ ପଥରରେ ସୁନ୍ଦର ଚଉତରାଟିଏ । ମଝିରେ ମଝିରେ ତା' ବାପା ଆସି ସେହି ଚଉତରା ନିକଟରେ କିଛି ସମୟ ଧରି ନୀରବରେ ଛିଡ଼ା ହୋଇ ରହୁଥିଲେ । ବେଳେବେଳେ ସେ ଆନାକୁ କହୁଥିଲେ—"ଏଇ ଫୁଲଗଛଟି ଅତି ସୁନ୍ଦର ! ସେଇଠା ସେଇଠା ଧଳାଫୁଲଗୁଡ଼ିକରୁ ଭାସିଆସୁଛି ମୃଦୁ ମଧୁର ସୁଗନ୍ଧ । ଆହି ଦେଖିଲୁ, ଏଇ

ଘରର ଶ୍ରେଷ୍ଠ ଶ୍ରେଷ୍ଠ ପଟଗୁଡ଼ିକ କେଡ଼େ ସୁନ୍ଦର ଓ ମସୃଣ । ମୋ' ମା'ଆ ଏଇ ଫୁଲଗଛଟିକୁ ଖୁବ୍ ଭଲପାଉଥିଲା ।"

ଅନା ନେଇ କାମିନୀଗଡରୁ ଶ୍ରେଷ୍ଠ ପଟଟିଏ ତୋଳିଆଣି, ମେ ଝଠି ଭିତରେ ଯତ୍ନରେ ରଖିଦେଲା ସେଇ ପଟଟିକୁ । ମୂର୍ଦ୍ଧିଟି ତା'ର ଝାଉଁଳିପଡ଼ିଲା ଗଭୀର ଦୁଃଖରେ । ସେ ମନେ ମନେ ଭାବିଲା—ବାପା କ'ଣ ବର୍ତ୍ତମାନ ସୁଦ୍ଧା ତାଙ୍କର ଜୀବନର ମୁହୂର୍ତ୍ତରେ ମୋ' ମାଅଙ୍କ ବିଷୟରେ ଚିନ୍ତାକରୁଥିବେ ?'

ଅନା ବଗିଚାରୁ ଫେରିଆସି ପୁଣି ବସିପଡ଼ିଲା ଇଜି ଚେୟାର୍‌ରେ । ଅର୍ଦ୍ଧଶାୟିତ ଅବସ୍ଥାରେ ସେ ଭାବିବାକୁ ଲାଗିଲା ତା'ର ଅତୀତ ଜୀବନର କଥା । ଅତୀତ ସ୍ମୃତିର କେତୋଟି ଚିତ୍ରପଟ ଭାସିଉଠିଲା ତା'ର ମାନସପଟରେ । ସତେ ଅବା ସେ ଗୋଟିଏ ନୌକାର ମାଝି—ସ୍ରୋତର ପ୍ରବାହରେ ଭାସିଯାଉଛି ତା'ର ଜୀବନ ନୌକାଟି । କେତେ ଘୂର୍ଣ୍ଣିବାତ୍ୟା ତଥା ଅବାଞ୍ଛିତ ବର୍ଷାମେଘରୁ ସେ ରକ୍ଷା କରି ପାରିଥିଲା ଏଇ ନୌକାଟିକୁ । କେତେ ନୂଆ ନୂଆ ଘାଟରେ ଲାଗିଛି ଯାଇ ତା'ର ନୌକାଟି । ସୁଖ ଓ ଦୁଃଖର କେତେ ଦେଣାପାଉଣା କେତେ ହସଖୁସି ତଥା ଅଶ୍ରୁର ଝର ମଧ୍ୟଦେଇ ତା'ର ଜୀବନ-ତରୀଟି ଭାସିଯାଉଛି ସଂସାର-ସମୁଦ୍ରର ଭିତରେ ।

ହଠାତ୍ କେଉଁଠି ଆସି ଲାଗିଲା ତା'ର ଜୀବନ ତରୀଟି । ଏ ଘାଟ ସମ୍ବନ୍ଧରେ ସେ ଆଦୌ ଜାଣିନଥିଲା । ତା'ପରେ ସେ କଚ୍ଛ ତଟର ନିକଟ ନୌକାଟିକୁ ସେଇ ଘାଟରେ ବାନ୍ଧିଦେଇ ଉଠିଆସିଲା ଉପରକୁ । କେତେ ଦ୍ରୁମ, କେତେ ଲତା ଆଉ କେତେ ରଙ୍ଗର ଫଳ ଓ ପକ୍ଷୀଙ୍କର କଳକୂଜନ ମଧ୍ୟ ଦେଇ ସେ ପହଞ୍ଚିଗଲା ଗୋଟିଏ ସରୋବରର କୂଳରେ । ଗୋଟିଏ ମନୋରମ ପ୍ରାସାଦ ସେଇ ସରୋବରରୁ ସ୍ନାନଘାଟ ଦଣ୍ଡାୟମାନ ହୋଇଛି ଆକାଶକୁ ଅନାଇଁ ନୀରବ ତଥା ନିଷ୍ପନ୍ଦ ଭାବରେ । ଗୋଟିଏ ବସ୍ତ୍ରଖଣ୍ଡ ସୁଠାମ ସୂଚକ ବାହାରିଆସିଲେ ସେଇ ଜଳମହଲ ଭିତରୁ । କଣ୍ଠରେ ଭରିରହିଛି ତାଙ୍କର ମନମତାଣିଆ ସ୍ୱର । ସେଇ ସ୍ୱର ଲହରୀ ସୃଷ୍ଟି କରିଛି ଅସଂଖ୍ୟ ଜଳତରଙ୍ଗ । ସେହି ଜଳବଳୟରେ ଘେରିହୋଇରହିଛି ମନୋରମ ପ୍ରାସାଦଟି ।

ତା' ନିକଟକୁ ଆଗେଇଆସି ଅପରିଚିତ ମଣିଷଟି କହିଲା, "ତୁମରି ପାଇଁ ମୁଁ ଯୁଗ ଯୁଗ ଧରି ପ୍ରତୀକ୍ଷା କରି ରହିଛି ଏଇ ନିର୍ଜନ ଜଳମହଲ ମଧ୍ୟରେ । କୁହ, ତୁମେ କେଉଁ ସଉଦା ଭରି ଆଣିଛ ତୁମ ଶ୍ରେଷ୍ଠ ନୌକାଟିରେ ?"

ତାଙ୍କ ପ୍ରଶ୍ନ ଶୁଣି ମୁଁ ଉତ୍ତର ଦେଇଥିଲି—"ମୋ ତରୀଟି ଶୂନ୍ୟ । ତୁମକୁ ଦେବାଭଳି ପଦାର୍ଥ ସେଥିରେ କିଛି ହେଲେ ନାହିଁ ।"

ମୋ କଥା ଶୁଣି ହସି ହସି ଲେଉଟିପଡ଼ିଲା ସେ ମଣିଷଟି । ଶେଷରେ ମୁଖମଣ୍ଡଳରେ ଅରୁଣିମା ବିଞ୍ଚିଦେଇ ସେ କହିଲା—"ସବୁଠାରୁ ମୂଲ୍ୟବାନ୍ ବସ୍ତୁ ଛିଡ଼ାହୋଇଛି ଏଇ ମୋ'ର ଆଗରେ ···"

ଅପୂର୍ବ ଆନନ୍ଦର ଏକ ଶିହରଣ ଖେଳିଗଲା ମୋ ସର୍ବାଙ୍ଗରେ ।

ତା'ପରେ ଚମକିଉଠିଲି ଆନା—ଏଁ···ମୁଁ କ'ଣ ଏତେବେଳଯାଏଁ ଭାସିବୁଲୁଥିଲି ଏକ ସ୍ୱପ୍ନିଳ ବନ୍ୟାରେ !

ବେଳ ନଇଁ ନଇଁ ଆସୁଛି । ଚେୟାର୍‌ରୁ ଉଠିପଡ଼ିଲା ଆନା । ସର୍ବାଙ୍ଗରେ ତା'ର ଏକ ମଧୁର କ୍ଳାନ୍ତି ଅନୁଭବ କଲା ସେ । ଆଶ୍ଚର୍ଯ୍ୟ ଚକିତ ହୋଇ ଚାହିଁରହିଲା ଅନନ୍ତ ଆକାଶ ଆଡ଼କୁ । ଅସ୍ତଗାମୀ ସୂର୍ଯ୍ୟର ସ୍ୱର୍ଣ୍ଣୋଜ୍ଜ୍ୱଳ କିରଣ ବୋଳିହୋଇ ଉଡ଼ିଯାଉଛନ୍ତି ଦୁଇଟି ପକ୍ଷୀ ଡେଣା ମେଲାଇ । ସେ ଶୁଣିବାକୁପାଇଲା ପକ୍ଷୀ ଦୁଇଟିର କଳକୂଜନ । ସେଇ ମନମତାଣିଆ କଳରବରେ ଉଦ୍ଭାସିତ ହୋଇଉଠୁଛି ଅନନ୍ତ ଗଗନ । ମୃଦୁମନ୍ଦ ପବନରେ ଦିଗନ୍ତ ବ୍ୟାପୀ ମେଲିଯାଉଛି ସେଇ କଳକୂଜନର ମଧୁର ରାଗିଣୀ ।

ମୁହୂର୍ତ୍ତକ ମଧ୍ୟରେ ମନଟା ତା'ର ହୁ···ହୁ···ହୋଇ ଜଳିଉଠିଲା । ସେ ମନେ ମନେ ଭାବିଲା—'ଏଇ ମୁହୂର୍ତ୍ତରେ ମୁଁ ଧାଇଁଯାଇ ଯଦି ରାଜାସାହେବଙ୍କୁ ନ ଦେଖେ, ତେବେ ଅସହ୍ୟ ବ୍ୟଥାରେ ମୋର ସର୍ବାଙ୍ଗ ଅଙ୍ଗାର ହୋଇପଡ଼ିବ ।'

ଆନା ମୁହୂର୍ତ୍ତକରେ ପାସୋରିଦେଲା ତା'ର ପ୍ରତିଜ୍ଞା । ସେ ମନେ ମନେ ଆର୍ତ୍ତଚିତ୍କାର କରିଉଠିଲା—"ରାଜା ! ରାଜା ! ମୋ ପ୍ରାଣର ରାଜା ! ତୁମକୁ ଛାଡ଼ି ମୁଁ ଗୋଟିଏ ମୁହୂର୍ତ୍ତ ବି ଏକାକିନୀ ରହିପାରିବିନି··· । କେବଳ ତୁମେ ଦୟାକରି ଅନୁମତି ଦିଅ ତୁମରି ପାଖରେ ବସିରହିବାକୁ । ମୁଁ ତୁମରି ମୁହଁକୁ ପିଆସି ଅଖିରେ ଚାହିଁରହି, ମୋ ମନଗହନର ତୃଷ୍ଣା ମେଣ୍ଟାଇବାକୁ ଚାହେଁ । ଆଉ ତା ସହିତ ଶୁଣିବି ତୁମରି ମଧୁମୟ ଗାନ । ଆଉ ମଧ୍ୟ ମୁଁ ଶୁଣିବାକୁ ଚାହେଁ—ତୁମ କଣ୍ଠରୁ ଝରିପଡ଼ୁଥିବା ମଧୁର ରାଗିଣୀରେ ମୋ ନାଆଁଟି କେମିତି ଶୁଭୁଛି ।"

ଆନା ସଙ୍ଗେ ସଙ୍ଗେ ବାହାରିପଡ଼ିଲା ହିରଣ୍ୟଗଡ଼ ଉଦ୍ଦେଶ୍ୟରେ । ଅବଶ୍ୟ ତା'ର ଅଭିସାରର ନିର୍ଦ୍ଦିଷ୍ଟ ଦିନ ଆଜି ନୁହେଁ, ତଥାପି ସେ ପ୍ରିୟ ସମାଗମ ପାଇଁ ଅଧୀର ହୋଇଉଠିଲା ।

ଆନା ଆଉ କାଳବିଳମ୍ବ ନକରି ନୀଳକୋଠିର ଘାଟରୁ ଫିଟାଇଦେଲା ତା' ଶ୍ୱେତ ନାଉକାଟିକୁ । ମନରେ ତା'ର ଅସୁମାରି ପ୍ରଶ୍ନ । ଗୋଟିଏ ପରେ ଗୋଟିଏ ପ୍ରଶ୍ନ ଝଙ୍କି ମାରିବାକୁ ଲାଗିଲା । ହଠାତ୍ ରାଜାସାହେବ ଅପ୍ରତ୍ୟାଶିତ ଭାବରେ ତାକୁ ଦେଖିଲେ କିପରିଭାବରେ ତାକୁ ଅଭ୍ୟର୍ଥନା କରିବେ ? ସେ କ'ଣ ତା'ର ଆକସ୍ମିକ ଉପସ୍ଥିତିରେ ରାଜାସାହେବଙ୍କ ବିସ୍ମିତ କରାଇଦେବନାହିଁ କି ? ହୁଏତ ରାଜାସାହେବ ଆଗେଇଆସି ତା' ଆଡ଼କୁ ବିସ୍ମୟ ବିହ୍ୱଳିତ ନେତ୍ରରେ ଅନାଇ କହିବେ—ମୋ' ଜୀବନରେ ଏପରି ସୁଖଦ ମୁହୂର୍ତ୍ତ ଆଉ କେବେହେଲେ ଆସିବନି ଆନା !

ସ୍ରୋତର ପ୍ରବାହରେ ଆନାର ନୌକାଖଣ୍ଡିକ ଅତ୍ୟନ୍ତ ଦ୍ରୁତଗତିରେ ଯାଇ ଲାଗିଲା ହିରଣ୍ୟଗଡ଼ର ଘାଟରେ । ନୌକାଟିକୁ ବାନ୍ଧିଦେଇ, ଆନା କ୍ଷିପ୍ର ଗତିରେ ଉଠିଗଲା

ପଥରବନ୍ଧା ଘାଟ ଉପରକୁ । କିନ୍ତୁ ଏ କ'ଣ ହେଲା ଆନାର ? ତା'ର ପାଦ ଦୁଇଟି ମନ୍ଥର ହୋଇଯାଉଛି କାହିଁକି ? ସେ ଯେଉଁ ଉତ୍ସାହ ଓ ଉଦ୍ଦୀପନାରେ ମାଡ଼ିଆସିଥିଲା, ତା'ର ସେହି ପାଦ ଦୁଇଟି ଜଳମହଲ ଆଡ଼କୁ ଆଗେଇ ଯାଉନାହିଁ କାହିଁକି ? କେହି ଯେପରି ତା' କୋମଳ ପାଦ ଦୁଇଟିରେ ଗୋଟାଏ ଶକ୍ତ ଲୁହାର ଶିକୁଳି ପିନ୍ଧାଇଦେଇଛି ।

ପୁଣି ଏକ ଦୁର୍ଭାବନା ତା' ମାନସପଟରେ ଉଙ୍କିମାରୁଛି—'ଯଦି ରାଜା ମୋତେ ଦେଖିଲେ ସୁଦ୍ଧା ଉଦାସ ଦୃଷ୍ଟିରେ ମୋ' ଆଡ଼କୁ ଚାହିଁରହେ ? ସେ ଯଦି ଭାବୁଥାଏ ତା' ଜୀବନରେ ମୁଁ ଅତିରିକ୍ତ ଏକ ବୋଝ… !' ଗତ ରାତିରେ ସେ ତା'ର ଏକ ଗମ୍ଭୀର କ୍ଷତର ଆବରଣ ହଟାଇଦେଇଛି । ରାଜା ଯଦି ତା'ର ସେହି ହଜିଯାଇଥିବା ଅତୀତକୁ ସମ୍ବଳ କରି ହା ହା-କାର କରିଉଠେ, ତେବେ କିପରି ଭାବରେ ସେ ତା' ପାଖରେ ନୀରବରେ ଛିଡ଼ା ହୋଇ ରହିବ ?

ଲମ୍ବ ଲମ୍ବ ଆକାଶଛୁଆଁ ଗଛଗୁଡ଼ିକ ଛିଡ଼ାହୋଇଛନ୍ତି ନୀରବରେ ହଲ୍‌ଚଲ୍ ନହୋଇ । ଆନାର ମଧ୍ୟ ସେଇ ଅବସ୍ଥା ହେଲା । ପଛକୁ ଫେରିଆସିବା ଓ ଆଗକୁ ପାଦ ବଢ଼ାଇ ଆଗେଇଯିବା—ଦୁଇଟିଯାକ ପରିସ୍ଥିତି ତା' ନିକଟରେ ସମାନ ହୋଇଉଠିଲା—ନ ଯଯୌ ନ ତସ୍ଥୌ… ।

ତଥାପି ସେ ଆଗେଇଗଲା; ବୋଧହୁଏ କେବଳ ଶୀଘ୍ର ପଛକୁ ଫେରିଆସିବାର ଅଭିଳାଷନେଇ । ହଠାତ୍ ତା'ର ଦୃଷ୍ଟି ନିବଦ୍ଧ ହୋଇଗଲା ଜଳମହଲ ଉପରେ । ଆଜି କାହିଁକି ସେ ଘରେ ଆଲୁଅ ଜଳୁନଥିଲା । ରାତ୍ରିର ଅନ୍ଧାରକୁ ଅଧିକ ଗାଢ଼ତର କରି ଅନ୍ଧକାର ଯୋଡ଼ି ରହିଛି ଜଳମହଲରେ । ସତେ ଅବା ଏ ସ୍ଥାନଟି ତା' ପକ୍ଷରେ ସମ୍ପୂର୍ଣ୍ଣ ଅଜଣା ଅଶୁଣା ଏକ ରହସ୍ୟମୟ ସୌଧ ! ସେ ଆଦୌ ଚିହ୍ନି ପାରିଲା ନାହିଁ—ଏଇ କ'ଣ ରାଜାବାବୁର ସାଧନା ମନ୍ଦିର ! କଳାସକଳାରେ ନିନାଦିତ ଜଳମହଲ !

ଯେତିକି ଧୀର ମନ୍ଥର ଗତିରେ ଆଗେଇଆସିଥିଲା ଆନା, ତା'ଠାରୁ ଦ୍ରୁତତର ଗତିରେ ସେ ଫେରିଚାଲିଲା ହିରଣ୍ୟଗଡ଼ର ଘାଟରେ ବନ୍ଧାହୋଇଥିବା ତା' ନୌକା ଆଡ଼କୁ । ତା' ପରେ ତା' ଡିଙ୍ଗୀଟିକୁ ଆହୁଲାର ତୀବ୍ର ଆଘାତରେ ଅଙ୍କେଇ ବଙ୍କେଇ ଅଗେଇ ଚାଲିଲା ନୀଳକୋଠି ଆଡ଼କୁ ।

ଏବେ କ'ଣ ସେ ତୀବ୍ର ଯନ୍ତ୍ରଣାର କଷାଘାତରେ ଉଦ୍‌ବେଳିତ ? ବିପ୍ରଲବ୍ଧା ବା ଖଣ୍ଡିତା ନାୟିକା ପରି ନିର୍ମମ ଆଘାତରେ ହୃଦୟ ତା'ର ଉନ୍ମଥିତ ହେଉଛି ? ନା, ବରଂ ସେ ଏଇ ମୁହୂର୍ତ୍ତରେ ଏକ ସୁଖଦ ଶାନ୍ତିରେ ଉଚ୍ଛ୍ୱସିତା ! ଯେଉଁ ଦୁଶ୍ଚିନ୍ତାର ଗମ୍ଭୀର ବୋଝ ମୁଣ୍ଡାଇ ସେ ରାଜାବାବୁଙ୍କ ପାଖକୁ ଅଗେଇଯାଇଥିଲା, ସେଇ ଅନିଶ୍ଚିତ ଅବସ୍ଥାରୁ ନିଶ୍ଚିତ ଭାବରେ ମୁକ୍ତି ପାଇଥିବାର ଏକ ତୃପ୍ତିପ୍ରଦ ସୁସ୍ଥତାରେ ମୁହଁଟି ତା'ର ଉଦ୍‌ଭାସିତ ହୋଇଉଠିଛି ।

ଦ୍ରୁତ ପଦକ୍ଷେପରେ ନୀଳକୋଠିର ଉପର ମହଲକୁ ଉଠିଗଲା ଆନା । ଆଶାହତ

ନାୟିକାର ସ୍ୱତନ୍ତ୍ରତା ଅପେକ୍ଷା ବଳସ୍ତ୍ରୀ ନାୟିକାର ସୁଖଦ ତୃପ୍ତି ତା' ମୁଖମଣ୍ଡଳରେ ଉତ୍ତମ ଅଭ୍ର ଫୁଟାଇଦେଇଛି । ଆଖି ଦୁଇଟି ତା'ର ଛଳ ଛଳ ହୋଇଥିଲେହେଁ, ଦେଖିବାରୁ ଝରିପଡ଼ୁଛି ଆଶ୍ୱସ୍ତିର ଝର ।

ଉପରମହଲକୁ ଉଠିଆସିବାବେଳେ ତା' ଦୃଷ୍ଟି ପଡ଼ିଗଲା ଲାଇବ୍ରେରି ଉପରେ । ସୋପାନଶ୍ରେଣୀ ଅତିକ୍ରମ କରି ଆସିବା ଯିବା ସମୟରେ ଏଇ ପରିଖଣ୍ଡିକ ଉପରେ ତାଙ୍କ ଦୃଷ୍ଟି ପଡ଼େ । ଏ କ'ଣ—ଆଜି ସେ ଘରେ ଆଲୁଅ ଲାଗିନାହିଁ କାହିଁକି ? ମୈତ୍ରେୟୀ ଆସିବା ପରଠାରୁ ରୋଜ ସେ ଘରେ ଆଲୁଅ ଜଳୁଥାଏ ରାତ୍ରିର ବିଲମ୍ବିତ ପ୍ରହର ଯାଏଁ ।

ଏଇ ସମସ୍ତ ମଧ୍ୟରେ ଆନା ମୈତ୍ରେୟୀଙ୍କୁ କେବଳ ଯେ ଇଂରାଜୀ କହିବା ଓ ଲେଖିବା ଶିଖାଇଛି ତା' ନୁହେଁ; ସେ ତାକୁ ଇଂରାଜୀ ସାହିତ୍ୟର ଉନ୍ନତ ପୁସ୍ତକଗୁଡ଼ିକୁ ପଢ଼ି ବୁଝିବା ଭଳି ଜ୍ଞାନ ଅର୍ଜନରେ ସାହାଯ୍ୟ କରିଛି । ଏଇ ସମସ୍ତ ମଧ୍ୟରେ ମୈତ୍ରେୟୀ ଅସାଧାରଣ ଭାବରେ ଜ୍ଞାନରାଜ୍ୟରେ ବିଚରଣ କରିବାର ଯୋଗ୍ୟତା ଅର୍ଜନ କରିପାରିଛି । ସକାଳଠାରୁ ରାତି ପର୍ଯ୍ୟନ୍ତ, ଯେତେବେଳେ ସେ ସମୟ ପାଏ, ପାଠାଗାର ଭିତରେ ସେ ହଜାଇଦିଏ ନିଜକୁ । ବିଶେଷତଃ ଦିନ ଆଲୁଅ ଲିଭିଆସିବା ପରେ, ସେ ଆଉ ନିଜକୁ କୌଣସିଠାରେ ଆବଦ୍ଧ କରି ରଖିବାକୁ ଭଲପାଏନା । ରାତ୍ରିର ଘନ ଅନ୍ଧକାର ସହିତେ ତା'ର ବକ୍ଷବନ୍ଧ ମନର ଶତ ଶତ ଗବାକ୍ଷ ଦ୍ୱାର ଖୋଲିଦିଏ । ତାର ସେହି ଉନ୍ମୁକ୍ତ ଦ୍ୱାର ଦେଇ, ତା' ଅନ୍ତର୍ମନକୁ ଉନ୍ମଥିତ କରେ ଯନ୍ତ୍ରଣାକାତର କାମନା ଓ ବାସନାଗୁଡ଼ାକ । ମୈତ୍ରେୟୀ ସେଥିରୁ ମୁକ୍ତ ପାଇବାପାଇଁ ବହି ଖୋଲି ପଢ଼ିବସେ ଦେଶବିଦେଶର କେତେ ଧରଣର ପୁସ୍ତକ । ସେ ନିଜକୁ ସେଇ ପୁସ୍ତକଗଦା ଭିତରେ ହଜାଇଦେଇ, ମନେମନେ ଈଶ୍ୱରଙ୍କଠାରେ ପ୍ରାର୍ଥନା କରେ—'ହେ ମୁକ୍ତିଦାତା ପରମେଶ୍ୱର ! ମୋତେ ସକଳ ସୁଖରୁ ବଞ୍ଚିତ କରିଛ, ତା ମୁଁ ମୁଣ୍ଡପାତି ସହିନେଇଛି; କିନ୍ତୁ ଦୁର୍ବାର କାମନାର କାମୁକ ପ୍ରବୃତ୍ତିଠାରୁ ମୋତେ ରକ୍ଷାକର ।'

ସେଇଥିପାଇଁ ସେ ପ୍ରାୟ ପ୍ରତି ରାତିରେ କିଛି ସମୟ ନିଃସଙ୍ଗ ଜୀବନ ବିତାଇବାକୁ ପଳାଇଯାଏ ଆନା ପାଖରୁ । ଅବଶ୍ୟ ପ୍ରଥମେ ପ୍ରଥମେ ଆନା ତାକୁ ସାହାଯ୍ୟ କରିବା ଲାଗି ତା' ସଙ୍ଗରେ ଆସୁଥିଲା ଲାଇବ୍ରେରୀକୁ । କିନ୍ତୁ ଏଇଲେ ନାନା କାର୍ଯ୍ୟରେ ବ୍ୟସ୍ତଥାଇ ସେ ତା' ସାଥିରେ ଆସିପାରେନାହିଁ । ତେଣୁ ମୈତ୍ରେୟୀ ଠିକ୍ ସନ୍ଧ୍ୟା ପରେ ଧରାବନ୍ଧା ନିୟମ ପରି, ରୋଜ୍ ଆସି ଲାଇବ୍ରେରୀ ଘରେ ଆଲୁଅ ଜଳାଏ ଏବଂ ଗଦା ଗଦା ବହିଥାକ ଭିତରେ ହଜାଇଦିଏ ନିଜକୁ । ଦେଶ ବିଦେଶର କେତେ ଚରିତ ଓ ଚରିତକୁ ସମ୍ମୁଖ କରି ଜ୍ଞାନରାଜ୍ୟରେ ସେ ଅବାଧଗତିରେ ବିଚରଣ କରେ । ସେ ନିଜକୁ ପରିଚିତ କରାଇଦିଏ ପଠିତ ପୁସ୍ତକର ପାତ୍ରପାତ୍ରୀଙ୍କ ସହିତ । ସେଇମାନଙ୍କ ଦୁଃଖ-ସୁଖର ଦୁନିଆ ମଧ୍ୟରେ ସେ ନିଜର ଦୁଃଖ-ସୁଖକୁ ମିଶାଇଦେଇ ନିଜେ ଆଶ୍ୱସ୍ତିର ମୃଦୁ ହାସ୍ୟରେଖାଟିଏ ଖେଳାଇଦିଏ ନିଜର ଗୋଲାପୀ ଓଠ ଫାଙ୍କରେ ।

ଆନା ଯାଉଁ ଯାଉଁ ହଠାତ୍ ପାହାଚ ଉପରେ ଛିଡ଼ାହୋଇଗଲା । ଦୀର୍ଘଦିନ ଧରି ଯାହା ସେ ଦେଖିଆସୁଥିଲା, ହଠାତ୍ ତା'ର ବ୍ୟତିକ୍ରମ ଦେଖି ସେ ଉଦ୍‌ବିଗ୍ନ ହୋଇଗଲା । ମନକୁ ତା'ର ଉନ୍ମଥିତ କଲା ଏକ ଅଜଣା ଯନ୍ତ୍ରଣା ଏବଂ ଅସ୍ୱସ୍ତିକର ଭାବ । ସେ ଧୀରେ ଧୀରେ ଟହ୍ଲାଇ ଉଠିଆସିଲା ତା'ର ଶୋଇବାଘରକୁ । ପ୍ରତିଦିନ ପରି ସେଠାରେ ଆଲୁଅ ଜଳୁଛି । ମୃଦୁମନ୍ଦ ପବନରେ ବେଳେବେଳେ କମ୍ପି ଉଠୁଛି ମହମବତୀର ଶିଖା କାଚର ଘୋଡ଼ଣି ଭିତରେ । କିନ୍ତୁ ସବୁ ଘରଗୁଡ଼ିକରେ କିପରି ଗୋଟିଏ ଥମ୍‌ଥମ୍ ନୀରବତା ଘୋଟି ରହିଛି । ଆନା ମହମବତୀର ସ୍ନିଗ୍ଧ ଆଲୋକରେ ଦେଖିଲା—ଗତ ସନ୍ଧ୍ୟାରେ ସଜାଯାଇଥିବା ଫୁଲଦାନିର ଫୁଲପେଣ୍ଡାଟି ଆଜି ମଧ୍ୟ ସେଇପରି ରହିଛି ସେଠାରେ ମ୍ଳାନମୁଖର ହାସ୍ୟଛଟା ପରି । ପ୍ରତିଦିନର ନିୟମ ପରି କେହି ନୂଆ ଫୁଲ୍‌ତୋଡ଼ା ଆଣି ସଜାଇଦେଇନ ଫୁଲଦାନିଟିକୁ ।

ସୁକବାଣୀ କେବଳ ଘରେ ବତି ଜଳାଇଦିଏ । ତା' ବ୍ୟତୀତ ଘର ସଜାହେବାର ଦାୟିତ୍ୱ ଥିଲା ମୈତ୍ରେୟୀର । ସେ ଆସିବା ଦିନରୁ ସେତକ କାମ ହାତକୁ ନେଇଥିଲା ।

ଆନା ଦେଖିଲା—ବତିଟି ସତେ ଯେମିତି ଅନିଚ୍ଛାର ସହିତ ଜଳି ଜଳି ଯାଉଛି । ପ୍ରତିଦିନ ଘର ସାଜସଜ୍ଜା ଦେଖି ସେ ଯେପରି ପ୍ରଫୁଲ୍ଲିତ ହୋଇଉଠେ, ଆଜି ତା'ର ଅଭାବରେ ସେ କିପରି ଗୋଟିଏ ଅନିଚ୍ଛା ସତ୍ତ୍ୱେ ଜଳିବାରେ ଲାଗିଛି । ଘରଟିକୁ ଅନାଇଦେଇ ତା'ର ମନେହେଲା—ସତେଅବା ଘରଟି ଅସମାପ୍ତ ସାଜସଜ୍ଜାରେ ଆଜି ମ୍ରିୟମାଣ ହୋଇଉଠିଛି । ଆନା ବେଶ୍ ବୁଝିପାରିଲା, ଯା' ହାତ ଲାଗିଲେ ଘରଟି ସବୁଦିନେ ହସିଉଠେ ତା'ର ଅନୁପସ୍ଥିତିରେ ଆଜି ସେହି ସ୍ଥାନଟି ନିତାନ୍ତ ଶ୍ରୀହୀନ ହୋଇଉଠିଛି ।

ଆନା ନିଜ ଅଙ୍ଗକୁ ଅନାଇ ଦେଖିଲା ଅନେକ ସମୟ ପର୍ଯ୍ୟନ୍ତ । ସେ ନିଜକୁ ଦେଖି ଆଦୌ ଚିହ୍ନି ପାରିଲା ନାହିଁ । ସତରେ ସେ କ'ଣ ଓ୍ୱେଡ଼େନ୍ ହେପବାର୍ନ୍‌ର କନ୍ୟା ଆନା ହେପବାର୍ନ ! ସେଇ କ'ଣ ପ୍ରଜାମାନଙ୍କୁ ନୀଳଚାଷ ପରିବର୍ତ୍ତେ ଧାନଚାଷ କରିବାକୁ ଆଦେଶ ଦେଇଛି ? ଆଉ ସେହି କ'ଣ ଗୋଟିଏ ହେମାଳିଆ ରାତିରେ ଗୋଟିଏ ଅପରିଚିତା ଓ ଅସହାୟା ରମଣୀକୁ ଆଣି ଘରଭିତରେ ଅତି ଆପଣାର କରି ରଖିଥିଲା ନିଜ ହୃଦୟର ଅତି ପାଖାପାଖି କରି !

ସେ ପୁଣି ଥରେ ଚାହିଁଲା ନିଜକୁ । ନା, ବୋଧହୁଏ ପୂର୍ବର ସେ ଆନା ମରିଯାଇଛି । ତା'ର ସ୍ଥାନରେ ଜାଗିଉଠିଛି ଗୋଟିଏ ନିର୍ମମ ଆଉ ନିଷ୍ଠୁର ମୂର୍ତ୍ତିର ଆଉ ଗୋଟିଏ ଝିଅ । ସେ ବଞ୍ଚିରହିବାକୁ ଚାହେଁ ଆନା ହେପବାର୍ନ ହୋଇ—ଯେପରି ଭାବରେ ସେ ଆଜି ପର୍ଯ୍ୟନ୍ତ ବଞ୍ଚିଆସିଛି । ନିଜ ଉପରେ କ୍ରୋଧ ଜାତ ହେଲା ଆନାର । ସେଇ ମର୍ମନ୍ତୁଦ ଯନ୍ତ୍ରଣାରେ ସେ ନିଜେ ଧିକ୍କୃତ ହୋଇଉଠିଲା ।

"ମେଘା ! ମେଘା ! ମେଘା !" ଆନାର ଡାକରେ ଘରଟି କମ୍ପିଉଠିଲା । କେଉଁଠି କାହିଁ ମୈତ୍ରେୟୀର ସୋର୍ ଶବ୍ଦ ନାହିଁ ଏଡ଼େବଡ଼ କୋଠିଟାରେ । ସେ ଉଠିଗଲା ଛାତ ଉପରକୁ । ଗୋଲ୍‌ଗମ୍ବୁଜ ପାଖରେ ଥିବା ଗୋଟିଏ ନିତାନ୍ତ ପରିତ୍ୟକ୍ତ କୋଠରି । ତା'ର

ଭିତରେ ଜଳୁଥିଲା ଗୋଟିଏ ସ୍ନେହ ମାଟିର ପ୍ରଦୀପ । ସେଇ ପ୍ରଦୀପଟିର ମିଞ୍ଜି ମିଞ୍ଜି ଆଲୁଅରେ ଘର ଭିତରଟି କ୍ଷୀଣ ଆଲୋକରେ ଆଲୋକିତ ହୋଇଥିଲା । ଘରର ଦରଜାଟି ଅଧା ଆଉଜା ହୋଇ ରହିଥିଲା । ସେଇ ଘରେ ତଳେ ବସିଥିଲା ମୈତ୍ରେୟୀ । ସେ ଦୁଇହାତ ଯୋଡ଼ି ନିମୀଳିତ ଚକ୍ଷୁରେ ପ୍ରାର୍ଥନା କରୁଥିଲା ।

କେତେ ସମୟ ପର୍ଯ୍ୟନ୍ତ ତାକୁ ଅପଲକ ଦୃଷ୍ଟିରେ ଚାହିଁରହିଲା ଆନା । ପବିତ୍ର ସେ ମୁଖଛବି ଦେଖି ମନେ ମନେ ବିମୋହିତ ହୋଇଗଲା ଆନା । ମୈତ୍ରେୟୀ ଅସ୍ଫୁଟ ସ୍ୱରରେ ମନ୍ତ୍ର ଉଚ୍ଚାରଣ କରୁଥିଲା । ସମ୍ଭବତଃ ସେ ପରମାତ୍ମାଙ୍କ ନିକଟରେ କାକୁତି ମିନତିଭରା ନିବେଦନ କରୁଥିଲା । କରୁଣ ସ୍ୱରରେ ମୃଦୁମନ୍ଦ ଧ୍ୱନି ଶୁଣାଯାଉଥିଲା ତା' ଓଠ ଫାଙ୍କରୁ । ବୋଧହୁଏ, ଈଶ୍ୱର ସମସ୍ତ ପ୍ରବଳ ସ୍ରୋତ ଏହିପରି କରୁଣରସରେ ପରିପୂର୍ଣ୍ଣ ।

କେତେ ସମୟ ପରେ ଆଖି ଖୋଲି ଚାହିଁଲା ମୈତ୍ରେୟୀ । ଏହି ଅବସରରେ ଦ୍ୱାରଟି ଖୋଲି ତା' ଆଗରେ ଛିଡ଼ାହୋଇଗଲା ଆନା । ଆନାକୁ ସାମନାରେ ଦେଖି ଛିଡ଼ା ହୋଇ-ପଡ଼ିଲା ମୈତ୍ରେୟୀ । ବର୍ତ୍ତମାନ ସୁଦ୍ଧା ନିଷ୍ପ୍ରଭ ଆଖି ଯୋଡ଼ିକ ତା'ର ଭୟରେ କମ୍ପି ଉଠିଲା —ଯେତେ ଅବା ବିଚାରପତି ଆଗରେ ତା' ଅପରାଧର ଶାସ୍ତି ଶୁଣିବା ଲାଗି ଛିଡ଼ାହୋଇଛି ଅପରାଧିନୀ ପରି ତଳକୁ ମୁହଁ ପୋତି ।

ଉଭୟେ ନୀରବ । ପ୍ରଥମେ ନୀରବତା ଭଙ୍ଗକରି କହିଲା ଆନା—"ତୁ ଏତେ ଶାସ୍ତି ଦେଇ ପାରୁ ମେରୀ···।"

ମୈତ୍ରେୟୀର ଆଖି ଯୋଡ଼ିକ ଛଳଛଳ ହୋଇଉଠିଲା । ଆନା ଆଉ କିଛି ନକହି, ତାର ଦୁଇବାହୁ ମେଲାଇ ନିବିଡ଼ ଭାବରେ ଆଲିଙ୍ଗନ କରିନେଲା ମୈତ୍ରେୟୀକୁ । ଆନାର ଆଖିରୁ ଝରିପଡ଼ିଲା ଅମାନିଆ ଅଶ୍ରୁର ଝର ।

ଅସ୍ଫୁଟ କରୁଣ ସ୍ୱରରେ କହିଲା ଆନା—"କେତେ ଦୁଃଖ ତୋତେ ନଦେଲି ମେରୀ ! କାଲି ରାତିଠାରୁ ତୋ' ମୁହଁରୁ ମୁଁ କଥାଗୁଡ଼ିକ ମଧ୍ୟ ଛଡ଼ାଇନେଇଛି । ଏଡ଼େ ନିଷ୍ଠୁର ମୁଁ···ଏତେ ସ୍ୱାର୍ଥପର ! ମୋତେ ବିଶ୍ୱାସ କର ମୋ' ସୁନାଭଉଣୀଟି—ତୋତେ ଯେତେ କଷ୍ଟ ଦେଇଛି, ତା'ଠାରୁ ଶତଗୁଣ ଅଧିକ ବେଦନା ମୁଁ ସହିଲିଣି ମୋ' ନିଷ୍ଠୁରତା ପାଇଁ । ମୋତେ ଯଥୋଚିତ ଶାସ୍ତି ଦେ ମେରୀ, ମୋତେ ଶାସ୍ତି ଦେ । ତୁ ମୋତେ ଭୁଲି ଯୁଅନା ମେରୀ । କାଲି ରାତିରେ ମୋ' ଚିରସ୍ମାର ତୁ ଭୁଲିଯା'···।"

ଆନାର ବୁକୁରେ ନିବିଡ଼ ଭାବରେ ମୁହଁ ଗୁଞ୍ଜି କହିଁକହିଁ ହୋଇ କାନ୍ଦୁଥିଲା ମୈତ୍ରେୟୀ ଗୋଟିଏ ଅବୋଧ ଶିଶୁପରି । କେତେ ସମୟ ପରେ ସେଇ କାନ୍ଦୁଣିଆ ସ୍ୱରରେ ସେ ଧିରେଇ ହୋଇ ପରି କହିଲା—"ତୁମକୁ ଭୁଲି ଯିବିଲେ ମୋର ଆଉ ଯାହା ଭରସା କିଏ ଦିଦୀ ? ତୁମ ସ୍ନେହ ହରାଇ ବସିଲେ ମୁଁ ସମ୍ପୂର୍ଣ୍ଣ ନିଃସ୍ୱ ହୋଇଯିବି । ମୁଁ ଚାହେଁନା ସୁଖ, ଚାହେଁନା ବିଭବ, କେବଳ ତୁମରି ଟିକିଏ ସ୍ନେହର କାଙ୍ଗାଳିନୀ ମୁଁ···।"

ହୃଦୟର ଜାତି ନାହିଁ, ବର୍ଣ୍ଣ ନାହିଁ, ଦେଶ ବା ବିଦେଶ ନାହିଁ, ସବୁ ହୃଦୟ ଏକ ।

ସେଇଥିପାଇଁ ଦୁଇଟି ହୃଦୟ ପୁଣି ଏକାକାର ହୋଇଗଲା ସମସ୍ତ ବିରୋଧ ସତ୍ତ୍ୱେ । ପ୍ରବଳ ଝଡ଼ ଓ ଧାରବର୍ଷଣ ପରେ ଆକାଶ ନିର୍ମଳ ହୋଇଗଲା କଳାମେଘର ପ୍ରଚଣ୍ଡ ଦାଉରୁ । ଦୁଇଟି ହୃଦୟ ରୂପକ ଆକାଶ ସମ୍ପୂର୍ଣ୍ଣ ମେଘମୁକ୍ତ ତଥା ସ୍ନିଗ୍ଧ ଉଜ୍ଜ୍ୱଳ ନକ୍ଷତ୍ର ଖଚିତ ହୋଇଉଠିଲା ।

କିଛିକ୍ଷଣ ନୀରବତାରେ ବିତିଗଲା । ତା'ପରେ ମୈତ୍ରେୟୀର ପିଠି ଆଉଁସି ଦେଇ କହିଲା ଆନା—"ମୁଁ ତୋତେ ଆଉଥରେ ବାହା କରାଇବି…।"

"ହିନ୍ଦୁ କନ୍ୟାର ଦ୍ୱିତୀୟଥର ବିବାହ ହୁଏନା ଦିଦି ।" ଭଙ୍ଗା ଭଙ୍ଗା ଦରଦଭରା ସ୍ୱରରେ କହିଲା ମୈତ୍ରେୟୀ ।

"କିନ୍ତୁ ହିନ୍ଦୁ ପୁରୁଷମାନେ ତ ଦ୍ୱିତୀୟଥର ବିବାହ କରୁଛନ୍ତି ?"

"ତା'ହେଲେ ବି ସ୍ତ୍ରୀମାନଙ୍କ ପକ୍ଷରେ ସେ ନିୟମ ଲାଗୁହୁଏନି ଦିଦି ।" କହିଲା ତଳକୁ ମୁହଁ ପୋତି ମୈତ୍ରେୟୀ ।

"ପ୍ରକୃତରେ ମେଘା, ତୁମର ଏ ସମାଜ ଆଦୌ ସୁସ୍ଥ ବୁଦ୍ଧିମତ୍ତାର ପରିଚୟ ନୁହେଁ…।"

"ଆମେ ପିଲାଟି ଦିନରୁ ଏଇ ସମାଜରେ ବଢ଼ିଆସିଛୁ । ତେଣୁ ବିବେକ ବୁଦ୍ଧିର ସହିତ ବିଚାର କରି ସମାଧାନ କରିବା ଆମ ପକ୍ଷରେ ସମ୍ଭବ ନୁହେଁ ।"

ଆନା ହଠାତ୍ ଗମ୍ଭୀର ହୋଇଉଠିଲା । ସେ କେତେ ସମୟ ପର୍ଯ୍ୟନ୍ତ ଗୁମ୍‌ସୁମ୍ ହୋଇ ବସିବା ପରେ କହିଲା—"ଅଚ୍ଛା ମେଘା, ଯଦି କୌଣସି ଦିନ ତୋ' ହଜିଲା ମଣିଷଟି ତୋ' ପାଖରେ ଧରା ଦେଇ କହେ—ଆସ, ମୁଁ ତୁମର ସମସ୍ତ ମିଥ୍ୟା ଅପବାଦ ଧୋଇଦେଇ ତୁମକୁ ଆପଣାର କରିନେବି—ତା'ହେଲେ କ'ଣ ତୁ ଫେରିଯିବୁନି ତା' ପାଖକୁ ?"

ମୈତ୍ରେୟୀ ତା'ର ଅମାନିଆ ଆଖିଯୋଡ଼ିକୁ ଆଉ କୌଣସିମତେ ଆୟତ୍ତ କରିପାରିଲା ନାହିଁ । ବର୍ଷାମୁଖର ରାତ୍ରିରେ କଳାବାଦଲରୁ ବାରିଧାରା ଝରଝର ହୋଇ ଝରିପଡ଼ିବା ପରି, ତା' ଆଖିରୁ ଝରିପଡ଼ିଲା ଅଶ୍ରୁର ବନ୍ୟା । ସେ ମୁଣ୍ଡଟିକୁ ଈଷତ୍ କମ୍ପିତ କରି କହିଲା—"ନା…ଦିଦି, ତା' ସତ୍ତ୍ୱେ ବି ନୁହେଁ…"

ବିସ୍ମୟରେ ବିସ୍ଫାରିତ ହୋଇଗଲା ଆଖିଯୋଡ଼ିକ ବିଦେଶିନୀ ଆନାର । ସେ ନିତାନ୍ତ ସ୍ତବ୍ଧ ହୋଇ ପୁଣି ପଚାରିଲା—"ଏ' କ'ଣ କହୁଛୁ ତୁ ମେଘା ? ତୋ' ଉତ୍ତରରେ ମୁଁ ଅବାକ୍ ହୋଇଯାଉଛି ।"

ଚକ୍ଷୁରୁ ଝରୁଥିବା ଲୋତକ ଧାରାରେ ନିଜ କଣ୍ଠରୁ ବାହାରୁଥିବା ଅସ୍ଫୁଟ ବାଣୀକୁ ଭିଜାଇ କହିଲା ମୈତ୍ରେୟୀ—"ମୋ'ପାଇଁ ସେ ମଣିଷଟି ସମାଜ ଆଖିରେ ମ୍ଳେଚ୍ଛ ହୋଇ-ରହିବେ ଏହା ମୁଁ ସହ୍ୟ କରିପାରିବି ନାହିଁ ।"

"ଆଶ୍ଚର୍ଯ୍ୟ…। କେଉଁ ଧାତୁରେ ତୁମମାନଙ୍କ ହୃଦୟ ଓ ମନ ଗଢ଼ାଯାଇଛି, ତା' ତୁମେ ହିଁ ଜାଣ । ବିଚିତ୍ର ତୁମମାନଙ୍କ ପ୍ରେମର ପରିଭାଷା ଆଉ ଭଲପାଇବାର ପଦ୍ଧତି ।"

ମୈତ୍ରେୟୀ ନିତାନ୍ତ ସହଜ ତଥା ସରଳ ଭାବରେ ପଚାରିଲା—"ତୁମେ କ'ଣ ରାଗିଲ କି ଦଦା ?"

"ରାଗି ନାହିଁ ମେଘ ! ତୁମ ସମାଜର ଅଦ୍ଭୁତ ପାଗଳାମି ଦେଖି ମୋ ମନରେ ଦୁଃଖ ଜାତ ହେଉଛି ।"—କହିଲା କିଛିବୁଦ୍ଧ ଅନ୍ତରରେ ଆନା—"ସମାଜର ଏପରି ଏକ ଅସୁସ୍ଥ ପରମ୍ପରା ଆଗରେ ମଣିଷ ତା'ର ସୁସ୍ଥ ବୁଦ୍ଧି ମତ୍ତାକୁ ବଳି ଦେଇ ଚାଲିଛି ।"

ମୈତ୍ରେୟୀ ପରିସ୍ଥିତିକୁ ନିତାନ୍ତ ଲଘୁ କରିଦେବା ଉଦ୍ଦେଶ୍ୟରେ କହିଲା—"ଯାହା କଳ୍ପନାର ବିଷୟ ସେଥିରେ ଏତେ ମୁଣ୍ଡ ଖର୍ଚ୍ଚ କରିବାର କ'ଣ ପ୍ରୟୋଜନ ଅଛି ଦଦା ?"

ମୈତ୍ରେୟୀର କଥାକୁ କାନକୁ ନନେଇ କହିଲା ଆନା—"ତୁ କହୁନା ମୋତେ ଖୁବ୍ ଭଲ ପାଉ ବୋଲି ?"

ହସି ହସି କହିଲା ମୈତ୍ରେୟୀ—"ମୋ' କଥାରେ କ'ଣ ସନ୍ଦେହ ହେଉଛି ? ମୁଁ ତୁମକୁ କେତେ ଭଲ ପାଏଁ ଏବଂ ତୁମ ଉପରେ କିପରି ନିର୍ଭର କରି ଚଳେ, ତା' ତୁମକୁ କିପରି ବୁଝାଇବି କୁହ...।"

ମୈତ୍ରେୟୀ ତା' ନିଜ ହାତ ଦୁଇଟିରେ ଆନାର ମୁହଁକୁ ଉପରକୁ ଉଠାଇ ତା' ଆଖିରେ ଆଖି ମିଳାଇ କହିଲା—"କୁହ, କି ପରୀକ୍ଷା ଦେବି କୁହ ?"

ଆନା ମୈତ୍ରେୟୀର ହାତ ଦୁଇଟିକୁ ନିଜ ହାତରେ ଧରିନେଇ କହିଲା—"ତୁ ଏଇଲେ କହିଲୁ ନା ମୋ' ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଛୁ ବୋଲି..."

"ହଁ...ମୋ'ର ସମସ୍ତ ଭାବନା ଓ ଭାର ସବୁ କିଛି ତୁମରି ଦଦା । ମୋର ନିଜର ବୋଲି କିଛି ହେଲେ ନାହିଁ ।"

"ତା'ହେଲେ..." କହିଲା ଆନା—"ଆଜିଠୁଁ କିଛି ନଭାବି ମୋ' ଉପରେ ଭରସା କରି ରହିବୁ । ଠିକ୍ କହୁଛୁ ତ ?"

ହସି ହସି ଲେଟିପଡ଼ିଲା ମୈତ୍ରେୟୀ ଆନାର ବୁକୁ ଉପରେ । ସେ ନିବିଡ଼ ଭାବରେ ତାକୁ ଦୁଇ ହାତରେ ଜାବୁଡ଼ି ଧରି କହିଲା—"ଶୁଣ, ଆଜିଠାରୁ ମୋର ସମସ୍ତ ଆଶା, ଭରସା ଓ ବିଶ୍ୱାସ ଏଇ ସୁବର୍ଣ୍ଣରେଖାର ସ୍ରୋତରେ ଭସାଇ ମୋ' ଦଦା ଉପରେ ଭରସା କରି ବିଶ୍ୱାସ-ଭରା ଚକ୍ଷୁରେ କେବଳ ତାଙ୍କରି ଆଡ଼କୁ ଅନାଇ ରହିବି । ଏହା ମୁଁ ପ୍ରତିଜ୍ଞା କରି କହୁଛି । କ'ଣ ଏଥର ହେଲା ତ ?"

ବିମୂର୍ଧ ନୟନରେ ମୈତ୍ରେୟୀକୁ ଚାହିଁ ଓଠ ଫାଙ୍କରେ ଟିକିଏ ହସ ବିଞ୍ଚିଦେଲା ଆନା ।

( ତିରିଶ )

ରାଜାବାବୁ ସେଦିନ ପ୍ରଫୁଲ୍ଲ ମନରେ ନୂଆବୋହୂଙ୍କ ପାଖରେ ବସି ଖୁସିଗପ କରୁ କରୁ କହିଲେ—"ଆଇ ତ ଇଂରେଜମାନଙ୍କ ନାଆଁ ଶୁଣିଲେ ହାଡ଼େ ହାଡ଼େ ଜଳିଉଠୁଛନ୍ତି; ମୁଁ ଯଦି ଏଇ ନୀଳକୋଠିର ମେମ୍‌ଟିକୁ ବିବାହ କରେ ତେବେ ଘଟଣାଟି କିଅଣ ହେବ କହିଲ ?"

"ତା'ହେଲେ ସେ ତୁମ ମୁହଁ ଚାହିଁବେ ନାହିଁ ।" କହିଲେ ରାଣୀ କଳାବତୀ ।

"ତୁମେ କ'ଣ ସେଇଆ କରିବ ନାହିଁ ?" ପଚାରିଲେ କୌତୁହଳୀ ହୋଇ ରାଜାବାବୁ ।

"ପତିଗତପ୍ରାଣୀ ନାରୀର ଅନ୍ୟ ଉପାୟ କ'ଣ ?"

"ଅଚ୍ଛା ନୂଆବୋହୂ, ମୋ ମୁଣ୍ଡ ଛୁଇଁ କହିଲ, ମୋତେ କଥା ନକହି ତୁମେ କେତେ ଦିନ ରହିପାରିବ ?"

"ଦିନଟିଏ ସୁଦ୍ଧା ରହିପାରିବନାହିଁ···"ହସି ହସି କହିଲେ କଳାବତୀ । କିଛି ସମୟ ନୀରବ ରହିବା ପରେ ପୁଣି କହିଲେ ହିରଣ୍ୟଗଡ଼ର ରାଣୀ—"କିନ୍ତୁ ବୋହୂଟିକୁ ମୁଁ ନିଜ ଆଖିରେ ନ ଦେଖିଲେ ଗଡ଼ର ଏଦୁଆରିବନ୍ଧ ଡିଆଇଁଦେବନାହିଁ କୁମାର ! ସେ ମେମ୍ ସାହେବ ହେଉ ପଛକେ ରାସ୍ତବଂଶର ବୋହୂଟିଏ ମୁଁ ନିଜେ ପସନ୍ଦ କରି ଆଣିବି ।"

"ହେଲା, ଏବେ ତୁମେ ପସନ୍ଦ କରିଆଣିବ; କିନ୍ତୁ ସମାଜ ଯଦି ଆମକୁ ଏକଘରିଆ କରି ରଖେ, ତା'ହେଲେ···?"

"କାହା ଜିଭରେ ହାଡ଼ ଅଛି ? ତୁମ ବାଇଙ୍କୁ ପୁଣି ସମାଜରୁ ବାହାର କରି ରଖିବେ ? ଏଭଳି ସାହସ କାହାର ?"—କହିଲେ କଳାବତୀ ।

ଦୁହିଁଙ୍କ ହସଖୁସିର ଆସରଟା ଜମିଆସିବା ମାତ୍ରେ ପୁଣି ଗୋଟିଏ ପ୍ରଶ୍ନ କଲେ ରାଜାବାବୁ —"ଅଚ୍ଛା ନୂଆବୋହୂ ! କହିଲ ପଣ୍ଡିତ ରାମକାନ୍ତ ଭଟ୍ଟାଚାର୍ଯ୍ୟଙ୍କ ଝିଅ ଯଦି ଫେରିଆସେ ତା' ହେଲେ ତୁମେ କ'ଣ କରିବ କହିଲ ?"

ରାଜାବାବୁଙ୍କ କଥା ଶୁଣି ଗମ୍ଭୀର ହୋଇଉଠିଲେ ରାଣୀ କଳାବତୀ । ସେ କେତେ କଣ ଆକାଶପାତାଳ ଭାବିଗଲେ । ଆଖିଯୋଡ଼ିକ ତାଙ୍କର ଛଳଛଳ ହୋଇଗଲା । ସେ ଗୋଟିଏ ଦୀର୍ଘନିଃଶ୍ୱାସ ତ୍ୟାଗ କରି କହିଲେ—"କୁମାର, ସେ ବିଚାରୀର ଦୋଷ କ'ଣ ? ତୁମେ ତା'ର ରକ୍ଷାକର୍ତ୍ତା ହୋଇ ଯେତେବେଳେ ତାକୁ ଆତତାୟୀର ହାତରୁ ରକ୍ଷା କରିପାରିଲ ନାହିଁ, ତା'ର ଆଉ ଉପାୟ କ'ଣ ଥିଲା ? ତନ୍ତ୍ରାସୁରର ପାଲରେ ପଡ଼ି ଆଜି ତା'ର ଦଶା କ'ଣ ହୋଇଥିବ କିଏ ଜାଣେ ? ମୁଁ କିନ୍ତୁ ସତ କହୁଛି, ମୋର ଯଦି ହୁକୁମ ଚଳନ୍ତା, ମୁଁ ତାକୁ ଯେକୌଣସିମତେ ଘରକୁ ସମ୍ମାନର ସହିତ ଫେରାଆଣନ୍ତି ।"

କଳାବତୀଙ୍କ ଆଖିରୁ ଟପ୍ ଟପ୍ ହୋଇ ଲୁହ ଦି'ଟୋପା ଝରିପଡ଼ିଲା । ସେ ପଣତ-

କାନରେ ଆଖିରୁ ଲୁହ ପୋଛି ଦେଇ କହିଲେ—"ଆଜି ହଠାତ୍ କାହିଁକି ତା' କଥା ତୁମର ମନେପଡ଼ିଗଲା କୁମାର ? ସେ ସତରେ କ'ଣ ଆଉ ଜୀବନରେ ଅଛି ?"

ରାଜାବାହୁଙ୍କ ମନରେ ପଣ୍ଡିତ ରାମକାନ୍ତଙ୍କ ଝିଅ ମୈତ୍ରେୟୀର ଅପୂର୍ବ ରୂପଲାବଣ୍ୟ ସେଦିନ ପକ୍ଷୀଦ୍ୱୀପରେ ଝଲସିଉଠିଥିଲା । ତା' ପରଠାରୁ ତାଙ୍କ ମନମନ୍ଦିରର ଗମ୍ଭୀର କୋଣରେ ବେଳେବେଳେ ତା'ର ନିଷ୍କଳଙ୍କ ଚନ୍ଦ୍ରମୁଖଟି ଉଙ୍କି ମାରୁଥିଲା । ନୂଆବୋହୂଙ୍କ କଥାର ଉତ୍ତର ଦେଇ କହିଲେ ରାଜାବାହୁ—"ମୁଁ ଜାଣେନା ନୂଆବୋଉ, କାହିଁକି କେଜାଣି, ଏଇ କେତେଦିନ ହେଲା ସେ ଝିଅଟି ବିଷୟରେ ମୁଁ ବେଳେବେଳେ ଭାବୁଛି ।"

"ଏପରି ଦୁଶ୍ଚିନ୍ତା କରନାହିଁ କୁମାର ।" କହିଲେ ବାଳାସବତୀ—"ଯାହା ଆଦୌ ସମ୍ଭବ ନୁହେଁ, ସେ ବିଷୟରେ ଭାବି ଲାଭ କ'ଣ ?"

"ନା, ନୂଆବୋଉ, ମୋର ଅନ୍ତରାତ୍ମା କହୁଛି, ପଣ୍ଡିତ ମହାଶୟଙ୍କ ଝିଅ ନିଶ୍ଚୟ ଜୀବନରେ ଅଛି ଏବଂ ହୁଏତ ସେ କେଉଁଠି ରହି ଆମ ଗତିବିଧି ଲକ୍ଷ୍ୟ କରୁଛି । ହୁଏତ ସୁବିଧା ଓ ସୁଯୋଗ ପାଇଲେ ସେ ଆତ୍ମପ୍ରକାଶ କରିପାରେ..."

କିଛି ସମୟ ନୀରବ ରହିବା ପରେ ପୁଣି କହିଲେ ରାଜାବାହୁ—"ଆମ ବଂଶର ଗୌରବ ହିରାମୁଦିଟି ନିଶ୍ଚୟ ଆମ ଘରକୁ ଫେରିଆସିବ ନୂଆବୋଉ ।" ସଙ୍ଗେ ସଙ୍ଗେ କଥାର ଧାରା ବଦଳାଇ ଦେବାକୁ ଯାଇ କହିଲେ ରାଜାବାହୁ—"ହଁ ନୂଆବୋଉ, ମୁଁ ଏଇ କେତେଦିନ ହେଲା, ସେ ମେମ୍‌ସାହେବ ବିଷୟରେ ଯେଉଁ ଦୁଶ୍ଚିନ୍ତାରେ ପଡ଼ିଥିଲି ଆଜି ତୁମ ମୁହଁରୁ ଏଇ ଉତ୍ତର ପଦକ ଶୁଣି ମୋର ସେ ଦୁଶ୍ଚିନ୍ତା କଟିଗଲା ।"

ଆଦରର ଶ୍ରେଷ୍ଠ କୁମାର ରାଜାବାହୁଙ୍କ ମୁହଁକୁ ଚାହିଁରହିଲେ ଏକ ଲୟରେ ବାଳାସବତୀ । ମୁଖମଣ୍ଡଳରେ ତାଙ୍କର ପରିହାସର କ୍ଷୀଣ ରେଖାଟିଏ ଫୁଟିଉଠିଲା । ଭାଉଜଙ୍କ ମୁହଁରୁ ସମର୍ଥନ ପାଇବା ପରେ କହିଲେ ରାଜାବାହୁ—"ଯା'ହେଉ, ମୋ' ଚିନ୍ତା ଦୂର ହୋଇଗଲା । ମେମ୍‌ସାହେବ ଯଦି ରାଜି ହୋଇଯାଏ, ତେବେ ନୂଆବୋହୂ ତାକୁ ଗଡ଼କୁ ଆଣିବା ପାଇଁ ନିଶ୍ଚୟ କିଛି ଗୋଟିଏ ବ୍ୟବସ୍ଥା କରିବେ ।"

"ହେଉ, ହେଲା ଯେ, ତୁମ ମେମ୍ ସାହେବ୍ କେବଳ ଗୀତ ଗାଉଣା ଜାଣିଛି ନା ଆଉ କିଛି ଘରକାମ ବିଷୟରେ ତା'ର ଧାରଣା ଅଛି !"

"ସେ ସବୁକାମ ଜାଣିଛି । ତା' ବ୍ୟତୀତ, ସେ ବନ୍ଧୁକ ଚଳାଇ ତୁମକୁ ଓ ତୁମ ଗଡ଼କୁ ଡକାୟତଙ୍କ କବଳରୁ ରକ୍ଷାକରିପାରିବ ।"

"ବାଃ, ତା'ହେଲେ ତ ରକ୍ଷା ପାଇଗଲି" କହିଲେ ବାଳାସବତୀ—"ଯା' ହେଉ, ବୁଢ଼ୀ ବୟସରେ ମୋର ସୁରକ୍ଷା ପାଇଁ ତୁମ ଭାଇଙ୍କୁ ଆଉ ଚିନ୍ତା କରିବାକୁ ପଡ଼ିବ ନାହିଁ ଦେଖୁଛି...।"

ବାଳାସବତୀଙ୍କ କଥା ଶୁଣି ଠୋ' ଠୋ' ହୋଇ ହସିଉଠିଲେ ରାଜାବାହୁ ଏବଂ ହିରଣ୍ୟ-ଗଡ଼ର ରାଣୀଙ୍କ ମୁଖମଣ୍ଡଳରେ ଖେଳିଗଲା ବିମଳ ହାସ୍ୟଛଟା ।

( ତେଇଶ )

ଫଲ୍‌ମନ୍ ସାହେବ୍‌ର ହତ୍ୟା ମାମଲାର ବିଚାର ଚାଲିଥିଲା ଅଦାଲତ୍‌ରେ । ଅନେକ ସାକ୍ଷୀ ପ୍ରମାଣ ଯୋଗାଡ଼ କରି ଦିନରାତି ଧାଁ'ଦଉଡ଼ ଚଳାଇଥିଲେ ହିରଣ୍ୟଗଡ଼ର ରାଜା ଦୁର୍ଲ୍ଲଭ ସିଂହ । କିନ୍ତୁ କୌଣସିମତେ ସେ ଆଶାର ସଙ୍କେତ ପାଇପାରିଲେନାହିଁ । ସେଦିନ ଅଦାଲତ୍‌ରୁ ଫେରି ଗମ୍ଭୀର ହୋଇ ବସିରହିଲେ ରାଜା ଦୁର୍ଲ୍ଲଭସିଂହ । ତାଙ୍କ ମୁହଁକୁ ଚାହିଁଦେଇ ସମସ୍ତେ ବୁଝିପାରିଲେ ଯେ, କିଛି ଗୋଟାଏ ଅଘଟଣ ଘଟିଯାଇଛି । ଶେଷକୁ ଜଣାଗଲା ନୀଳକୋଠି ମାଲିକ ଇଂରେଜମାନେ ଏକଜୁଟ୍ ହୋଇ ଫଲ୍‌ମନ୍‌ର ହତ୍ୟା ପାଇଁ ରାଜା ଦୁର୍ଲ୍ଲଭ ସିଂହ ଦାୟୀ ବୋଲି ଚକ୍ରାନ୍ତରେ ସଫଳ ହେବାକୁ ବସିଛନ୍ତି । ତେଣେ ବିଚାରକ ହାକିମ ମଧ୍ୟ ଇଂରେଜ । ତେଣୁ ସେ ମାମଲାରୁ ଉଦ୍ଧାର ପାଇବା ଏକପ୍ରକାର ଅସମ୍ଭବ ବୋଲି ଦୁର୍ଲ୍ଲଭସିଂହଙ୍କ ଧାରଣା ହୋଇଛି ।

ଦୁର୍ଲ୍ଲଭ ସିଂହ ଆସି ପହଞ୍ଚିଲେ ଅନ୍ଦର୍‌ମହଲରେ । ସେଠାରେ ରାଣୀ ବିଳାସବତୀ ଆଦରର ଜ୍ୟେଷ୍ଠକୁମାରଙ୍କ ସହିତ ହସଖୁସିରେ ମାତି ପାନ ଭାଙ୍ଗିବାରେ ଲାଗିଥିଲେ । ହଠାତ୍ ତାଙ୍କର ଗମ୍ଭୀର ମୁହଁଟିକୁ ଅନାଇଦେଇ ସଅଳସଅଳ ଦୁହେଁ ଚମକିପଡ଼ିଲେ । ସେ ଦୁହିଁଙ୍କ ପ୍ରଶ୍ନସୂଚକ ମୁଖମୁଦ୍ରା ଲକ୍ଷ୍ୟକରି କହିଲେ ଦୁର୍ଲ୍ଲଭ ସିଂହ—"ମାମଲା ବିଚାରର ଯାହା ଚକ୍ରାନ୍ତ ମୁଁ ଲକ୍ଷ୍ୟ କଲି; ସେଥିରୁ ରକ୍ଷାପାଇବା ଏକାନ୍ତ ଅସମ୍ଭବ ।"

ବିଳାସବତୀ ସ୍ୱାମୀଙ୍କ କଥା ଶୁଣି ଏକାବେଳକେ ମର୍ମାହତ ହୋଇପଡ଼ିଲେ । ସେ ବିସ୍ମୟବିସ୍ଫାରିତ ଚକ୍ଷୁରେ ସ୍ୱାମୀଙ୍କ ମୁହଁକୁ ଏକଲୟରେ ଚାହିଁରହିଲେ । ରାଜାସିଂହ କହିଲେ—"ମୋକଦ୍ଦମାର ରାୟ ବାହାରିବାକୁ ତ ସମୟ ଅଛି, ତେଣୁ ଏବେଠାରୁ ଏତେ ବ୍ୟସ୍ତ କାହିଁକି ?"

"ହଁ, ଫଳାଫଳ ଜାଣିବାକୁ କିଛି ସମୟ ହାତରେ ଅଛି; କିନ୍ତୁ ବିଚାରକଙ୍କର ଯାହା ମତିଗତି ସେଥିରୁ ଫଳାଫଳ ଅନୁମାନ କରିବା ଖୁବ୍ ସହଜ ।"

ବିଳାସବତୀ ବ୍ୟସ୍ତହୋଇ ପଚାରିଲେ—"ତା'ହେଲେ ଫଳାଫଳ ହେବ କ'ଣ ?"

"ମୁଁ ଯାହା ଖବର ନେଇଛି, ସେଥିରୁ ଜାଣିଲି ଯେ, ବିଚାରକ ମହୋଦୟ ପ୍ରାୟ ପ୍ରତିଦିନ ନୀଳକୋଠି ସାହେବଙ୍କ ଘରେ ଭୋଜି ଖାଇବାରେ ବ୍ୟସ୍ତ ଅଛନ୍ତି···" ତା'ପରେ ଦୁର୍ଲ୍ଲଭ ସିଂହ ଟିକିଏ ରହିଯାଇ କହିଲେ—"ଆଉ ମଧ୍ୟ ଶୁଣିଲି ଯେ, ବିଚାରକ ମହୋଦୟ ହେସଟାନ ପରିବାରର ଘନିଷ୍ଠ ବନ୍ଧୁ ।"

ବାପଙ୍କ ମୁହଁରୁ ହେସଟାନ ପରିବାର କଥା ଶୁଣିବା ମାତ୍ରେ ରାଜାସିଂହଙ୍କ ମୁହଁଟି ଝାଉଁଳିପଡ଼ିଲା । ଆଜିକୁ କିଛିଦିନହେଲା ସେ ଆନା ହେସଟାନ ସହିତ ମିଳାମିଶା କରୁଛି । ସେ ଦୁହେଁ ପରସ୍ପରର ଅତ୍ୟନ୍ତ ଘନିଷ୍ଠ ହୋଇଉଠିଛନ୍ତି । ସେ ଯେତିକି ଆନାର ହୃଦୟ ତଥା

ମନୋଭାବ ସମ୍ବନ୍ଧରେ ଜାଣିଛନ୍ତି, ସେଥିରୁ ଶଠତା ବା କ୍ରୂରତାର ଆଭାସ ଥିଲା ପରି ଆଦୌ ଅନୁଭବ କରିପାରିନାହାନ୍ତି । ମିସ୍ ଆନାର ପ୍ରଥମ ଦିନର ସାଦର ନିମନ୍ତ୍ରଣ ଆଜି ମଧ୍ୟ ତାଙ୍କ ସ୍ମୃତିପଟଳରେ ପ୍ରତିଧ୍ୱନିତ ହେଉଛି । କିନ୍ତୁ ଭାଇଙ୍କ ସହିତ ଆନାର ବ୍ୟବହାର ଓ ତା'ର ଅଭିଯୋଗ ସମ୍ବନ୍ଧରେ ସେ ଦିନେହେଲେ ଆଲୋଚନା କରିନଥିଲେ ।

ପୂର୍ବପରି ଚିନ୍ତାଗ୍ରସ୍ତ ମନରେ ଦୁର୍ଲ୍ଲଭ ରାୟ ଘରୁ ବାହାରିଯିବାରୁ, ବ୍ୟସ୍ତହୋଇପଡ଼ିଲେ ଲୀଳାବତୀ । ସେ ରାଜାରାୟଙ୍କ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁ କାନ୍ଦ କାନ୍ଦ ହୋଇ କହିଲେ —"ଆମର କ'ଣ ହେବ କୁମାର ?"

ରାଜାରାୟ ଦୃଢ଼ତାର ସହିତ କହିଲେ—"ମୁଁ ଥାଉଁ ଥାଉଁ ଭାଇଙ୍କ ପାଦରେ କଣ୍ଟାଟିଏ ବି ପଶିବ ନାହିଁ ନୂଆବୋଉ !"

ଲୀଳାବତୀ ଭଲ ଭାବରେ ଜାଣନ୍ତି ରାଜାରାୟ ତାଙ୍କ ଭାଇଙ୍କୁ ପ୍ରାଣ ଦେଇ ଶ୍ରଦ୍ଧା କରନ୍ତି । କିନ୍ତୁ ସାଂସାରିକ ତଥା ବୈଷୟିକ ବ୍ୟାପାରରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଏଇ ଦେବରଟି ଦ୍ୱାରା ସ୍ୱାମୀଙ୍କର କି ସୁବିଧା ହୋଇପାରିବ, ସେ ଆଦୌ ଧାରଣା କରିପାରିଲେନାହିଁ । ହଠାତ୍ ତାଙ୍କ ଆଖି ଆଗରେ ନାଚିଉଠିଲା—ହେପବାର୍ନ ନୀଳକୋଠିର ସେହି ମେମ୍-ସାହେବଟିର କାଳ୍ପନିକ ରୂପ । ସେ ରାଜାରାୟଙ୍କ ହାତ ଧରିପକାଇ ହସହସ ହୋଇ କହିଲେ—"ଅଚ୍ଛା କୁମାର, ତୁମର ସେଇ ମେମ୍‌ସାହେବଟିକୁ ଧରାଧରିକଲେ ସେ କିଛି ସାହାଯ୍ୟ କରନ୍ତା ନାହିଁ ?"

ରାଜାରାୟ ମନେ ମନେ ଚିନ୍ତିତ ହୋଇଉଠିଲେ । ସେ ଜୀବନରେ କୌଣସିଦିନ କାହାରି ଆଗରେ କିଛି ହେଲେ ପ୍ରାର୍ଥନା କରିନାହାନ୍ତି । କିନ୍ତୁ ରାଣୀ ଲୀଳାବତୀଙ୍କ ଆଖିର କରୁଣଭାବ ଲକ୍ଷ୍ୟ କରି, ସେ ମନେମନେ ବିବ୍ରତହୋଇପଡ଼ିଲେ । ଭାଉଜଙ୍କର ଅସହାୟ ତଥା କରୁଣ ମୁଖଭଙ୍ଗୀ ଦେଖି ସେ ମୁହଁ ଖୋଲି ଅତ୍ୟନ୍ତ ଅନିଚ୍ଛା ସତ୍ତ୍ୱେ କହିଲେ—"ହେଉ ! ଦେଖେ, କ'ଣ କରିଯାଇପାରୁଛି···।"

( ଚଉତିରିଶ )

ସେଦିନ ରାତିରେ ହେପବାର୍ନଙ୍କ ବଗିଚାକୁ ରାଜାରାୟଙ୍କର ଯିବାର କଥା । ଚନ୍ଦ୍ରର ଧବଳ ଜ୍ୟୋତ୍ସ୍ନାରେ ଚାଲିଲେ କୁମାର ବାହାଦୁର ପ୍ରିୟତମାର ପଥ ଅନୁସରି । ନୌକା ଯାଇ ପହଞ୍ଚିଲା ନୀଳକୋଠିର ଗୁପ୍ତ ସୁଡ଼ଙ୍ଗ ଦ୍ୱାରରେ । ଆନା ମହମବତିଟିଏ ଜଳାଇ ଆଗେ ଆଗେ ତାଙ୍କୁ ପଥ କଢ଼ାଇନେଲା । ଅଡ଼ିଡ଼ା ଖାବଡ଼ା ପଥ ପାରହୋଇ ରହସ୍ୟମୟୀ ଆନା ରାଜାରାୟଙ୍କୁ ନେଇଗଲା ନୀଳକୋଠିର ଉଦ୍ୟାନ ଭିତରକୁ । ଦୁଇଟି ଘୋଡ଼ା ଛଡ଼ାହୋଇଥିଲେ ଉଦ୍ୟାନ ମଧ୍ୟରେ । ଆନା ଇଙ୍ଗିତ କଲା ରାଜାରାୟଙ୍କୁ ଗୋଟିଏ ଘୋଡ଼ାରେ ବସିଯିବାଲାଗି ।

ଦୁହେଁ ଅଜ ଆଉ ଟିକଏହେଲେ ବିଶ୍ରାମ ନେଲେ ନାହିଁ । ଉଦ୍ୟାନର ଆକାଶଛୁଆଁ ଗଛ-ଗୁଡ଼ିକର ଘନଛାୟା ଭିତର ଦେଇ ଦୁହେଁଯାକ ଅଶ୍ୱର ଗୁଲେଲେ ଖୋଲା ପ୍ରଶସ୍ତ ପ୍ରାନ୍ତର ଆଡ଼କୁ । ବହୁଦୂର ପର୍ଯ୍ୟନ୍ତ ଲମ୍ବିଯାଇଥିଲା ସେ ଖୋଲା ତୃଣ ପ୍ରାନ୍ତରଟି । ବାମ ପାଖରେ ପ୍ରବାହିତ ସୁବର୍ଣ୍ଣରେଖାର ସ୍ୱର୍ଣ୍ଣିମ ବାଲିଚର । ଚନ୍ଦ୍ରର ଶୁଭ୍ରଆଲୋକରେ ଚକ୍ ଚକ୍ ହୋଇ ଆଖି ଆଗରେ ସୃଷ୍ଟିକଲା ସୁଅ ଲହରୀର ଢେଉଟିଏ ଯେଉଁ ବାଲିଚରଟି । ନଦୀର ଅପରପାଶରେ, ବହୁ ଦୂରରେ ଦେଖାଯାଉଛି ଝାପ୍‌ସିଆ ହୋଇ ନୀଳିମ ଗିରିମାଳା ।

ଦୁହେଁଯାକ ନୀରବରେ ଚାଲିଛନ୍ତି କେହି କାହାରି ଆଡ଼କୁ ନଚାହିଁ, କେବଳ ସମ୍ମୁଖକୁ ଦୃଷ୍ଟିରଖି । କେତେ ସମୟ ପରେ ଆନା ଟିକିଏ ମୁହଁ ବଙ୍କେଇ ଡାକିଲା—"ରାଜା···!"

କେବଳ ଏଇ ଡାକଟି ନିର୍ଜନ ପ୍ରାନ୍ତରରେ ପ୍ରତିଧ୍ୱନିତ ହେବାକୁ ଲାଗିଲା ଦୁଇଟି ପ୍ରଣୟୀ ପ୍ରଣୟିନୀଙ୍କ ହୃଦୟ କନ୍ଦରକୁ ଗୁଞ୍ଜରିତ କରି । ରାଜାରାୟ ମନେ ମନେ ଭାବିଲେ—କେଉଁ ସୁଦୂର ପ୍ରାନ୍ତରରୁ ଏଇ ଡାକଟି ଭାସିଆସୁଛି । କେତେ ଯୁଗର, କେଉଁ ଅପୌରୁଷେୟ ପ୍ରଣୟର ସୁଖଦୁଃଖର ସ୍ପର୍ଶ ମିଶି ରହିଛି ଏହା ମଧ୍ୟରେ ।

"କ'ଣ ନୀରବ ଯେ ? କିଛି କଥା କହୁନାହାଁ କାହିଁକି ?" ଘୋଡ଼ାର ଲଗାମ ଟାଣି ଧରି ପୁଚ୍ଛିଲା ଆନା ରାଜାରାୟଙ୍କ ଆଡ଼କୁ ।

"ଆଜି କେବଳ ତୁମରି କଥା ଶୁଣିବବୋଲି ଆସିଛୁ ଆନା—କିଛି କହିବାପାଇଁ ନୁହେଁ···।"

"ମୋର ମନେହେଉଛି ଆଜିର ଏଇ ରାତିଟି ସୃଷ୍ଟି ହୋଇଛି କେବଳ ଆମରିପାଇଁ ରାଜା···"

"ଏଇ ବିସ୍ତୀର୍ଣ୍ଣ ପ୍ରାନ୍ତର, ଆଉ ଅବାରିତ ଗତିରେ ପଥ ଅତିକ୍ରମ···"

"ଆଉ ଆମେ କାହିଁକି ଏଠାରେ ମିଳିତ ହୋଇଥାଇଁ ରାଜା···!"

କୌଣସି ପ୍ରକାର ଦ୍ୱିଧା ବା ସଙ୍କୋଚ ନକରି କହିଲେ ରାଜାରାୟ—"ପରସ୍ପରର ହୃଦୟକୁ କେବଳ ନିବିଡ଼ ଭାବରେ ପାଇବାପାଇଁ ।"

ପୁଣିଥରେ ଘୋଡ଼ାର ଲଗାମଟି ଟାଣିଧରି କହିଲା ଆନା—"ଚାଲ, ଆମେ ଏଇଠାରୁ ଫେରିଯିବା । ଆମେ ଅନେକ ଦୂର ପଥ ଅତିକ୍ରମ କରି ଆସିଲେଣି ।"

"କୁଆଡ଼େ ଫେରିଯିବ ଆନା ? ଆଚ୍ଛା, ଆଉ ଯଦି ଆମେ ନଫେରନ୍ତେ···?" କହିଲେ ରାଜାରାୟ ।

"ଫେରିବାକୁ ହେବ ରାଜା । ପ୍ରକୃତ ସ୍ୱଭାବରେ ଯାଯାବର ହେଲେ ବି, ନାରୀର ପ୍ରକୃତି ତା' ନୁହେଁ···" କହିଲା ଆନା ।

"ଏଇ ଶିହରଣଭରା ରାତିଟିକୁ ଆମେ କିପରି ଭାବରେ ଅଧିକରୁ ଅଧିକ ଉପଭୋଗ କରି-ପାରିବା ଆନା ?" ରାଜାରାୟଙ୍କ କଣ୍ଠସ୍ୱରରେ ମିନତିଭରା ଅନୁରୋଧ ।

"ତୁମେ ଆଜି ଉଦ୍ୟାନରେ ବସି ଭାୟୋଲିନ୍ ବଜାଇବ, ଆଉ ମୁଁ ତାହା ଉପଭୋଗ କରିବି ପ୍ରାଣଭରି ।"

ଦୁହେଁ ଅଶ୍ୱର ଗତି ବଦଳାଇ ଫେରିଆସିଲେ ଉଦ୍ୟାନବାଟିକାକୁ । ଆନା ଘୋଡ଼ାରୁ

ଓହ୍ଲାଇପଡ଼ି ରାଜାବାପୁଙ୍କୁ ବାଟ କଢ଼ାଇ ଆଣିଲା ପ୍ରଶସ୍ତ ଉଦ୍ୟାନର ଗୋଟିଏ ପ୍ରାନ୍ତରକୁ । ଏହା ପୂର୍ବରୁ ରାଜାବାପୁ ଏ' ଅଞ୍ଚଳକୁ କେବେହେଲେ ଆସିନଥିଲେ—ଯଦିଓ ସେ ଅନେକ ଥର ଏହା ପୂର୍ବରୁ ଆସିଥିଲେ ହାପବାର୍ନଙ୍କ ଉଦ୍ୟାନକୁ ଆନାର ନିମନ୍ତ୍ରଣ ରକ୍ଷାକରି ।

ସେଇ ପ୍ରାନ୍ତରେ ଥିଲା ଗୋଟିଏ ପଥୁରିଆ ଉଚ୍ଚ ସ୍ଥାନ । ସେଇଠି ନିର୍ମିତ ହୋଇଥିଲା ଏକ ଅପ୍ରାକୃତିକ ଉନ୍ମୁକ୍ତ ଗୁମ୍ଫା । ଗୁହା ଭିତରେ ସୁନ୍ଦର ଝୋଟା ସୁନ୍ଦମାର ଛେଉ ଖେଳୁଥିଲା । ଗୁହା ଭିତରେ ଥିଲା ଗୋଟିଏ ଅପୂର୍ବ ନାରୀମୂର୍ତ୍ତି । ରାଜାବାପୁ ତନ୍ମୟ ହୋଇ ଚାହିଁରହିଲେ ମୂର୍ତ୍ତିଟି ଆଡ଼କୁ । ଗୋଟିଏ ଉଦ୍‌ଭ୍ରାନ୍ତ ପୁରୁଷ ହାତରେ ବୀଣାଟିଏ ଧରି ଛିଡ଼ାହୋଇଛି ବିଚିତ୍ର ଭଙ୍ଗୀରେ । ଗୋଟିଏ ପାଦ ତା'ର ଆଗକୁ ମାଡ଼ିଯିବାର ଭଙ୍ଗୀରେ ନିର୍ମିତ, ଅନ୍ୟ ପାଦଟି ଈଷତ୍ ବକ୍ର ହୋଇଛି ଏବଂ ପଛକୁ ଫେରି ଚାହିଁବାର ଢଙ୍ଗରେ ଫୁଟିଉଠିଛି ତା'ର ମୁଖମଣ୍ଡଳରେ ହା'-ହୁତାଶର ଛାପ ।

ରାଜାବାପୁ ତନ୍ମୟତାର ସହିତ ଲକ୍ଷ୍ୟକଲେ ପୁରୁଷ ମୂର୍ତ୍ତିର ପଛପଟେ ନତଜାନୁ ହୋଇ, ମୁହଁ ଉପରକୁ ଉଠାଇ ଚାହିଁରହିଛି ନାରୀମୂର୍ତ୍ତିଟି । ମୁଖମଣ୍ଡଳରେ ତା'ର କରୁଣ ଚାହାଣି । ହାତ ଦୁଇଟି ଆଗକୁ ପ୍ରସାରିତ ହୋଇଯାଇଛି ବିହ୍ୱଳତାର ମାଦକତାରେ ।

ରାଜାବାପୁଙ୍କ ତନ୍ମୟତା ଭଙ୍ଗକରି ଆନା କହିଲା—"ଆଜି ଏଇଠି ବସି ଭାୟୋଲିନ୍ ବଜାଅ ରାଜା; ଆଉ ମୁଁ ପ୍ରାଣଭରି ଅନୁଭବ କରିବି ତୁମେ କେଉଁ ଯାଦୁ ବଳରେ ମୋର ଚକ୍ଷୁ ଦୁଇଟିରେ ଭରିଦେଇଛ ଯୁଗଯୁଗର ଘୁମନ୍ତ ଆବେଶ ।"

ଆନା ପୂର୍ବରୁ ସେଇ ମୂର୍ତ୍ତିଟିର ପାଦଦେଶରେ ଥୋଇ ଯାଇଥିଲା ଭାୟୋଲିନ୍‌ଟିଏ । ସେଇଟିକୁ ଟେକିଦେଲା ରାଜାବାପୁଙ୍କ ହାତକୁ ।

ରାଜାବାପୁ ଭାୟୋଲିନ୍‌ଟିକୁ ଧରି ତନ୍ମୟତାର ସହିତ ଛଡ଼ଟି ଟାଣିଲେ ଏବଂ ବୀଣାରୁ ଝଂକୃତ ହୋଇଉଠିଲା ଘୁମନ୍ତ ସ୍ୱରର କରୁଣ ଝଙ୍କାର । ପ୍ରଭାତକାଳରେ ନିଦ୍ରାଭଙ୍ଗ ପରେ ଦେହରେ ଯେପରି ଜଡ଼ିଯାଇଥାଏ ଅଳସ ବିଧୁରତା, ରାଜାବାପୁଙ୍କ ବୀଣାର ତନ୍ତ୍ରୀରୁ ଫୁଟିଉଠିଲା ଠିକ୍ ଅନୁରୂପ ସ୍ୱରମୂର୍ଚ୍ଛନା ।

ତନ୍ମୟ ହୋଇ ଶୁଣିଲା ଆନା । ଶୁଣୁଶୁଣୁ ପ୍ରକୃତରେ ସେ କେତେବେଳେ ସେଇ ସବୁଜ ଗାଲିଚାରେ ଅଜାଡ଼ିଦେଇଥିଲା ତା'ର କୋମଳ ଶରୀରଟିକୁ ସେ ଜାଣିପାରିଲାନାହିଁ । ଆଖି ଦୁଇଟି ତା'ର ନିବିଷ୍ଟତାରେ ଆଚ୍ଛନ୍ନ ହୋଇ ଧୀରେ ଧୀରେ ନିମୀଳିତ ହୋଇଆସିଲା—ସତେ ଅବା ଆଉ ଏକ ଜଗତରେ ପ୍ରବେଶ କରୁଛି ସେ, ଠିକ୍ ସେଇଭଳି ଅନୁଭବକଲା ଆନା । ସେ ଜଗତରେ ନାହିଁ ଦୁଃଖ, ଯନ୍ତ୍ରଣା ବା ଅନୁତାପର ବିଷଣ୍ଣତା । ସେଠାରେ ଅନନ୍ତ ନିରବଚ୍ଛିନ୍ନ ଜ୍ୟୋତ୍ସ୍ନାଲୋକରେ ବିଧୌତ ରାତ୍ରିର ନିରବତା ଫୁଟାଇଦିଏ ପ୍ରେମିକାର ମୁଖକୁମୁଦର କୋମଳ କଳିକାଟିକୁ । ଝରିପଡ଼େ ବିନ୍ଦୁ ବିନ୍ଦୁ ହୋଇ ଶୀକର କଣିକା ।

ବିଦ୍ୟୁତ୍ ସ୍ପର୍ଶରେ ଚମକିପଡ଼ିଲା ପରି ଉଠିବସିଲା ଆନା । ସ୍ୱପ୍ନଲୋକରେ ଗଢ଼ା ନବନୀତ କୋମଳ ପ୍ରାସାଦଟି ସତେଅବା ଉଷ୍ଣତାର ସ୍ପର୍ଶରେ ତରଳିଯାଉଛି । ଧୀରି

ସ୍ୱରର ଅବରୋହ ତୋଳି ମୌନ ହୋଇଯାଇଛି ବୀଣାଟି ଏବଂ ତା' ପରେ ରାଜାରାୟ ଆଙ୍କିଦେଇଛି ଆନାର କପୋଳରେ ପ୍ରଣୟର ନୀରବ ଚୁମ୍ବନଟିଏ···

କେତେ କ୍ଷଣ ଯାଏଁ ସ୍ତବ୍ଧ ହୋଇ ବସିରହିଲା ଆନା ମୁଖମଣ୍ଡଳରେ କିଂକର୍ତ୍ତବ୍ୟ-ବିମୂଢ଼ତାର ଭାବ ପ୍ରକଟକରି । ତା'ର ମୁଖଭଙ୍ଗୀରୁ ମନେହେଉଥିଲା ଶତବୃଶ୍ଚିକ ଦଂଶନର ମର୍ମନ୍ତୁଦ ଯନ୍ତ୍ରଣା । ତା' ପରେ ସେ ଚାହିଁରହିଲା ରାଜାରାୟଙ୍କୁ କରୁଣ ଦୃଷ୍ଟିରେ ।

ଚମକିଉଠିଲେ ରାଜାରାୟ ଆନାର ଚାହାଣିରେ—ମର୍ମର ନିର୍ମିତ ନାରୀମୂର୍ତ୍ତିର ମୁଖମଣ୍ଡଳରେ ଫୁଟିଉଠିଥିବା କରୁଣ ଚାହାଣି ପରି ।

ହଠାତ୍ ବିଷଣ୍ଣ କଣ୍ଠରେ କହିଲା ଆନା—"ଜାଣ କି ରାଜା ସେଇଟି କା'ର ମୂର୍ତ୍ତି ?"

ନାସ୍ତିବାଚକ ସୂଚନାଦେଇ ମୁଣ୍ଡ ହଲାଇଲେ ରାଜାରାୟ ।

"ଏ ମୂର୍ତ୍ତିଟି ଏକ ପ୍ରେମିକ ବୀଣାକାରର । ନାମ ତା'ର ଅର୍‌ଫିଉସ୍ । ସ୍ତ୍ରୀର ମୃତ୍ୟୁ ପରେ ସେ ଅଗେଇଯାଇଥିଲା ସାହସକରି ମରଣ ରାଜ୍ୟକୁ । ସେଠାରେ ମୃତ୍ୟୁଲୋକର ରାଜା ଓ ରାଣୀଙ୍କୁ ବୀଣାର ମଧୁର ଝଙ୍କାରରେ ବିମୁଗ୍ଧ କରି ଲାଭକରିଥିଲା ଗୋଟିଏ ଦୁର୍ଲ୍ଲଭ ବର । ସେଇ ବର ପ୍ରଭାବରେ ସେ ଫେରାଇ ଆଣିଥା'ନ୍ତା ତା'ର ପ୍ରିୟତମା ପତ୍ନୀକୁ ମାଟିର ଧରଣୀକୁ । କିନ୍ତୁ ମୃତ୍ୟୁରାଜା ତା' ଆଗରେ ରାଢ଼ିଥିଲେ ଏକ ଅସାଧାରଣ ସର୍ତ୍ତ—ମୃତ୍ୟୁଲୋକରେ ଥିବା ପର୍ଯ୍ୟନ୍ତ ସେ କେବଳ ସମ୍ମୁଖକୁ ଦୃଷ୍ଟିଦେଇ ଅଗ୍ରସର ହେବ—ଭୁଲରେ ସୁଦ୍ଧା ପଛକୁ ଫେରି ଚାହିଁବ ନାହିଁ ତା'ର ପ୍ରିୟତମା ଅଡ଼କୁ । ପଛକୁ ଫେରି ଚାହିଁଦେଲେ ସେ ଚିରଦିନଲାଗି ହରାଇବସିବ ତାଙ୍କର ପ୍ରେୟସୀକୁ ଏବଂ କାଳକାଳକୁ ଦୁହେଁ ଜଡ଼ମୂର୍ତ୍ତି ହୋଇ ରହିବେ ନିଜ ଅବିମୃଷ୍ୟକାରିତାର ଫଳସ୍ୱରୂପ ।

"ଅର୍‌ଫିଉସ୍ ମହା ଆନନ୍ଦରେ ନିମଗ୍ନ ହୋଇ ଅଗେଇ ଚାଲିଲା ବୀଣାର ତନ୍ତ୍ରୀରେ ସ୍ୱପ୍ନଲୋକର ମୃଦୁମନ୍ଦ ଝଙ୍କାର ତୋଳି ଏବଂ ତାକୁ ଅନୁସରଣ କରିଚାଲିଲା ତା'ର ପ୍ରାଣପ୍ରିୟା ପ୍ରିୟତମା ନୂପୁରର ରୁଣ୍ଡୁଝୁଣ୍ଡୁ ତାନରେ ମୃତ୍ୟୁଲୋକର ପଥକୁ ଅନୁରଣିତ କରି । ହଠାତ୍ ବୀଣାର ମୂର୍ଚ୍ଛନା ବନ୍ଦ ହୋଇଗଲା । ନୂପୁରର ଶିଞ୍ଜନ ଅନାଗତ ବିଧାତାର ନିର୍ଦ୍ଦେଶରେ ନୀରବ ହୋଇଗଲା । ଆଗରେ ଧରାତଳ, ମୃତ୍ୟୁଲୋକର ଶେଷ ସୋପାନରେ ଛିଡ଼ାହୋଇ ବିହ୍ୱଳତାରେ ଅସ୍ଥିର ହୋଇପଡ଼ିଲା ଶିଳ୍ପୀ । ସହସା ମୃତ୍ୟୁରାଜଙ୍କ ଉପଦେଶ ପାସୋରିପକାଇ ପଛକୁ ଫେରି ଚାହିଁଦେଲା ଶିଳ୍ପୀ । କୁହ ତ ଏଥର କ'ଣ ହେଲା ତା'ପରେ··· ?"

"ଶିଳ୍ପୀ ହରାଇବସିଲା ତାର ପ୍ରାଣପ୍ରିୟା ପତ୍ନୀକୁ ।"

ରାଜାରାୟଙ୍କ ପାଟିରୁ କଥା ଛଡ଼ାଇନେଇ କହିଲା ଆନା—"କେବଳ ସେତିକି ନୁହେଁ ରାଜା, ଶିଳ୍ପୀ ହରାଇବସିଲା ତାର ସବୁଠାରୁ ମୂଲ୍ୟବାନ୍‌ବସ୍ତୁ—'ଶିଳ୍ପୀର ନିମଗ୍ନତା' ।"

ରାଜାରାୟ ଅସ୍ଥିର ହୋଇ ପଚାରିଲେ—"କ'ଣ ଯେ ତୁମେ କହିବାକୁ ଚାହୁଁଛ ଆନା ?"

ଦୂର ଗଗନକୁ ଅଙ୍ଗୁଳି ନିର୍ଦ୍ଦେଶ କରି ହସି ହସି କହିଲା ଆନା—"ଦେଖ, ନଈ

ସେପାରିର ଦିଗ୍‌ବଳୟର ପ୍ରବାଳ ନିର୍ମିତ ସୋପାନରେ ପାଦ ଦେଲେଣି ଅର୍ଦ୍ଧଚନ୍ଦ୍ର । ଏଥର ଆମେ ଫେରିବା ରାଜା ।"

ସେଦିନ ବିଷଣ୍ଣ ମନରେ ଫେରିଗଲେ ରାଜାରାୟ ହିରଣ୍ୟଗଡ଼କୁ । କିନ୍ତୁ ଯିବା ଆଗରୁ କଣ୍ଠରେ କରୁଣ ଝଙ୍କାର ତୋଳି କହିଲେ ରାଜାରାୟ—"ମୁଁ ଠିକ୍ ସପ୍ତାହକ ପରେ ପୁଣି ଆସିବି ତୁମ ପାଖକୁ ଏକ ଦୁଃସହ ବିରହ ଯନ୍ତ୍ରଣା ନେଇ ।"

"ଆଉ ସେଦିନ ମୁଁ ତୁମକୁ ସାଦରେ ବରଣ କରିନେଇ ତୁମରି ହାତରେ ଅର୍ପଣ କରିଦେବି ମୋର ସର୍ବୋତ୍ତମ ତଥା ବହୁଦିନର ସଞ୍ଚିତ ରତ୍ନଟିକୁ…"

( ପଞ୍ଚଦଶ )

ସମସ୍ତଙ୍କୁ ବିସ୍ମିତ କରାଇ ଗୋଟିଏ ଘଟଣା ଘଟିଗଲା । ହିରଣ୍ୟଗଡ଼ ଥିଲା ସେଦିନ ସମ୍ପୂର୍ଣ୍ଣ ନୀରବ ନିସ୍ତବ୍ଧ । କାହାରି ମୁହଁରେ ପଦଟିଏ ହେଲେ କଥା ନଥିଲା । ପୁରୋହିତ କେବଳ ନିୟମ ରକ୍ଷା ନିମିତ୍ତ ପଞ୍ଚପ୍ରଦୀପର ଆରତି କରି ଇଷ୍ଟଦେବଙ୍କ ପୂଜା ଶେଷକରିଥିଲେ । ପ୍ରତିଦିନ ପରି ଦେବାଳୟରେ ଘଣ୍ଟା, କଂସାଳ, ମୃଦଙ୍ଗ ଓ ଭେରୀ ବାଜିଲା ନାହିଁ କିମ୍ବା ପରିଚାରିକା ଯୋଡ଼ଶଙ୍ଖ ବଜାଇ ପୂଜା ଆରମ୍ଭ ଓ ଶେଷର ସଙ୍କେତ ଶୁଣାଇଲେ ନାହିଁ । ରାଣୀ ଆଦରର ଦେବର ରାଜାରାୟଙ୍କ ପାଖରେ ବସାଇ ଇଷ୍ଟଦେବୀ ଚଣ୍ଡୀଙ୍କ ନାମ ଜପ କରିବାକୁ ଲାଗିଲେ । କାରଣ ଆଜି ଥିଲା ଫଲ୍‌ମନ୍ ମାମଲାର ଅନ୍ତିମ ବିଚାର । ଆଜି ଜଣାପଡ଼ିବ ଜୟ ପରାଜୟର ଖବର । ଅବଶ୍ୟ ଦୁର୍ଲ୍ଲଭରାୟ ମୋକଦ୍ଦମାର ଭୟାବହ ପରିଣତି ସମ୍ପର୍କରେ ଏକାବେଳକେ ନିଶ୍ଚିତ ଥିଲେ । ସେଇ ଆଶଙ୍କାରେ ଆତଙ୍କିତ ହୋଇଉଠିଥିଲେ ହିରଣ୍ୟଗଡ଼ର ପ୍ରତିଟି ମଣିଷ ।

ଘୋଡ଼ାର କଦମା ଚାଲିର ଶବ୍ଦ ଶୁଣିପାରି ଜପ ଛାଡ଼ିଦେଇ ଝରକା ପାଖକୁ ଉଠିଆସିଲେ ରାଣୀ ବିଳାସବତୀ । ଦୁର୍ଲ୍ଲଭରାୟ ଓହ୍ଲାଇପଡ଼ିଲେ ଘୋଡ଼ାରୁ ଏବଂ ଏନମୁହାଁ ହୋଇ ଉଠିଗଲେ ଭିତର ପୁରକୁ । ବିଳାସବତୀଙ୍କ କକ୍ଷରେ ପହଞ୍ଚି କହିଲେ ରାଜା ଦୁର୍ଲ୍ଲଭରାୟ—"ଏପରି ବିଚିତ୍ର ଘଟଣା ମୁଁ ଜୀବନରେ କେବେହେଲେ ପ୍ରତ୍ୟକ୍ଷ କରିନଥିଲି ।"

ରାଣୀ ବିଳାସବତୀ ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲେ ଦୁର୍ଲ୍ଲଭ ରାୟଙ୍କ ମୁହଁକୁ ଏବଂ କୁମାର ରାଜାରାୟ ମଧ୍ୟ ଭାଇଙ୍କ ମୁହଁରୁ ଶୁଭସମ୍ବାଦ ଶୁଣିବାକୁ ଏକଲୟରେ ଚାହିଁରହିଥିଲେ ।

ତା'ପରେ କହିଲେ ରାଜା ଦୁର୍ଲ୍ଲଭରାୟ—"ଆଜି ମୋତେ ଆନା ହେପବାର୍ନ ରକ୍ଷା କଲେ ଘୋର ବିପଦରୁ । କେବଳ ମୋତେ ନୁହେଁ, ଏ ରାୟବଂଶକୁ ମଧ୍ୟ ସେ ଅପମାନରୁ ରକ୍ଷା କରିଛନ୍ତି ।"

"କିପରି…?" ହସ ହସ ମୁହଁରେ ପଚାରିଲେ ରାଣୀ ବିଳାସବତୀ ।

"ସେ ଆଜି ଅଦାଲତରେ ହାଜର୍ ହୋଇ ନିଜକୁ ଫଲ୍‌ମନ୍‌ର ହତ୍ୟାକାରିଣୀ ବୋଲି

ବସ୍ଥାନ୍ ଦେଇଗଲେ । ନୀଳକୋଠିର ସାହେବମାନଙ୍କ ଚକ୍ରାନ୍ତର ହାଓ୍ୱାମହଲଟି ପବନରେ ଭୂଷୁଡ଼ିପଡ଼ିଲା ।”

ସ୍ୱାମୀ ଦୁର୍ଜ୍ଜୟ ରାୟଙ୍କ ମୁହଁରୁ କଥାଟି ଶୁଣିବାମାତ୍ରେ ରାଣୀ ଚନ୍ଦ୍ରାବତୀଙ୍କ ଦୁଇ ଆଖିରୁ ଧାର ଧାର ହୋଇ ଗଡ଼ିପଡ଼ିଲା ଦୁଇଧାର ଆନନ୍ଦାଶ୍ରୁ । ସେ ଆନା ହେପବାର୍ନଙ୍କୁ ମନେମନେ ଶତ ଶତ ଆଶୀର୍ବାଦ ଅଜାଡ଼ିଦେଲେ ।

ତା’ପରେ କହିଲେ ହିରଣ୍ୟଗଡ଼ର ରାଜାବାହାଦୁର—“କେବଳ ଏଇ ଝିଅଟି ପାଇଁ ଆଜି ସମଗ୍ର ଇଂରେଜ ଜାତି ମୋ ଆଖିରେ ମହାନ୍ ହୋଇଉଠିଲା । ସେମାନଙ୍କ କୂଟ-କୌଶଳ, ଅବିଚାର ଓ ଅତ୍ୟାଚାର ଫଳରେ ସମଗ୍ର ଜାତିଟା ପ୍ରତି ମୋ’ ମନ ବିଷାକ୍ତ ହୋଇ-ଉଠିଥିଲା । କିନ୍ତୁ ଝିଅଟି ବାସ୍ତବିକ୍ ଅମର ଦେଶର ଝିଅ ବୋହୂଙ୍କ ପରି ମମତାର ପ୍ରଲେପ ବୋଳିଦେଇ, ମୋ ମନରେ ଅନେକ ଦିନ ଧରି ଜମାଟ ବାନ୍ଧି ରହିଥିବା ବିଷାକ୍ତ କ୍ଷତଟିକୁ ସମ୍ପୂର୍ଣ୍ଣ ନିଃଶେଷକରିଦେଲା ।”

ଭାଇଙ୍କ ମୁହଁରୁ କଥାପଦକ ଶେଷ ହେବାମାତ୍ରେ ସେ ବ୍ୟାକୁଳ ହୋଇ ପ୍ରଶ୍ନ କଲେ — “କିନ୍ତୁ ପରିଣାମରେ କ’ଣ ହେଲା ଆନାର ?”

“ଏ ତଥ୍ୟକୁ ପ୍ରମାଣିତ କରିବାପାଇଁ ସେ ସାକ୍ଷୀ ପ୍ରମାଣ ଯୋଗାଡ଼ କରି ଆଣିଥିଲେ । ସେଇଥିରୁ ପ୍ରମାଣ ହୋଇଗଲା ଯେ, ସେ ଆତ୍ମରକ୍ଷା ପାଇଁ ବାଧ୍ୟହୋଇ ଫଲମନ୍ ଉପରେ ଗୁଳିଚଳାଇଥିଲେ । ବିଚାରକ ତାଙ୍କରି ସପକ୍ଷରେ ରାୟ ଦେଇ ତାଙ୍କୁ ଦୋଷମୁକ୍ତ କରିଦେଲେ, ଆଉ ହିଂସ୍ର ଚିତାବାଘ ପରି ଆଁ କରି ତା’ ଆଡ଼କୁ ଅନାଇରହିଲେ ନୀଳକୋଠିର ସାହେବ-ଦଳ । ମୋର ମନେହେଲା—ସତେ ଯେପରି ଗୋଟିଏ ସିଂହୀ ହେତାବାଘଗୁଡ଼ାଙ୍କ କବଳରୁ ଶିକାରଟିକୁ ସଦର୍ପରେ ଛଡ଼ାଇନେଲା ଏବଂ ସେଇ ରକ୍ତପିପାସୁ ହିଂସ୍ରଜନ୍ତୁଗୁଡ଼ାକ ତା’ରି ଆଡ଼କୁ ଅନାଇ ରହିଲେ ଲାଲ୍ ଲାଲ୍ ଆଖି କରି । କିନ୍ତୁ ଆଉ କରିବାର କିଛି ଉପାୟ ନଥିଲା ସେମାନଙ୍କର ।”

ଆନା ହେପବାର୍ନଙ୍କ ପ୍ରତି ଅସୀମ ଶ୍ରଦ୍ଧାରେ ଭରିଉଠିଲା ରାଜାରାୟଙ୍କ ହୃଦୟ । ସେ ଅବଶ୍ୟ ଅନେକଥର ଚେଷ୍ଟା କରିଥିଲେ ଭାଇଙ୍କ ବିପଦ ସମ୍ପର୍କରେ ଆନା ଆଗରେ ଉତ୍ଥାପନ କରିବାପାଇଁ, କିନ୍ତୁ ସେ ନିଜ ମନକୁ ଆଦୌ ସେଥିପାଇଁ ପ୍ରସ୍ତୁତ କରିପାରିଲେ ନାହିଁ । ସେ ଭାବିଲେ—‘ଭାଇ ତାଙ୍କୁ ଆକ୍ରମଣ କରିଥିଲେ । ସେ ଅବସ୍ଥାରେ ଭାଇଙ୍କୁ ସାହାଯ୍ୟ କରିବାପାଇଁ ଆନାକୁ କିଛି କହିବା ଅର୍ଥ ତା’ ନିକଟରେ କୃପାଭିକ୍ଷା କରିବା ।’

ଅବଶ୍ୟ ଏଥିପାଇଁ ସେ ମନେ ମନେ ଅନେକ ଯନ୍ତ୍ରଣା ଭୋଗକରିଛନ୍ତି; କିନ୍ତୁ ବଂଶ-ମର୍ଯ୍ୟାଦା ଦୃଷ୍ଟିରୁ କୌଣସି ଦିନ ଏ ପ୍ରସଙ୍ଗ ଆନା ଆଗରେ କହିପାରିନାହାନ୍ତି । ଆଜି ଆନା ତାଙ୍କର ସମ୍ମାନ ରକ୍ଷା କରିଛି ଆପଣାଗୁଣେ । ତାଙ୍କୁ ନିଜ ମୁହଁରେ ଅନୁରୋଧ କରି ସେ ଯେଉଁ ମାନସିକ ଯନ୍ତ୍ରଣା ଅନୁଭବ କରିଥାନ୍ତେ, ଆନା ତାଙ୍କୁ ସେଥିରୁ ମୁକ୍ତିଦେଇଛି ।

( ଛଅଶ )

ଅଦାଲତରୁ ଫେରିବା ପରେ ସେଦିନ ଆନା ନିତାନ୍ତ ଅନ୍ୟମନସ୍କ ହୋଇଉଠିଲା । ସେ ସେହି ଚନ୍ଦ୍ରାରେ ଏକୁଟିଆ ବାରନ୍ଦାରେ ବୁଲିବାକୁ ଲାଗିଲା । ତା'ପରେ ସେ ବାହାରିଗଲା ଉଦ୍ୟାନକୁ । ସେଠାରେ ତା'ର ମନେହେଲା—ଯେତେଯେପରି ପ୍ରତିଟି ବୃକ୍ଷ ଓ ଲତା ଏକ ନୂତନ ଭାବରେ ତା' ଆଗରେ ପ୍ରତିଭାତ ହୋଇଉଠିଛନ୍ତି । ସେ ଅନୁଭବ କଲା—ଯେତେଯେପରି ପ୍ରତିଟି ମୂର୍ତ୍ତି ତାକୁ କହୁଛନ୍ତି—ଆମେ କିଛୁ ନୋହୁଁ—ତୁମେ ଆମକୁ ଦିବ୍ୟଦୃଷ୍ଟିରେ ଦେଖୁଥିବାରୁ ଆମେ ତୁମ ଆଖିରେ ଏତେ ସୁନ୍ଦର ଭାବରେ ପ୍ରତିଭାତ ହେଉଛୁଁ । ପ୍ରତିଟି ବୃକ୍ଷ ତା' କାନ ପାଖରେ ଶିଁଶିଁର ବହୁଥିବା ପବନର ଆଘାତରେ କହୁଛନ୍ତି—ତୁମେ ଆମର ପତ୍ର ଫୁଲ ଓ ଫଳ ଦାନକର । ଏପରିକି ନିଜର ସର୍ବସ୍ୱ ଅର୍ପଣ କରି ଆନାର ସେବାକର ।

ଆଜି ଏକ ନୂତନ ଭାବର ଉଦ୍ଦୀପ୍ତ ଭାବନା ତା'ର ହାଲୁକା ମନଟିକୁ ଛୁଇଁ ଛୁଇଁ ଯାଉଛି । ସେ ଅବଶ୍ୟ ଏହାର କାରଣ ଆଦୌ ଜାଣିପାରୁନଥିଲା । କିନ୍ତୁ ମନଟି ତା'ର ପ୍ରତି ମୁହୂର୍ତ୍ତରେ ପ୍ରସନ୍ନ ହୋଇଉଠୁଛି । ସେ ମନେ ମନେ ଭାବିଲା—ଏ ଆନନ୍ଦ କାହିଁକି ? ଏ ଆତ୍ମ-ପରିତୃପ୍ତିର କାରଣ କ'ଣ ?

ଆନା ଫେରିଆସିଲା ବଗିଚାରୁ ନିଜ ଶୋଇବାଘରକୁ । ତା'ପରେ ସେ ଯାଇ ପହଞ୍ଚିଗଲା ଲାଇବ୍ରେରୀରେ । ଖଣ୍ଡିଏ ଚେୟାର୍‌ରେ ଦେହଟିକୁ ଅଜାଡ଼ିଦେଇ ଅର୍ଦ୍ଧସୁପ୍ତ ଅବସ୍ଥାରେ ବସିଛି ମୈତ୍ରେୟୀ । ତା' କୋଳରେ ଖଣ୍ଡିଏ ବହି ଖୋଲା ହୋଇ ପଡ଼ିରହିଛି ଏବଂ ମୁଖ-ମଣ୍ଡଳଟି ତା'ର ବାଆଁହାତ ପାପୁଲିରେ ଢଳିରହିଛି । ପଢ଼ୁ ପଢ଼ୁ ଶୋଇପଡ଼ିଛି ମୈତ୍ରେୟୀ ।

କିଛିକ୍ଷଣ ଅପଲକ ନେତ୍ରରେ ଚାହିଁରହିଲା ଆନା ମୈତ୍ରେୟୀ ଆଡ଼କୁ । ତା'ର ଘୁମନ୍ତ ମୁଖମଣ୍ଡଳରେ ଫୁଟିଉଠିଛି କରୁଣ ବେଦନାର ଏକ ସ୍ପଷ୍ଟ ଛାପ । ଆଲୁଅଟି ବେଶ୍ ଉଜ୍ଜ୍ୱଳ ଭାବରେ ଜଳୁଛି ଟେବୁଲ ଉପରେ । ଆନା ସ୍ପଷ୍ଟ ଭାବରେ ଲକ୍ଷ୍ୟକଲା—ଚକ୍ ଚକ୍ କରି ଝଲସିଉଠିଛି ମୈତ୍ରେୟୀର ଆଖିକୋଣରେ ଦି' ଟୋପା ଲୁହ ।

ମୈତ୍ରେୟୀର କୋଳରେ ଖୋଲା ହୋଇ ପଡ଼ିଥିବା ବହି ଖଣ୍ଡିକୁ ସନ୍ତର୍ପଣରେ ଉଠାଇ ନେଲା ଆନା । ବହିଟି ଥିଲା ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ କବିତା-ସଙ୍କଳନ—'ଲୁସି' ଉପରେ ଲେଖା ଯାଇଥିବା କବିତାଟି ପଢ଼ୁଁ ପଢ଼ୁଁ ମୈତ୍ରେୟୀ ଘୁମେଇପଡ଼ିଛି ।

ପ୍ରକୃତରେ ଲେଖାପଢ଼ା ଜଗତକୁ ମୈତ୍ରେୟୀକୁ ଟାଣିଆଣିଥିଲା ଆନା ଏଇ କେତେଦିନ ମଧ୍ୟରେ । ସେ ଭଲ ଭାବରେ ଜାଣିଥିଲା ଏଇ ଜଗତରେ ହିଁ ସବୁକିଛି ପାସୋରି ଦେଇ-ହୁଏ । ସେ ମଧ୍ୟ ତା' ଜୀବନରେ ସେଇ ଅଭ୍ୟାସଟିକୁ ଆଦରି ନେଇଥିଲା ତା' ଏକାନ୍ତ ଜୀବନର ସଙ୍ଗିନୀ କରି ।

ହଠାତ୍ ତା'ର ମନହେଲା ସେ ଏଥରକେ ମୈତ୍ରେୟୀଙ୍କୁ ସଜାଇଦେବ । ତେଣୁ ସେ ମୈତ୍ରେୟୀର ହାତଧରି ଧୀରେ ହଲାଇଦେଲା । ଚମକିପଡ଼ିଲା ପରି ଉଠି ବସିଲା ମୈତ୍ରେୟୀ । ଲଜ୍ଜାରେ ତା'ର ମୁଖମଣ୍ଡଳ ଆରକ୍ତ ହୋଇଗଲା । ସେ ଅନୁଭବ କଲା ପଢ଼ିବା ବେଳେ ଏପରି ଭାବରେ ଶୋଇପଡ଼ିବା ତା' ପକ୍ଷରେ ଠିକ୍ ହୋଇନାହିଁ ।

ଆନା ଅତ୍ୟନ୍ତ କୋମଳ ସ୍ୱରରେ କହିଲା—"ମେଘା, ମୋ' ସହିତ ଆସିଲୁ ଟିକଏ ।"

ମୈତ୍ରେୟୀ ନୀରବରେ ଅନୁସରଣ କଲା ଆନାକୁ । ଆନା ଯାଇ ପହଞ୍ଚିଗଲା ତା' ଶୋଇବା କୋଠରୀରେ ।

"ମୁଁ ତୋତେ ଆଜି ସଜାଇଦେବାକୁ ଡାକିଆଣିଛି ମେଘା"—କହିଲା ଆନା ।

"ଏ' କି ପାଗଳାମି ତୁମର ଦିଦି !"

ଆନା ମୈତ୍ରେୟୀର ପ୍ରତିବାଦକୁ ଆଦୌ ଶୁଣିଲା ନାହିଁ । ସେ ଜିଦ୍ ଧରିଲା ପରି କହିଲା —"ତୁ ଖୋଲିଦେଲୁ ମୋ' ପୋଷାକଗୁଡ଼ିକୁ ।"

ହସି ହସି କହିଲା ମୈତ୍ରେୟୀ—"ତା'ହେଲେ ପିନ୍ଧିବି କ'ଣ …?"

ଆନା ଆଲମାରି ଭିତରୁ ବାହାର କରି ଆଣିଲା ମୈତ୍ରେୟୀର ପ୍ରଥମ ସାକ୍ଷାତ ଦିନର ସେହି ବିବାହକାଳୀନ ପାଟଶାଢ଼ିଟି । ମୈତ୍ରେୟୀର ସ୍ମୃତିପଟରେ ବିସ୍ମୃତ ହୋଇଯାଇଥିଲା ସେ ଶାଢ଼ିଟିର ଅସ୍ତିତ୍ୱ । ହଠାତ୍ ସେହି ଶାଢ଼ିଟିକୁ ଦେଖିପକାଇ ବିଷଣ୍ଣଭାବରେ ଛଳଛଳ ହୋଇଉଠିଲା ତା'ର ଆଖିଯୋଡ଼ିକ । ସେ ଅତ୍ୟନ୍ତ ଦୁଃଖଭରା କଣ୍ଠରେ କହିଲା —"କ୍ଷମା କର ଦିଦି ! ଏ' ଶାଢ଼ିଟିକୁ ମୁଁ ଆଉ ପିନ୍ଧିପାରିବିନାହିଁ ।"

ଆନା ମୈତ୍ରେୟୀକୁ ମିନତିଭରା ସ୍ୱରରେ କହିଲା—"ମେଘା, କେବଳ ଆଜି ରାତିଟି ପାଇଁ ତୁ ରକ୍ଷା କରିବୁ ନାହିଁ ମୋର ଏଇ ସାମାନ୍ୟ ଅନୁରୋଧଟି ?"

ଆନାର ମୁହଁକୁ ଚାହିଁ ମୈତ୍ରେୟୀର ହୃଦୟ କୃତଜ୍ଞତାରେ ଭରିଗଲା । ସେ ଅନିଚ୍ଛା ସତ୍ତ୍ୱେ ପିନ୍ଧିନେଲା ସେଇ ଶାଢ଼ିଟିକୁ । ଆନା ତାକୁ ଗୋଟିଏ ନବବଧୂର ସାଜରେ ସଜାଇଦେଇ ବାରମ୍ବାର ତା' ମୁହଁକୁ ଚାହିଁ ଆନନ୍ଦରେ ଆତ୍ମହରା ହୋଇଉଠିଲା । ସତେଅବା ବହୁଦିନରୁ ତା'ର ପିଆସି ଆଖି ଯୋଡ଼ିକ ମୈତ୍ରେୟୀକୁ ଏପରି ବଧୂ ବେଶରେ ଦେଖିବାକୁ ଅପେକ୍ଷାକରିଥିଲା ।

( ସଇଁଛରିଶ )

ନିବିଡ଼ ଅନ୍ଧକାର ଭରା ରାତିରେ ଆନା ଆସି ଛିଡ଼ାହୋଇଗଲା ସେଇ ସୁଡ଼ଙ୍ଗ ପଥର ଦ୍ୱାରଦେଶରେ ହାତରେ ମହମବତିଟିଏ ଧରି । ନଦୀ ବହିଚାଲିଛି ଯୁଗ ଯୁଗ ଧରି । ତା'ରି ପ୍ରବାହରେ କେତେ ତଟଦେଶ ଶସ୍ୟପୂର୍ଣ୍ଣ ହୋଇଯାଏ । ନଦୀ କେବଳ ନିଜର ବାରି ପ୍ରବାହ ଦାନ କରି ଚାଲିଛି—ପ୍ରତିଦାନରେ ସେ କାହାରିଠାରୁ କିଛି ଆଶା ରଖିନି । ଦାନ

ହିଁ. ତା'ର ଜୀବନର ଏକମାତ୍ର ଲକ୍ଷ୍ୟ—ପ୍ରତିଦାନର ଲେଶମାତ୍ର ଆକାଙ୍‌କ୍ଷା ତା'ର ନାହିଁ । ସେ କେବଳ ସାକ୍ଷୀ ହୋଇ ବହିଆସିଛି ଶତାବ୍ଦୀ ଜୀବନ ପ୍ରବାହର ଅନୁପମ ଆତ୍ମତ୍ୟାଗ ତଥା ସର୍ବସ୍ୱଦାନ ଅଡ଼କୁ ।

ଠିକ୍ ସେଇ ମୁହୂର୍ତ୍ତରେ ନଦୀଗର୍ଭରେ ଦେଖାଗଲା ଝାପ୍‌ସା ହୋଇ ନୌକାଟିଏ । ଦୂରରୁ ସ୍ପଷ୍ଟ ଶୁଣିପାରିଲା ଆନା ଅହ୍ଲଳର ଶବ୍ଦ । ଆନା ଜାଣେ ସେ କାହାର ନୌକା । ଆଜି ସେ ପୂର୍ବଦିନଗୁଡ଼ିକ ପରି ଅଧୀରେ ଉତ୍କଣ୍ଠିତା ହୋଇନଥିଲା । ନିଶ୍ଚିନ୍ତ ଭାବରେ ସେ ଅନାଇ ରହିଲା ଏକ ଲକ୍ଷ୍ୟରେ ସେଇ ଅଡ଼କୁ । ଆଜି ସେ ତା'ର ସମସ୍ତ ଆଶା, ଆକାଙ୍‌କ୍ଷା, ଉତ୍ତେଜନା ତଥା ଅବଶିଷ୍ଟ ଜୀବନର ସୁଖ ଓ ଶାନ୍ତିକୁ ଏଇ ନଦୀର ଜଳ ଧାରରେ ଏକତ୍ରିତ କରି ଭସାଇଦେଲା ।

ରାଜାରାୟ ଉଠିଆସିଲେ ନୌକା ଉପରୁ ସୁଡ଼ଙ୍ଗ ଦ୍ୱାରକୁ । ହଠାତ୍ ଫୁଲୁଫୁଲିଆ ଶୀତୁଆ ପବନରେ ଲିଭିଗଲା ଆଲୋକ ବର୍ତ୍ତିକାଟି । ସତେ ଅବା ଆନା ତା'ର ଜୀବନର ସମସ୍ତ ଆଲୋକରଶ୍ମିକୁ ସଙ୍କୁଚିତ କରି ଆଣିଲା ମନମନ୍ଦିରକୁ । ନିଃସ୍ୱାର୍ଥପରତା ତଥା ସର୍ବସ୍ୱବଳିଦାନର ଆଲୋକରେ ଉଦ୍ଭାସିତ ହୋଇଉଠିଲା ତା'ର ଅନ୍ତର ।

ପଛକୁ ଫେରିପଡ଼ି କହିଲା ଆନା—"ଆସ, ରାଜା ! ମୁଁ ଏଇ ତୁମରି ପାଖରେ ।"

ଆନା ପ୍ରସାରିତ କରିଦେଲା ତା'ର ହାତଟିକୁ । କଟିକଟା ଅନ୍ଧକାର ମଧ୍ୟରେ ରାଜାରାୟ ଧରିପକାଇଲେ ଆନାର କୋମଳ ହାତଟିକୁ ।

ଦୁହେଁ ପ୍ରବେଶ କଲେ ପାଖାପାଖି ହୋଇ ନିରନ୍ଧ୍ର ଅନ୍ଧକାର ମଧ୍ୟରେ ସୁଡ଼ଙ୍ଗ ପଥରେ ।

"ମୁଁ କିଛି ଦେଖିପାରୁନି ଆନା ।" କହିଲେ କୁମାର ରାଜାରାୟ ।

"ମୁଁ ତ ତୁମରି ପାଖେ ପାଖେ ରହିଛି; ମୋର ହାତ ଧରି ନିର୍ଭୟରେ ଚାଲିଆସ ରାଜା ।" ସତେଅବା ଆନାର ପ୍ରାଣର ବାଂଶୁରୀଟି ପଞ୍ଚମ ତାନରେ ବାଜିଉଠିଲା ।

ଦୁହେଁ ଆସି ପହଞ୍ଚିଗଲେ ଉଦ୍ୟାନ ବାଟିକାର ମଧ୍ୟସ୍ଥଳରେ । ବସିପଡ଼ିଲେ ଗୋଟିଏ ମର୍ମର ବେଦିକା ଉପରେ ପାଖାପାଖି ହୋଇ । ପୁଲକରେ ଭରିଉଠିଲା ରାଜାରାୟଙ୍କ ଅନ୍ତର । ସେ ଆନାର ସୁକୋମଳ ହାତଟିକୁ ନିଜ ହାତରେ ଧରି କହିଲେ—"ତୁମେ ସୁଖୀ ତ ଆନା···?"

ରାଜାରାୟଙ୍କ ହାତରୁ ଆନା ନିଜର ହାତଟିକୁ ଟାଣିନେଲାନାହିଁ । ତା'ର ସର୍ବାଙ୍ଗରେ ଖେଳିଗଲା ଆନନ୍ଦର ଏକ ବିଦ୍ୟୁତ୍ ତରଙ୍ଗ ।

"ଏଥର ମୁଁ ମୋର ଦାୟିତ୍ୱ ସମ୍ପାଦନ କରିବ ରାଜା···" ପୁଲକିତ ଅନ୍ତରରେ କହିଲା ଆନା ।

"ମୁଁ ସେଇ ଅମୂଲ୍ୟ ରତ୍ନର ସନ୍ଧାନରେ ଧାଇଁଆସିଛି କାଙ୍ଗାଳ ଭଳି ଆନା ।" କହିଲେ ଉଦ୍‌ବେଗଭରା କଣ୍ଠରେ ରାଜାରାୟ—"ସେଇ ଶୁଭ ମୁହୂର୍ତ୍ତଟିକୁ ମୁଁ ଗଣିବାରେ ଲାଗିଛି, କେତେବେଳେ ମୋର କରଗତ ହେବ ସେଇ ଦୁର୍ଲ୍ଲଭ ରତ୍ନଟି ।"

ବେଦନାରୁ ହଠି ଛଡ଼ାହୋଇପଡ଼ିଲା ଆନା । ନିଜ ହାତରେ ସେ ଧରିନେଲା ରାଜାବାପ୍ପାଙ୍କ ଉଷ୍ଣ ହାତଟିକୁ । ଆନା ଆଗେଇଚାଲିଲା କୋଠି ଭିତରକୁ ଏବଂ ରାଜାବାପ୍ପା ସେଇ ଅନ୍ଧକାର ମଧ୍ୟରେ କେବଳ ଅନୁସରଣ କଲେ ଆନାକୁ । ଶୀଳକୋଠି ଆଜି ସମ୍ପୂର୍ଣ୍ଣ ଅନ୍ଧକାର । ଗୋଟିଏ ହେଲେ ଆଲୁଅ ଜଳୁନଥିଲା କୌଣସିଠାରେ । ଆନା ରାଜାବାପ୍ପାଙ୍କ ହାତଧରି କୋଠିର ସୋପାନ ଶ୍ରେଣୀ ଅତିକ୍ରମ କରିଚାଲିଲା ।

"ଆଜି ମୁଁ ଜାଣିଶୁଣି କୋଠିର ସମସ୍ତ ଆଲୋକ ଲିଭାଇଦେଇଛି ରାଜା । ଏଇ ନିବିଡ଼ ଅନ୍ଧକାରଭରା ରାତିରେ ତୁମ ହୃଦୟକନ୍ଦରରେ କ'ଣ ଆଲୋକ ଜଳିଉଠୁନି ?"

ରାଜାବାପ୍ପା ଥମ୍ ଥମ୍ ହୋଇ ପିଣ୍ଡ ପରେ ପିଣ୍ଡ ପାରହୋଇ ଉଠିଚାଲିଛନ୍ତି ଉପରକୁ । ପାଦ ଦୁଇଟି ତାଙ୍କର ଥରଥର ହୋଇ କମ୍ପୁଛି । ହିରଣ୍ୟଗଡ଼ର ଶ୍ରେଷ୍ଠକୁମାର ବାହାଦୁର୍ ଆଜି ଏକ ବନ୍ଦୀ ବିହଙ୍ଗମ । ସେ ଆବେଗଭରା କଣ୍ଠରେ କହିଲେ—"ଆନା, ମୋର ମନେ-ହେଉଛି ମୁଁ ଏକ ଅଗ୍ନିଶିଖାକୁ ସ୍ପର୍ଶ କରିଚାଲିଛି···। ସେହି ଅଗ୍ନିଶିଖା ତା'ର ଦୀପ୍ତିରେ ମୋର ସର୍ବାଙ୍ଗକୁ ଆଲୋକିତ କରୁଛି, ମୋତେ ବାଟ କଢ଼ାଇ ନେଉଛି—ଆଉ ମଧ୍ୟ ମୋର ସର୍ବାଙ୍ଗରେ ପ୍ରଦାହର ଜ୍ୱାଳା ଭରିଦେଉଛି···"

ହସର ଏକ ତରଙ୍ଗ ଫୁଟିଉଠିଲା ଆନାର ମୁହଁରେ । ସେଇ ହସର ଧ୍ୱନି ଅନୁରଣିତ ହୋଇଉଠିଲା ସମଗ୍ର ଶୀଳକୋଠିରେ । ରାଜାବାପ୍ପାଙ୍କ ହୃଦୟକୁ ଛୁଇଁ ଛୁଇଁ ବହିଗଲା ସେ ହସର ପ୍ରବାହ ।

ଆନା ରାଜାବାପ୍ପାଙ୍କ କାନ ପାଖରେ ମୁହଁ ରଖି କ୍ଷୀଣ କଣ୍ଠରେ କହିଲା—"ଆଜି ମୁଁ ତୁମରି ହାତରେ ଅର୍ପଣ କରିବି ମୋର ଅମୂଲ୍ୟ ରତ୍ନଟିକୁ । ମୋ' ଜୀବନର ଝଡ଼ଝଞ୍ଜା ମଧ୍ୟରେ, ଯନ୍ତ୍ରଣାର ତୀବ୍ର କଶାଘାତରେ ମଧ୍ୟ ମୁଁ ସାଇତି ରଖିଛି ସେଇ ରତ୍ନଟିକୁ ।"

ରାଜାବାପ୍ପା ଅନୁଭବ କଲେ ଯେପରି ତାଙ୍କ ପାଦତଳୁ ଶେଷ ସୋପାନଟି ଅପସରିଯାଉଛି । ଅଙ୍କାବଙ୍କା ବାରଣ୍ଡା ଦେଇ ସେ ଆଗେଇ ଚାଲିଲେ ଆନାର ହାତଧରି । ଶେଷରେ ଆସି ସେ ଦୁହେଁ ପହଞ୍ଚିଗଲେ ଅନ୍ଦରମହଲର ଗୋଟିଏ ଶୟନକକ୍ଷର ଦ୍ୱାରଦେଶରେ । ଅତ୍ୟନ୍ତ ସାବଧାନତାର ସହିତ ଉଦ୍‌ବେଗଭରା ମନରେ ରାଜାବାପ୍ପା ପ୍ରବେଶ କଲେ ସେଇ କକ୍ଷ ମଧ୍ୟରେ । ରହସ୍ୟମୟୀ ଆନା ଧୀରେ ପଚାରିଲା—"କିଛି ଦେଖିପାରୁଛ ରାଜା ? ଭଲକରି ଚାହିଁ ଦେଖ ତ !"

ରାଜାବାପ୍ପା ଚଞ୍ଚଳଭରା ମନରେ ଚାହିଁଲେ କକ୍ଷଟିର ସବୁ ଆଡ଼କୁ । ଏହା ମଧ୍ୟରେ ଆନା ହାତ ଛାଡ଼ିଦେଇଛି ତାଙ୍କର ।

ଆନା କହିଲା—"ଦେଖିଲ···ଭଲ କରି ଦେଖ—କୌଣସି ହଜିଲା ରତ୍ନର ସନ୍ଧାନ ତୁମେ ପାଉଛ କି ନାହିଁ ?"

ଦାଉ ଦାଉ ହୋଇ ଜଳିଉଠୁଛି ସେଇ ନିରନ୍ଧ୍ର, ସୂଚୀଭେଦ୍ୟ ଅନ୍ଧକାର ଭେଦ କରି ବାପ୍ପ-ବଂଶର ସର୍ବଶ୍ରେଷ୍ଠ ସମ୍ମାନ ଏବଂ କେତେଦିନରୁ ହଜିଯାଇଥିବା ସେଇ ଗୌରବ ଅଙ୍ଗୁରୀୟଟି ।

ବିସ୍ମୟ ବିମୂଢ଼ ହୋଇ ରାଜାରାୟ ଚାହିଁରହିଲେ ସେଇ ଝିଲମିଲ୍ ଉଣ୍ଟି ଆଡ଼କୁ । ସେ ଆଦୌ କିଛି ବୁଝିପାରିଲେନାହିଁ—କ'ଣ ସେ ଦେଖୁଚନ୍ତି ? ଏହା ସ୍ୱପ୍ନ ନା ସତ୍ୟ ।

କିଛିକ୍ଷଣ ପରେ ଅନ୍ଧକାର ଦୂରକରି ଆଲୋକରେ ଉଦ୍‌ଭାସିତ ହୋଇଉଠିଲା ଶୟନକକ୍ଷଟି । ଆନା ଘର ଭିତରେ ପ୍ରବେଶକଲା ବତିଟିଏ ହାତରେ ଧରି ।

ଜ୍ୟୋତ୍ସ୍ନା ଧବଳିତ ପରି ଫେନିଳ ଶେଯ ଉପରେ ବଧୂବେଶରେ ସଜ୍ଜିତା ହୋଇ ବସିଥିଲା ମୈତ୍ରେୟୀ । ବତିଟିକୁ ନେଇ ଆଗେଇଯାଇ ମୈତ୍ରେୟୀର ମୁହଁଟିକୁ ନିଜ ହାତରେ ଟେକିଧରିଲା ଆନା । ଅକମ୍ପିତ ଆଲୋକ ଶିଖାରେ ଦୁହେଁ ଚାହିଁରହିଲେ ଦୁହିଁଙ୍କି । ରାଜାରାୟ ଦେଖିଲେ ତାଙ୍କର ପ୍ରଦତ୍ତ ସ୍ମାରକ ଅଙ୍ଗୁରୀୟଟି ପିନ୍ଧି ସତେ ଅବା ବାସର ଶେଯରେ ବସିଛି ହିରଣ୍ୟଗଡ଼ର ହଜିଲା ଧନ ନବବଧୂ ସୁଶ୍ରୀ ମୈତ୍ରେୟୀ ।

ରାଜାରାୟ ନିଜର ଅସ୍ତିତ୍ୱକୁ ବିଶ୍ୱାସ କରିପାରିଲେ ନାହିଁ ଏବଂ ପଣ୍ଡିତ ରାମକାନ୍ତ ଭଟ୍ଟାଚାର୍ଯ୍ୟଙ୍କ ସ୍ନେହପାଳିତା କନ୍ୟା ମୈତ୍ରେୟୀକୁ ଆଖି ଆଗରେ ଦେଖି ମଧ୍ୟ ନିଜର ଆଖି ଆଗର ଦୃଶ୍ୟକୁ ବିଶ୍ୱାସ କରିପାରିଲେ ନାହିଁ । ସେ କିଛିକ୍ଷଣ ବୁଡ଼ି ରହିଲେ ବିସ୍ମୟତାର ଅଗାଧ ସମୁଦ୍ରରେ । ତାଙ୍କର ତନ୍ଦ୍ରା ଭଙ୍ଗ ହେଉନହେଉଣୁ ସେ ଚିତ୍କାର କରିଉଠିଲେ—
"ନା...ନା, ଏହା କେବେହେଲେ ସମ୍ଭବ ହୋଇପାରେନା !"

ଆନାର ହୃଦୟକନ୍ଦରରେ ପ୍ରତିଧ୍ୱନିତ ହେଲା ରାଜାରାୟଙ୍କର "ନା...ନା" ଧ୍ୱନି । ମନର କୋମଳ ତନ୍ତ୍ରୀରେ ବାଜିଉଠିଲା କେବଳ—"ନା...ନା...ନା ।" ଆନା ହୃଦୟତନ୍ତ୍ରୀର ସେହି ମୂର୍ଚ୍ଛନାକୁ ଛିନ୍ନକରି ଆଗେଇ ଆସିଲା ରାଜାରାୟଙ୍କ ପାଖକୁ । ସେ ନିଜର ମନକୁ ସମ୍ପୂର୍ଣ୍ଣ ଅପ୍ରସ୍ତୁତ କରିନେଇ କୋମଳ ସ୍ୱରରେ କହିଲା "...କ'ଣ ହୋଇପାରିବନି ରାଜା ! ତୁମେ...ତୁମେ ହିଁ କହିଥିଲ ସେଦିନ ମୋର ସର୍ବଶ୍ରେଷ୍ଠ ନୃତ୍ୟଟିକୁ ଆଦରରେ ଗ୍ରହଣ କରିବା ପାଇଁ ନାଙ୍ଗାଲ ପର୍ବ ଦିନ ରାତି ରାତି ଜାଗିବ ବୋଲି...। ମେରୀ...ହିରଣ୍ୟଗଡ଼ର ନିଷ୍କଳଙ୍କ ବଧୂ, ରାୟବଂଶର ହଜିଲା ଧନ ହୋଇଛି ମୋର ସର୍ବଶ୍ରେଷ୍ଠ ନୃତ୍ୟ ! ତୁମରି ପାଇଁ ଅତି ଯତ୍ନରେ ତାହାକୁ ସାଇତି ରଖିଛି ଏଇ ମୋର ନୀଳକୋଠିର ବନ୍ଧ ବାଧା ବିଘ୍ନ ଅତିକ୍ରମ କରି । ତୁମେ ଆଜି ସେଇ ଅମୂଲ୍ୟ ନୃତ୍ୟ, ମୋର ଜୋମାଲୀଟିକୁ ସାଦରେ ଗ୍ରହଣ କରି ମୋତେ ମୁକ୍ତିଦିଅ ରାଜା ।" ବ୍ୟଥିତ କଣ୍ଠ ତଥା ଅଶ୍ରୁଳ ନେତ୍ରରେ କହିଲା ଆନା । ତା'ପରେ ସମ୍ପୂର୍ଣ୍ଣ ନୀରବତା । କାହାରି ମୁହଁରେ ପଦେହେଲେ କଥା ନାହିଁ ।

ଶେଷ ରାତ୍ରିର ପୂର୍ବାକାଶରେ ଦାଉଦାଉ ହୋଇ ଜଳିଉଠିଲା ଶୁକତାରା । ଆନା ସୁବର୍ଣ୍ଣରେଖାର ତଟରେ ଛିଡ଼ାହୋଇ ଅପଲକ ନେତ୍ରରେ ଲକ୍ଷ୍ୟ କରୁଛି ନୌକାକୁ ଓହ୍ଲାଇ ହିରଣ୍ୟଗଡ଼ର ରୂପସୀ ନବବଧୂ ସ୍ୱାମୀ ସହିତ ନୂତନ ସ୍ୱପ୍ନରେ ନିଜର ସୁଖ ସଂସାର ଆଡ଼କୁ ଆଗେଇଚାଲିଛି । ଆନାରି ଅଶ୍ରୁଳ ନେତ୍ରରୁ ଝରିପଡ଼ୁଛି ସର୍ବସ୍ୱ ତ୍ୟାଗର ଆନନ୍ଦାଶ୍ରୁ ଅବାରିତ ଗତିରେ ଝରଝରହୋଇ ।